# ମାନସିଂହ ଗ୍ରନ୍ଥାବଳୀ

[ପଞ୍ଚମ ଭାଗ : କାବ୍ୟ ଖଣ୍ଡ]

ଡକ୍ଟର୍ ମାୟାଧର ମାନସିଂହ

ସଂପାଦନା :

ଡକ୍ଟର୍ ଶ୍ରୀଚରଣ ମହାନ୍ତି

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ - ୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫସେଟ୍ ପ୍ରିଣ୍ଟର୍ସ୍**
ସୂତାହାଟ, କଟକ - ୧

ପ୍ରଥମ ସଂସ୍କରଣ : ଏପ୍ରିଲ, ୨୦୦୦

ମୂଲ୍ୟ : ଟ ୧୭୦.୦୦
ସାଦା ବନ୍ଧେଇ : ଟ ୧୫୦.୦୦

# ମୁଖବନ୍ଧ

ଡକ୍ଟର ମାୟାଧର ମାନସିଂହ (୧୯୦୫-୧୯୭୩)ଙ୍କ ରଚନାବଳୀ ଆଧୁନିକ ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ମାଇଲଖୁଣ୍ଟ । ଜନ୍ମ ତାଙ୍କର ଓଡ଼ିଶାର ଏକ ଅଖ୍ୟାତ ପଲ୍ଲୀରେ, ମରାଳମାଳିନୀ ରୂପସୀ ଚିଲିକାର କୋଳରେ । ବାଣପୁରଠାରୁ କଳାହାଣ୍ଡି ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ତାଙ୍କର କର୍ମଜୀବନ ଅତିବାହିତ । ଭାରତୀୟ ସଂସ୍କୃତିପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନକୁ ମଧ୍ୟ ଅସ୍ୱୀକାର କରିହେବନାହିଁ । ଆଦର୍ଶ ଦୃଷ୍ଟିରୁ କିନ୍ତୁ ସେ ଥିଲେ ପରମ ସତ୍ୟାନ୍ୱେଷୀ । ଇଂରାଜୀ ସାହିତ୍ୟ ଥିଲା ତାଙ୍କର ପାଠ୍ୟ ବିଷୟ । ପାଶ୍ଚାତ୍ୟ ଉଦାରତନ୍ତ୍ରୀ ମାନବିକତାବାଦ ତାଙ୍କର ଥିଲା ପ୍ରିୟତମ ଭାବାଦର୍ଶ । ଇଂଲଣ୍ଡରେ ଗବେଷଣା କାଳରେ ସେ ଭାରତୀୟ ଓ ପାଶ୍ଚାତ୍ୟ ସଂସ୍କୃତିକୁ ଗଭୀରଭାବରେ ଅନୁଧ୍ୟାନ ତଥା ଅନୁଶୀଳନ କରିବାକୁ ଚେଷ୍ଟାକରିଥିଲେ ।

ମାନସିଂହଙ୍କ ମନ ସର୍ବଦା ଆକାଶରେ, ପାଦ କିନ୍ତୁ ଏଇ ମାଟିରେ । ତାଙ୍କର ଜନ୍ମମାଟି ଚିଲିକା ଅନ୍ତର୍ଗତ ମାଲୁଦର ନନ୍ଦଳା ଗ୍ରାମ । ସରକାରୀ କାଗଜପତ୍ରରେ ଗ୍ରାମଟି ଥିଲା ପୁରୀ ଜିଲ୍ଲାରେ, କିନ୍ତୁ ତାର ନିରନ୍ତର ସାଂସ୍କୃତିକ ଯୋଗ ଥିଲା ଭଞ୍ଜଭୂମି ଗଞ୍ଜାମ ସହିତ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ମୁଖ୍ୟତଃ ସଙ୍ଗୀତ ଉପରେ ଆଧାରିତ । ଏହି ସାହିତ୍ୟର ମୁଖ୍ୟ ଚାରଣଭୂମି ଭଞ୍ଜଭୂମି ଗଞ୍ଜାମ । ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, କେଶବ ପଟ୍ଟନାୟକ, ଗୋପାଳକୃଷ୍ଣ ପଟ୍ଟନାୟକ, କବିସୂର୍ଯ୍ୟ ବଳଦେବ ରଥଙ୍କ ସମେତ ଅନେକ ଛୋଟ ବଡ଼ କବି ଏହି ଧାରାକୁ ଚଳାଇରଖିଥିଲେ । ପାରଳାଖେମୁଣ୍ଡିରୁ ପୁରୀ ପର୍ଯ୍ୟନ୍ତ ସମଗ୍ର ଦକ୍ଷିଣ ଓଡ଼ିଶା ସଂଗୀତ ସାହିତ୍ୟ ଚର୍ଚ୍ଚାରେ ରହିଥିଲା ନିମଜ୍ଜିତ । ମାନସିଂହଙ୍କ ଅଞ୍ଚଳ ସାମାଜିକ ଓ ସାଂସ୍କୃତିକ ଦୃଷ୍ଟିକୋଣରୁ ଏହି ପ୍ରବାହରେ ହୋଇଯାଇଥିଲା ସାମିଲ । ନୀଳ ସାଗର ଓ ନୀଳାମ୍ବୁ ଚିଲିକାର ମଧ୍ୟବର୍ତ୍ତୀ ଏଇ ଅଞ୍ଚଳ ମଧ୍ୟଯୁଗୀୟ ଛାନ୍ଦ ଚଉପଦୀ ପାଲାଗାୟନର ପ୍ରକୃଷ୍ଟ କ୍ଷେତ୍ର ଥିଲା । ବର୍ଷରେ ଗୋଟିଏ ବା ଦୁଇଟି ଫସଲ ଅମଳ କରୁଥିବା କୃଷକମାନେ ଅବସର ସମୟରେ ପାଇକଆଖଡ଼ା ଓ ସଂଗୀତ ଚର୍ଚ୍ଚାକୁ ଜୀବନର ଏକ ଅଙ୍ଗ ଭାବରେ ଗ୍ରହଣକରିନେଇଥିଲେ । 'ବ୍ରଜ ମାଧୁରୀ' କାବ୍ୟର ପ୍ରଣେତା ମାନସିଂହଙ୍କ ଜେଜେବାପା କବି ସତ୍ୟବାଦୀ ନାୟକ ପ୍ରାଚୀନ ରାଗ-ତାଳରେ କାବ୍ୟ ରଚନା କରିଥିଲେ । ମାନସିଂହଙ୍କର ଜଣେ ଦାଦା ରାତି ରାତି ଧରି ଠିଆପାଲା ଗାୟନ କରୁଥିଲେ । ଏ ସବୁ ପ୍ରସଙ୍ଗ ଡ. ମାନସିଂହ ବିଭିନ୍ନ ସ୍ଥାନରେ ଉଲ୍ଲେଖ କରିଛନ୍ତି । ବାଲ୍ୟକାଳରୁ ଲାଭକରିଥିବା ସାଂସ୍କୃତିକ ପ୍ରେରଣା ମାୟାଧରଙ୍କର ପରବର୍ତ୍ତୀ ସାଂସ୍କୃତିକ ଜୀବନକୁ କରିଛି ପ୍ରଭାବିତ ଓ ସଂଗଠିତ । କାବ୍ୟକାର ମାନସିଂହ ବିବିଧ ପ୍ରଭାବ, ଆଦର୍ଶ ଓ ସାଂସ୍କୃତିକ ଅବଶେଷର ସଂଶ୍ଳେଷ ।

୧୯୨୫ ମସିହାରୁ ୧୯୩୦ ଭିତରେ ମାନସିଂହଙ୍କ ଭିତରେ ଥିବା ବିବିଧ ସତ୍ତା ନାନାବିଧ ସାହିତ୍ୟ ରୂପ ଦେଇ ଆତ୍ମପ୍ରକାଶ କରିବାକୁ ଚାହିଁଛି । ତାଙ୍କର କବିତା, କାବ୍ୟ, ଗଳ୍ପ, ପ୍ରବନ୍ଧ, ନାଟକନାଟିକା ଏ ସମସ୍ତ ସାହିତ୍ୟ ବିଭାଗରେ ସେ ସମକାଳରେ ଲେଖନୀ ଚାଳନା କରିଛନ୍ତି । ଏହି ସମସ୍ତ ବିଭାକ ଭିତରୁ ସଂଖ୍ୟା, ବୈଚିତ୍ର୍ୟ ଓ ଆବେଦନ ଦୃଷ୍ଟିରୁ ତାଙ୍କର କ୍ଷୁଦ୍ର କବିତା ଗୁଡିକ ପାଠକମାନଙ୍କର ଅଧିକ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଛି । ମାନସିଂହଙ୍କ ପ୍ରାତିସ୍ୱିକତାର ପ୍ରକାଶ ଯଦି ହୁଏ ଗୀତି କବିତା, ତେବେ ତାହାଙ୍କ ଗୋଷ୍ଠୀଚେତନାର ଅଭିବ୍ୟକ୍ତି ହେଉଛି ତାହାଙ୍କ କାବ୍ୟସମୂହ । ତାହାଙ୍କ ବ୍ୟକ୍ତଗତ ସ୍ୱାଭିମାନର ପ୍ରକାଶ ଯଦି ହୁଏ ପ୍ରବନ୍ଧ, ତେବେ ତାହାଙ୍କ ଜାତୀୟ ଚେତନାର ଅଭିବ୍ୟକ୍ତି ହେଉଛି କାବ୍ୟ । ତେଣୁ ମାନସିଂହଙ୍କ କାବ୍ୟଗୁଡ଼ିକ ଓଡ଼ିଆ କାବ୍ୟଧାରାର ଯେପରି ଏକ ପରିଣତି, ସେହିଭଳି ପରଂପରା ସହ ସମକାଳୀନତାର ସେଗୁଡ଼ିକ ସମନ୍ୱୟ କ୍ଷେତ୍ର ।

ଖଣ୍ଡକାବ୍ୟ, କାବ୍ୟ ଓ ମହାକାବ୍ୟ ମିଶି ମାନସିଂହଙ୍କର ସମୁଦାୟ ୬ ଗୋଟି ରଚନା ଉପଲବ୍ଧ । ଉପେକ୍ଷିତା, ନିକ୍ୱଣ, ଶୁଭଦୃଷ୍ଟି, ଜେମା, ସାଧବଝିଅ ଓ କମଳାୟନ କ୍ରମରେ ସେଗୁଡ଼ିକ ଗ୍ରନ୍ଥାବଳୀ(୧୯୬୪)ରେ ସ୍ଥାନିତ । ମାନସିଂହଙ୍କ ଜୀବଦ୍ଦଶାରେ ସଂକଳିତ ଏହି ସର୍ବଶେଷ ସଂସ୍କରଣ ଏଠାରେ ମୂଳପାଠ ଭାବରେ ଗୃହୀତ । ୧୯୨୭ ମସିହାରୁ ୧୯୫୭ ମସିହା ପର୍ଯ୍ୟନ୍ତ ନାନା ଖଣ୍ଡନ ମଣ୍ଡନ ମଧ୍ୟରେ ଏ କାବ୍ୟଗୁଡ଼ିକ ଲିଖିତ ଓ ପ୍ରକାଶିତ । କାବ୍ୟ ରଚନାର ପ୍ରାରମ୍ଭିକ ରୂପ ଅନୁକ୍ରମରେ ସଜାଇ ରଖିଲେ ଏହିପରି ହେବ- ନିକ୍ୱଣ(୧୯୨୭), ଉପେକ୍ଷିତା (୧୯୨୮), ସାଧବଝିଅ(୧୯୨୯), ଶୁଭଦୃଷ୍ଟି (୧୯୩୦), ଜେମା (୧୯୩୭), କମଳାୟନ(୧୯୪୭) । କାବ୍ୟଗୁଡ଼ିକ ମଧ୍ୟରୁ ଅନେକ କବିତା ଆକାରରେ ଆତ୍ମପ୍ରକାଶ କରି ପରେ ପୂର୍ଣ୍ଣାଙ୍ଗ ଅବସ୍ଥା ଲାଭକରିଛି । କାବ୍ୟମାନଙ୍କର ବିଭିନ୍ନ ଅଂଶର ରଚନାକାଳ ଓ ପ୍ରକାଶନ ସଂପର୍କୀୟ ବିବରଣୀ ପରିଶିଷ୍ଟ-୧ରେ ପ୍ରଦାନ କରାଯାଇଛି ।

ମାନସିଂହ କାବ୍ୟର ଶରୀର ଅପେକ୍ଷା ଆତ୍ମାରେ ଅଧିକ ଆସ୍ଥା ସ୍ଥାପନ କରୁଥିଲେ । କାବ୍ୟ ସଂପର୍କୀୟ ଅନୁଚିନ୍ତା ଓ କାବ୍ୟରଚନା ସହ ସେ ଗୁଡ଼ିକର ସାମଞ୍ଜସ୍ୟ ଉଦ୍ଦେଶ୍ୟରେ ମାନସିଂହଙ୍କ ନିଜସ୍ୱ ବକ୍ତବ୍ୟକୁ ଉଦ୍ଧାରକରାଯାଉଛି । ମାନସିଂହ କହନ୍ତି— 'ସାହିତ୍ୟରେ କଳ୍ପନା ଓ ସ୍ୱପ୍ନର ପ୍ରୟୋଜନ ଥିଲେ ହେଁ, ତାହା ଏକମାତ୍ର ବା ପ୍ରଧାନ ପ୍ରୟୋଜନ ନୁହେଁ । ମାନବ ଜୀବନର ଅଗଣିତ ଦୁଃଖ ବେଦନାହିଁ ସାହିତ୍ୟକୁ ପ୍ରକୃତରେ ମେରୁଦଣ୍ଡ ଦାନକରେ ଓ କଲ୍ୟାଣମୟ କରେ । ଆମ୍ଭମାନଙ୍କ ପ୍ରାଚୀନ କାବ୍ୟ ସଂସାର କବିକଳ୍ପନାର ସ୍ଫଟିକ ପ୍ରାଚୀର ମଧ୍ୟରେ ବଢ଼ିଆସିଛି । ବାହାରେ ଦୃଶ୍ୟମାନ ଧୂଳିମୟ ସୃଷ୍ଟିର ସତ୍ୟ ସହିତ ତା'ର ବିଶେଷ ସଂପର୍କ ନାହିଁ । କିନ୍ତୁ ଏହି ଧୂଳି ଆବର୍ଜନାର ସୃଷ୍ଟି ତ ସତ୍ୟ ସୃଷ୍ଟି ।' (ପ୍ରାଚୀନ ଓଡ଼ିଆ କାବ୍ୟ) । ଏ ଦୃଷ୍ଟିରୁ ମାନସିଂହଙ୍କ କାବ୍ୟାବଳୀ ବିଚାର୍ଯ୍ୟ । କାବ୍ୟମାନଙ୍କର କଥାବସ୍ତୁ ଓ

ଗଠନ ରୀତି ଅନୁସାରେ ସେ ସଂପୂର୍ଣ୍ଣ ଭାବରେ ଏ ମାଟିକୁ ନିର୍ଭର କରିଛନ୍ତି । ତାଙ୍କ ମତରେ– 'ବିଦେଶୀ ଭାବ ଲୋକଙ୍କୁ ବିଦେଶୀ କରାଏନାହିଁ, ବିଦେଶୀ ଦେଶ ହିଁ ଲୋକକୁ ଇତରକରାଏ ।'

ମାନସିଂହ ତାଙ୍କର 'ପରଧର୍ମ' ପ୍ରବନ୍ଧରେ ସବୁଜ ଗୋଷ୍ଠୀ ସମେତ ତାଙ୍କ ସମସାମୟିକମାନଂକୁ ଯେଉଁ ଦୃଷ୍ଟିରୁ ଆକ୍ଷେପ କରିଥିଲେ, ତାର ପ୍ରତିକ୍ରିୟାର ସ୍ୱରୂପ ହିଁ ତାଙ୍କ କାବ୍ୟରେ ପ୍ରତିଫଳିତ । ସେ କହିଛନ୍ତି– 'ଜଗତର ଶ୍ରେଷ୍ଠ କବିଗଣଙ୍କ କାବ୍ୟ କବିତାରେ ଏହାହିଁ ଦେଖିବାକୁ ମିଳେ । ସେମାନଙ୍କର ମୁକୁଟ ଆକାଶ ସ୍ପର୍ଶ କରିଥିଲେ ହେଁ, ସେମାନଙ୍କର ପାଦ ତାଙ୍କର ନିଜ ଦେଶ ମାଟି ଉପରେ । ସେମାନେ ନିଜ ମାଟିରୁ ରସ ସଂଗ୍ରହ କରି, ନିଜର ପ୍ରତିଭା ବଳରେ ହିଁ ତାକୁ ସବୁ ଦେଶର ସଂପତ୍ତି କରିଯାଇଛନ୍ତି ।' (ପରଧର୍ମ).

ଓଡ଼ିଶାର ସମୃଦ୍ଧ ପ୍ରାଚୀନ ସାହିତ୍ୟ ବର୍ଣ୍ଣନାପାଟବରେ ଗରିୟାନ୍ ଥିଲେ ହେଁ, ଭାବ ଉପସ୍ଥାପନ ଦୃଷ୍ଟିରୁ ଅତ୍ୟନ୍ତ ଦୁର୍ବଳ । ସାହିତ୍ୟରେ ନବଜାଗରଣ ଆସିଲା ପରେ ହିଁ ସାଧାରଣ ମଣିଷର କଥା ସାହିତ୍ୟରେ ସ୍ଥାନ ପାଇଲା । ଫକୀରମୋହନ ତାଙ୍କ କଥାସାହିତ୍ୟରେ ସାଧାରଣ ମଣିଷର କଥା ଯେପରି କହିଥିଲେ, ମାନସିଂହଙ୍କ କାବ୍ୟରେ ସେହି ପ୍ରକାର ସାଧାରଣ ଚରିତ୍ରକୁ ସ୍ଥାନଦେଲେ, ସେମାନଙ୍କର ଅନ୍ତରର ଭାବ ଓ ଭାଷାକୁ ପ୍ରକାଶ କଲେ । ଆମର ନିତିଦେଖା ଘଟଣାକୁ ନୂଆ ରୂପରେ ସଜାଇ ଦେଖାଇଦେଲେ । ପ୍ରାସାଦବାସିନୀ ରାଜବାଳାର ରୂପବର୍ଣ୍ଣନା ଅପେକ୍ଷା କୁଟୀରବାସିନୀ ପଲ୍ଲୀବାଳାର ହୃଦୟର କଥା କହିଲେ । ନାଗରାଜ କନ୍ୟା ଉଲୁପୀର ମନର ଛବିକୁ ବଖାଣି ବସିଲେ । ସେ ନିବିଡ଼ ଭାବରେ ଜେମା, ଅଭାବ ସଂସାର କଥା ବି ଅନୁଭବୀର ମନ ନେଇ ପ୍ରକାଶ କଲେ । ମାନବିକ ଅନୁଭୂତିର ପରିପ୍ରକାଶ ପାଇଁ ଯଥାସାଧ୍ୟ ଉଦ୍ୟମ ହିଁ କବି ମାନସିଂହଙ୍କର ଭାବାଦର୍ଶ ।

**ଉପେକ୍ଷିତା**– ୧୯୨୮ ମସିହା ଅଗଷ୍ଟ, ସେପ୍ଟେମ୍ବର ଓ ଅକ୍ଟୋବର ମାସରେ 'ସହକାର'ର ତିନୋଟି ସଂଖ୍ୟାରେ ପ୍ରକାଶିତ । ଡ଼ ନଟବର ସାମନ୍ତରାୟ ଏହାକୁ ଦୀର୍ଘ ଅମିତ୍ରାକ୍ଷର କବିତା ଭାବରେ ଉଲ୍ଲେଖ କରିଥିଲେ ମଧ କବି ମାନସିଂହ ଏହାକୁ କାବ୍ୟ ପର୍ଯ୍ୟାୟରେ ଗ୍ରହଣ କରିଛନ୍ତି । ୧୯୨୬ ମସିହାରେ ହାଇସ୍କୁଲ ପରୀକ୍ଷାରେଂ ପାସ୍ କଲା ପରେ କବି ମାନସିଂହ ରେଭେନ୍ସା କଲେଜରେ ପ୍ରବେଶକରି କଟକ ସହରରେ ଅବସ୍ଥାନ କରିଛନ୍ତି । ଏଇଠି ତାଙ୍କ ସ୍ରଷ୍ଟା ଜୀବନର ବିକାଶ ପାଇଁ ବ୍ୟାପକ କ୍ଷେତ୍ର ମିଳିଛି । ଲେଖା ପ୍ରକାଶ ପାଇଁ ପତ୍ରପତ୍ରିକା ଓ ସାହିତ୍ୟ ଆଲୋଚନା ପାଇଁ ବ୍ୟାପକ ପରିବେଶ ସେ ପାଇଛନ୍ତି । ସେତେବେଳକୁ ରବି-ରଶ୍ମିର ଆଲୋକ ସମଗ୍ର ତରୁଣ ଗୋଷ୍ଠୀକୁ ମୋହିତ କରିଥାଏ । ରବୀନ୍ଦ୍ରନାଥଙ୍କ ଛନ୍ଦ, ପ୍ରକାଶଭଙ୍ଗି ଓ ଭାବଧାରା ଓଡ଼ିଶାର ଯୁବ ସାହିତ୍ୟିକମାନଙ୍କର କୋଠ ସମ୍ପତ୍ତି ହୋଇଥାଏ । ସମୟର ପ୍ରବାହରେ ଭାସିଯାଇଥିଲେ ମଧ ମାନସିଂହ ନିଜ ସୃଷ୍ଟିରେ ସ୍ୱାତନ୍ତ୍ର୍ୟ ରକ୍ଷାପାଇଁ ପ୍ରୟାସ ଚଳାଇଥିଲେ । ସମସାମୟିକ ପତ୍ରପତ୍ରିକାରେ ଏ ସଂପର୍କରେ

ନାନା ତର୍କ ବିତର୍କ ଆରମ୍ଭକରାଇଥିଲେ । ଅମଡ଼ାରେ ମାଡ଼ିଯାଇ ଅପଥରେ ପଥ ତିଆରି କରିବା ନେଇ ସେତେବେଳେ ମାନସିହ ନାନା ଆକ୍ଷେପ, ଆଲୋଚନା, ପ୍ରତ୍ୟାଲୋଚନାର ସମ୍ମୁଖୀନ ହୋଇଥିଲେ । ନିଜ ଲେଖା ସଂପର୍କରେ ଯୁକ୍ତି ବାଢ଼ି ମାନସିଂହ ଯେଉଁ ପ୍ରବନ୍ଧ ଆଲୋଚନା ଲେଖିଥିଲେ ଆଜି ତାହାକୁ କବି ମାନସିଂହଙ୍କ ସୃଷ୍ଟିର ପୃଷ୍ଠଭୂମି ଭାବରେ ଗ୍ରହଣକରାଯାଇପାରେ ।

୧୯୨୭ ମସିହାରେ ରବୀନ୍ଦ୍ରନାଥଙ୍କ 'ପ୍ରାଚୀନ ସାହିତ୍ୟ' ନାମକ ଆଲୋଚନା ପୁସ୍ତକର ଦ୍ୱିତୀୟ ମୁଦ୍ରଣ ପ୍ରକାଶିତହୁଏ । ଏଇ 'ପ୍ରାଚୀନ ସାହିତ୍ୟ' ପୁସ୍ତକର ଷଷ୍ଠ ପ୍ରବନ୍ଧ ଥିଲା 'କାବ୍ୟେ ଉପେକ୍ଷିତା' । ବାଲ୍ମୀକି ରାମାୟଣ ସମେତ ସଂସ୍କୃତ ସାହିତ୍ୟର ଉତ୍ତର ରାମ ଚରିତ, ଅଭିଜ୍ଞାନ ଶାକୁନ୍ତଳମ୍ ଓ କାଦମ୍ବରୀ କାବ୍ୟର ତିନିଗୋଟି ଚରିତ୍ର, ଯଥା ଲକ୍ଷଣଙ୍କ ସ୍ତ୍ରୀ ଉର୍ମିଳା, ଶକୁନ୍ତଳାଙ୍କ ଦୁଇ ସଖୀ ଅନସୂୟା ଓ ପ୍ରିୟମ୍ବଦା ତଥା କାଦମ୍ବରୀର ପତ୍ରଲେଖା ଚରିତ୍ରକୁ ସଂପୃକ୍ତ କାବ୍ୟର କବି ସେମାନଙ୍କ ତ୍ୟାଗ ଅନୁରୂପ ସ୍ଥାନ ଦେଇନାହାନ୍ତି ବୋଲି ଆଲୋଚନା କରିଛନ୍ତି । କିନ୍ତୁ ମାନସିଂହଙ୍କୁ ପ୍ରଲୁବ୍ଧ କରିଥାଇପାରେ— ଏଭଳି ଆଶଙ୍କା ଅମୂଳକ ନୁହେଁ । କିନ୍ତୁ ମାନସିଂହ ରାମାୟଣର ଆଉ ଏକ ଚରିତ୍ର ସୂର୍ପଣଖାକୁ କାବ୍ୟନାୟିକା ଭାବରେ ଗ୍ରହଣ କରିଛନ୍ତି । ବିଶ୍ରବାନନ୍ଦିନୀ, ଦଶାନନଭଗିନୀ ସୂର୍ପଣଖା ବି ଜଣେ ନାରୀ । ସେ ସୁନ୍ଦରୀ ଯୁବତୀ । ତା ମନରେ ବି ଭରିରହିଥିଲା କାମନା, ପ୍ରାପ୍ତିର ଲାଳସା । କିନ୍ତୁ ସେ ଜୀବନରେ ହୋଇଛି ଉପେକ୍ଷିତା । ଆଶ୍ରମରେ ପ୍ରବେଶ କରିଥିବା ଜଣେ ସମବୟସ୍କ ବାଳକ ସହିତ ତାର ସଖ୍ୟ ସ୍ଥାପିତ ହୋଇଛି । କ୍ରମଶଃ ବ୍ରହ୍ମଚାରୀଙ୍କ ପ୍ରତି ଅତିମାତ୍ରାରେ ଆସକ୍ତ ହୋଇ ଏକତରଫା ଭାବରେ ଭଲପାଇବସିଛି ସେ । ଯୌବନାଗମ କାଳରେ ବ୍ରହ୍ମଚାରୀଙ୍କୁ ଭିନ୍ନ ସ୍ଥାନରେ ଅବସ୍ଥାନ କରାଯାଇଛି । ଆଶ୍ରମ ତ୍ୟାଗର ପୂର୍ବ ରଜନୀରେ ସୂର୍ପଣଖା ସେ ଯୁବକଙ୍କୁ ଭେଟି ବିବାହ ନିମିତ୍ତ ଇଚ୍ଛା ପ୍ରକାଶ କରିଛି, ମାତ୍ର ବ୍ରହ୍ମଚାରୀ ଯୁବକ ନିଜର ଅସାମର୍ଥ୍ୟ ଜଣାଇଛି, କାରଣ ଯୁବକର ପିତା ବାଲ୍ୟାବସ୍ଥାରେ ଅନ୍ୟ ଏକ କନ୍ୟା ସହିତ ବିବାହ ସମ୍ପନ୍ନ କରାଇଛନ୍ତି, ଏଣୁ ସେ ନିରୁପାୟ । ସୂର୍ପଣଖାର ପୂର୍ବ ନାମ କ'ଣ ଥିଲା ସେ ସଂପର୍କରେ କୌଣସି ସୂଚନା ପ୍ରଦାନ କରାଯାଇନାହିଁ । ଉପେକ୍ଷିତା ହେଲା ପରେ ଆଲୁଳାୟିତକେଶ, ଛିନ୍ନବସ୍ତ୍ର, ଜୀର୍ଣ୍ଣ ଶରୀରରେ ମାନସିକବିକାରଗ୍ରସ୍ତ ପରି ସେ ଭ୍ରମଣ କରିବାକୁ ଲାଗିଲା— "ଅସଭ୍ୟ ବର୍ବରବତ ବୁଲୁଥାଏ ସଦା/ସୂର୍ପ ପରି ଅଯତନେ ବଢ଼ି ନଖପନ୍ତି/କଲା ମତେ ଭୟଙ୍କର; ଡାକିଲେ କେତେକ ସୂର୍ପପଣା ନାମ ଧରି ପାଗଳିନୀ ବୋଲି ।"

ନବୀନ-ନୀରବ-କାନ୍ତି ଧାରଣକରିଥିବା ଅଭିରାମ ଶ୍ରୀରାମଙ୍କ ରୂପଦର୍ଶନ ସମୟରେ ପୂର୍ବ-କଥିତ ଯୁବକର ଚିତ୍ର ସୂର୍ପଣଖା ସମ୍ମୁଖରେ ଉପସ୍ଥିତ ହୋଇଛି । ସେ ମାନସିକ ଭାରସାମ୍ୟ ହରାଇବସିଛି, ପାଲଟିଯାଇଛି ପାଗଳିନୀ । କବି ମାନସିଂହ ଅମିତ୍ରାକ୍ଷର ଛନ୍ଦରେ

କାବ୍ୟନାୟିକାର ମନୋଭାବକୁ ଉପସ୍ଥାପନ କରିବାକୁ ଚେଷ୍ଟାକରିଛନ୍ତି । କାବ୍ୟର ପ୍ରତି ଛତ୍ରରେ ମାନସିଂହ ପ୍ରତିଭାର ନମୁନା ଉପସ୍ଥିତ ।

**ନିକ୍ୱଣ–** 'ନିକ୍ୱଣ' ଖଣ୍ଡକାବ୍ୟରେ କବି ନିଜେ ହିଁ ନାୟକ । ଗୋଟିଏ ଅଜ୍ଞାତ ରାଜ୍ୟର ରାଜକନ୍ୟା କାବ୍ୟର ନାୟିକା । ଏ କାବ୍ୟର ୧୬ଟି ଅଂଶ– ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର କବିତା । ପ୍ରତ୍ୟେକ ଅଂଶର ରଚନାକାଳ ଗ୍ରନ୍ଥାବଳୀର ପରିଶିଷ୍ଟ(୧)ରେ ପ୍ରଦାନ କରାଯାଇଛି । 'ନିକ୍ୱଣ' କାବ୍ୟରେ କବି ମାନସିଂହଙ୍କ କାବ୍ୟ-ଦୃଷ୍ଟି ତଥା ଜୀବନ ସଂପର୍କୀୟ ଅଭିବ୍ୟକ୍ତିର ସୂଚନା ସ୍ପଷ୍ଟ । ଯେଉଁ କବି 'ଜୀବନଗୀତ' ଗାଇପାରିବ, ସେ ହିଁ ରାଜକବି ଭାବରେ ସମ୍ମାନ ପାଇବ, 'ତରୁଣ କବିର ବିରାଟ ଆଶା' ଏଥିରେ ରୂପାୟିତ ହୋଇଛି । କବିଙ୍କର ଅଭିଳାଷ ହେଲା–

''ଜଳୁଥାଉ ହୀରାମଣି/ରାଜଗନ୍ତାଘରେ/ନାହିଁ ଦରକାର,
ରାଣୀ-କଣ୍ଠ-ପୁଷ୍ପମାଳା/ଯଦି ହୁଏ କେବେ/ମୋର ପୁରସ୍କାର''

୧୯୨୭ ମସିହା ମାର୍ଚ୍ଚ ମାସ ୨୦ ତାରିଖରୁ ୩୦ ତାରିଖ ମଧ୍ୟରେ ବସନ୍ତ ଋତୁର କେଉଁ ସ୍ୱପ୍ନିଳ ମୁହୂର୍ତ୍ତରେ ଏ କାବ୍ୟର ରଚନା । କାବ୍ୟରେ କବି ଏକ ସ୍ୱପ୍ନର ସାମ୍ରାଜ୍ୟ ତିଆରିକରିଛନ୍ତି । କବିଙ୍କ ସ୍ୱପ୍ନ-କାନନର ବର୍ଣ୍ଣନା ପରେ ଲେଖିଛନ୍ତି–

''ଏ ଜୀବନ ମିଳେ ଯଦି ଏଇ ଧରାପରେ ହେ, ଏଇ ଧରାପରେ,
କିପାଇଁ ମଣିଷ ନିଜ ଜୀବନେ ଧିକ୍‌କାରେ ହେ, ଜୀବନେ ଧିକ୍‌କାରେ,

'ଧୂପ'ର ପ୍ରାକ୍‌କାଳରେ ରଚିତ ଏହି କାବ୍ୟରେ 'ଧୂପ'ର ମର୍ମବାଣୀ ପ୍ରତିଫଳିତ । ଏ କାବ୍ୟରେ ପ୍ରୟୋଗକରାଯାଇଥିବା ଶବ୍ଦ, ଉପସ୍ଥାପନା ଶୈଳୀ ଓ ଆତ୍ମିକ ଅଭିବ୍ୟକ୍ତିରୁ କାବ୍ୟ ଦୁଇଟିର ସଂପର୍କ ବାରିହୋଇଯାଏ ।

ହାୟ ଦୟାମୟି/ଯିବ କି ପରତେ,/ମୋର ବୋଲି ନାହିଁ କେହି,
ଜାଣିବି ଜୀବନେ/ଆଦର ଶରଧା/ଏ ଦୁଃଖୀ, କନକଦେହି !
କେହି ତ କେବେହେଁ/ଶୁଭାଶୁଭେ ମୋର/ନୟନୁ ଢ଼ାଳନି ଲୁହ,
ତମ ହୃଦେ କିପାଁ/ମୋ ପାଇଁ ସରଳେ,/ଉଠେ ଏ କରୁଣା-ସୁଅ ? ('ନିକ୍ୱଣ'-୫)

'ଧୂପ'ର 'ପାପ ଓ ପ୍ରେମ'ରେ ମାନସିଂହ ଠିକ୍ ଏହିପରି ଲେଖିଛନ୍ତି–

'ନୟନୁ ଯାହାର ଲୋତକ ମୋ ପାଇଁ ବହିଲା,
ମୋ ନୟନେ ସେ ତ ପରମ ପୂଜ୍ୟା ମହିଳା । ('ପାପ ଓ ପ୍ରେମ')

'ଧୂପ' ଓ 'ନିକ୍ୱଣ' ମଧ୍ୟରେ ଅନେକ ସ୍ଥାନରେ ସାମ୍ୟ ପରିଲକ୍ଷିତ ହେବାର କାରଣ, 'ଧୂପ' ପାଇଁ ମାନସିଂହଙ୍କ ମନରେ ଭାବନା ଦାନାବାନ୍ଧିବାର ସମକାଳରେ ହିଁ 'ନିକ୍ୱଣ' ରଚନା କରାଯାଇଛି ।

ପ୍ରାଚୀନ ଓଡ଼ିଆ ସାହିତ୍ୟର ଭାବାଦର୍ଶ ତଥା ଅନେକ ଲୋକପ୍ରିୟ ପଦ ମାନସିଂହଙ୍କୁ ପ୍ରଭାବିତ କରିଥିଲା । କବି ଅଭିମନ୍ୟୁ ସାମନ୍ତସିଂହାରଙ୍କର 'ବିଦଗ୍ଧ ଚିନ୍ତାମଣି'ର ପ୍ରେମ ସଂପର୍କୀୟ ପଦାବଳୀ ମାନସିଂହ ବିଭିନ୍ନ ସ୍ଥାନରେ ପ୍ରୟୋଗ କରିଛନ୍ତି– 'ଅନଳ ନୁହଁଇ ଦେହ ଦହଇ/ଅସ୍ତ୍ର ନୁହଁଇ ମରମେ ଭେଦଇ'ର ଅନୁରୂପ ପଦ 'ପ୍ରୀତି ହୁଏ ଏତେ କଦର୍ଥନା/ ଅଗ୍ନି ନାହିଁ, ତେବେ ମଧ,/ ଦେହ ମନ ପୋଡ଼ିଯାଏ ଜଳି' ଇତ୍ୟାଦି । 'ନିକ୍ୱଣ' କାବ୍ୟ କେବଳ ତରୁଣକବି ମାନସିଂହଙ୍କର ହୃଦୟର ଝଙ୍କାର ନୁହେଁ, ଏହା ପ୍ରତ୍ୟେକ ତରୁଣର ପ୍ରାଣର ଝଙ୍କାର ।

**ଶୁଭଦୃଷ୍ଟି**– ଅମିତ୍ରାକ୍ଷର ଛନ୍ଦରେ ଲେଖାଯାଇଥିବା 'ଶୁଭଦୃଷ୍ଟି' ଏକ ଉନ୍ନତ ସୃଷ୍ଟି । ନାଗରାଜକନ୍ୟା ଉଲୁପୀ ଏ କାବ୍ୟର ନାୟିକା ଓ ବୀର ଫାଲ୍‌ଗୁନ କାବ୍ୟର ନାୟକ । 'ଧୂପ' ପ୍ରକାଶନର ପ୍ରାକ୍‌କାଳରେ ରଚିତ ଓ ପ୍ରକାଶିତ ଏଇ କାବ୍ୟର ବର୍ଣ୍ଣନା ତଥା ଉପସ୍ଥାପନା ଚମତ୍କାର । ପ୍ରେମର ଉଚ୍ଛୁଳା ତରଙ୍ଗକୁ କବି ସୁନ୍ଦରଭାବରେ ପରିପ୍ରକାଶ କରିଛନ୍ତି । ମାନସିଂହଙ୍କ ବହୁପ୍ରଚାରିତ ଲୋକପ୍ରିୟ ପୁସ୍ତକ 'ଧୂପ' ପ୍ରକାଶ ପୂର୍ବରୁ ସେ ଯେପରି ଏଥିରେ ପରୀକ୍ଷାନିରୀକ୍ଷା ଚଳାଇଥିଲେ ।

ବୈଶାଖ କାନନ ସମ ଦଗ୍‌ଧ ମତେ କରେ ନିଜ ନିଆଁ ।
ଏକଇ ତାରଣ ବୋଲି ହିୟା ମୋର ଡ଼ାକେ 'ପ୍ରିୟା' 'ପ୍ରିୟା' ।
ମନେହୁଏ ଧୂପ ସମ ଦଗ୍‌ଧ ହୋଇ ବାଷ୍ପ ଯିବି ହୋଇ,
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବି ଥୋଇ । ('ପ୍ରଣୟ ବ୍ୟଥା'- 'ଧୂପ') 'ଶୁଭଦୃଷ୍ଟି'ରେ–
'ଅସୀମ ବେଦନାନଳେ ଦହି ଏ ପରାଣ
ଧୂପ ସମ ଢାଳି ଦେବି ଏ ଜୀବନ ମମ
ମୋ ପ୍ରିୟ ଗୌରବ ଲାଗି, –ପ୍ରେମ ସେ କି ନୁହେଁ ?''

ମାନସିଂହଙ୍କର ଏହି ଭାବନା ପରବର୍ତ୍ତୀ କାଳରେ 'କମଳାୟନ' କାବ୍ୟରେ ବି ପ୍ରତିଫଳିତ ହୋଇଛି । ଶୁଭଦୃଷ୍ଟିରେ ଅଛି–

''ପ୍ରେମ କି କେବଳ ଭୋଗେ ଅଙ୍ଗେ ଅଙ୍ଗ ମେଳେ,
ଅଧରୁ ଅଧର ପାନେ, ଶରୀର ଆଘ୍ରାଣେ,
ଏ ଦେହର ରସ ଭୋଜ୍ୟେ ?''...ଇତ୍ୟାଦି ଇତ୍ୟାଦି

'କମଳାୟନ'ରେ ଏହି ଚିନ୍ତନର ବିକଶିତ ରୂପ ଏଇପରି–

''ପ୍ରେମ ନୁହେଁ ଦେହ-ଦେହୁଁ ଭୋଗ୍ୟ ଅନ୍ୱେଷଣ,
ପ୍ରେମ, ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ ।
ପ୍ରେମ, ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ, ଆନପାଇଁ ଦେବା ନିଜକୁ ହଜାଇ ।'' ଇତ୍ୟାଦି ଇତ୍ୟାଦି

ମାନସିଂହଙ୍କ ଭାବରାଜ୍ୟରେ ଓଡ଼ିଆ ପାଇକର ବୀରତ୍ୱ, ପାଇକବଧୂର ତ୍ୟାଗ, ରକ୍ତଚନ୍ଦନର ତିଳକ ଲଗାଇ ବୀର ପାଇକକୁ ସମରଭୂମିକୁ ପ୍ରେରଣ କରିବାର ଚିନ୍ତନ ସର୍ବଦା ଖେଳିବୁଲୁଥିଲା । ଏଣୁ ସେ ଯେଉଁଠି ସୁଯୋଗ ପାଇଛନ୍ତି, କାବ୍ୟ କବିତା, ପ୍ରବନ୍ଧ, ନାଟକ ଇତ୍ୟାଦିରେ ଏହି ଭାବଧାରାକୁ ପ୍ରକାଶକରିଛନ୍ତି । ମାନସିଂହଙ୍କ ନାରୀ ଦୁର୍ବଳ-ହୃଦୟା ନୁହେଁ, ଅସହାୟା ନୁହେଁ । ଜୀବନର ସର୍ବଶ୍ରେଷ୍ଠ ଧନକୁ ସେ ଦେଶମାତୃକା ପାଇଁ ଉତ୍ସର୍ଗ କରିଦିଏ । ଏ କାବ୍ୟରେ ପ୍ରେୟସୀ ଉଲୁପୀ ପ୍ରିୟବର ବୀର ଧନଞ୍ଜୟଙ୍କୁ ବିଜୟ ଯାତ୍ରାରେ ଯିବାପାଇଁ ଗର୍ବର ସହିତ ବିଦାୟ ଦେଇ କହିଛି—

''ଯାଆନ୍ତୁ ମୋ ପ୍ରିୟ,/ବିଦାୟର ଦଣ୍ଡ ତାଙ୍କ ହେଉ ଜୟଶୀଳ;/
ବାରଣ କରି ମୁଁ କିପାଁ ହେବି ଅମଙ୍ଗଳ/ତାଙ୍କର ବିଜୟ ପଥେ, ଯାଆନ୍ତୁ ସେ ସୁଖେ ।/
ନାରୀ-ଚରିତ୍ରବ୍ରତ ଏହି, —ପ୍ରିୟରେ ତାହାର/ପିନ୍ଧାଇ ମୁକୁଟ ଶିରେ, ଖଞ୍ଜାଇ ତୂଣୀର,/
ବନ୍ଧାଇ କଠିନ ବର୍ମ କାନ୍ତ-ଶାନ୍ତ କରେ,/ନଚାଇ ତା ବୀର ରକ୍ତ କଙ୍କଣ-ଝଣିତେ/
ପଠାଇବ ରଣଭୂମେ;— ତା ପରେ କୁଟୀରେ/ସତୀତ୍ୱ-ପ୍ରଦୀପ ଜାଳି ପ୍ରିୟ-ଯଶ ଲାଗି/ପୂଜିବ ତା ଇଷ୍ଟଦେବ ।'' (ଶୁଭଦୃଷ୍ଟି)

ଜେମା— ''ଜେମା'' ମାନସିଂହଙ୍କ କାବ୍ୟ ମଧ୍ୟରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । କଥାସମ୍ରାଟ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ'ରେ ଯେପରି ସାଧାରଣ ଧୂଳିମାଟିର ଚରିତ୍ରକୁ ଉପନ୍ୟାସରେ ବିଶିଷ୍ଟ ଆସନ ଦିଆଯାଇଛି; ମାନସିଂହ ସେପରି ନିଜ ଗାଁର ଗୋଟିଏ ଦୁଃଖିନୀ ଝିଅକୁ ସଂପୂର୍ଣ୍ଣ ନୂତନ ରୀତିରେ କାବ୍ୟର ନାୟିକା କରି ଅମରକରିଦେଇଗଲେ । ନିପଟ ମଫସଲର ଓଡ଼ିଆଣୀ ଝିଅଟିକୁ ମାନସିଂହ ଓଢ଼ଣାଟଣା ଶାଢ଼ୀ ପୋଷାକ ମଧ୍ୟରେ ଠିଆକରାଇବାକୁ ଚାହିଁଛନ୍ତି । ଏଣୁ 'ଶୁଭଦୃଷ୍ଟି', 'ଉପେକ୍ଷିତା', 'କମଳାୟନ'ରେ ପ୍ରୟୋଗ କରିଥିବା ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ନ କରି ସଂପୂର୍ଣ୍ଣ ଓଡ଼ିଶୀ ଛନ୍ଦର ମାରିଆବନ୍ଧୀ ଶାଢ଼ୀଟିଏ ପିନ୍ଧାଇ ପଦାକୁ ଛାଡ଼ିଛନ୍ତି । ମାତ୍ର ଆତ୍ମିକ ପ୍ରୟୋଗରେ ଏ କାବ୍ୟରେ ଆଧୁନିକତା ବିଦ୍ୟମାନ ।

'ଜେମା' କାବ୍ୟର ଚରିତ୍ର ସବୁ ସତ୍ୟ ଘଟଣା ଉପରେ ଆଧାରିତ । ସେମାନେ କବି ମାନସିଂହଙ୍କ ନିଜ ଗ୍ରାମର, ଏଇ ଧୂଳି-ମାଟିରେ ଚାଲୁଥିବା ମଣିଷ । 'ଜେମା' କାବ୍ୟର ପ୍ରାକୃତିକ ବର୍ଣ୍ଣନା ବି କଳ୍ପନାରୁ ନୁହେଁ- ମାନସିଂହଙ୍କ ନିଜ ଗ୍ରାମ ଓ ସମୁଦ୍ର ତଟର ବର୍ଣ୍ଣନା । ଡ. ମାଧାଧର ମାନସିଂହଙ୍କ ସଂପର୍କରେ କ୍ଷେତ୍ରାନୁସନ୍ଧାନ ସମୟରେ ମୁଁ ଏ ସବୁ ସ୍ଥାନ ଦେଖିଛି । ମାନସିଂହଙ୍କ ନନ୍ଦଳା ଗ୍ରାମରେ ଅବସ୍ଥାନ ସମୟରେ ଜେମାର ଘର ଦେଖିଥିଲି ଓ ତାଙ୍କ ପୁତୁରାଙ୍କୁ ମଧ୍ୟ ସାକ୍ଷାତକରିଥିଲି । ଘଟଣାସବୁ ସାଧାରଣ, ମାତ୍ର କବି ମାନସିଂହଙ୍କ ଲେଖନୀରେ ସାଧାରଣ ପାଲଟିଛି ଅସାଧାରଣ । ବହୁପରିଚିତ ରାଗ 'ଚୋଖୀ'ରେ ଲିଖିତ ପଦମାନ କିପରି ଚେତନାରେ ଆଧୁନିକ ତାହାର ନମୁନା ଦେଖନ୍ତୁ । ଜେମାର ପ୍ରସ୍ତାବିତ ଭିଣୋଇ ଯିଏକି ଭଉଣୀର ଅକାଳ ମୃତ୍ୟୁ-ପରେ ଜେମାକୁ ବିବାହକରିଛି, ତା ସଂପର୍କରେ ମାନସିଂହ ଲେଖିଛନ୍ତି—

"ଭଞ୍ଜଭୂମି-ଗଞ୍ଜାମରେ ବାସ, ତେଣୁ ସୌଦାଗରେ
ବନିତା-ବିଳାସେ କିଛି ଶ୍ରଦ୍ଧା ଅଧିକ
ନାନାଭାବେ ନାରୀ-ରସ -ପିଇ ଦେଖାଇବେ ଯଶ
ବୋଲି ନାରୀ-ମୃଗୟାରେ ମତ୍ତ ରସିକ,
ଜନକର ବିପୁଳ ଭୂତି
ବିଳାସ ଲାଳସା ଯଜ୍ଞେ ଦେଇ ଆହୁତି ।

ଜେମା ଓ ତାହାର ଜ୍ୟେଷ୍ଠା ଭଗ୍ନୀ ପଦ୍ମାକୁ ଦେଖିବା ପରେ ପୂର୍ବକଥିତ ଗଞ୍ଜାମ ଅଞ୍ଚଳର ରସିକ ସୌଦାଗର ପ୍ରଲୁବ୍ଧ ହୋଇଛି । ଦାରିଦ୍ର୍ୟ ମଧ୍ୟରେ ଦିନକାଟଥିବା ଜେମାର ପରିବାର କୌଣସି ଭରସା ଖୋଜୁଥିବା ବେଳେ ସୌଦାଗର ପଦ୍ମା ସହିତ ବିବାହ ନିମନ୍ତେ ପ୍ରସ୍ତାବ ପ୍ରେରଣ କରିଛି । ଗଞ୍ଜାମ ଅଧିବାସୀ ସୌଦାଗର ଦଳେଇଙ୍କ ସମାଜ ତଥା ଜାତିର । ପୁନଶ୍ଚ ସେ ଧନୀଘରବୋଲି ଅନୁମାନକରି ପଦ୍ମାର ବିବାହ ସୌଦାଗର ସହିତ ସମ୍ପନ୍ନ ହୋଇଯାଇଛି । ମାତ୍ର ବହୁନାରୀଙ୍କ ସହିତ ସଂପର୍କ ରଖିଥିବା ସୌଦାଗରର ଅସଲସ୍ୱରୂପ ବିବାହ ପରେ ହିଁ ଜଣାପଡ଼ିଲା । ବିଳାସୀ ଲମ୍ପଟ ସୌଦାଗରର ଅବହେଳା, ଅତ୍ୟାଚର ମଧ୍ୟରେ ଚାରିବର୍ଷର ଘରସଂସାର କରି ପଦ୍ମାବତୀ ପରଲୋକ ଗମନକଲା । ପଦ୍ମାବତୀ ପିତୃପରିବାରର ଦାରିଦ୍ୟ୍ୟକୁ ଅନୁଭବ କରି, ପତି-ଗୃହର ସମସ୍ତ ବେଦନାକୁ ହୃଦୟରେ ଧରି ଆଖିର ଲୁହକୁ ଓଠରେ ପିଇପିଇ ଦୁଇଟି ସନ୍ତାନକୁ ଜନ୍ମଦେଇଥିଲେ ମଧ୍ୟ ନିଜର ନିର୍ଯ୍ୟାତନା ସଂପର୍କରେ ପିତାମାତାଙ୍କୁ ଅନ୍ଧକାରରେ ରଖିଦେଇଗଲା ।

ତାପରେ ସୌଦାଗରର ଦୃଷ୍ଟି ପଡ଼ିଲା ପଦ୍ମାର ସାନଭଗ୍ନୀ ସୁନ୍ଦରୀ ଜେମା ଉପରେ । ସରଳ ହୃଦୟ ଦଳେଇପରିବାର ଜ୍ୟେଷ୍ଠାକନ୍ୟାର ଦୁଇ ଶିଶୁପତ୍ରଙ୍କୁ ଦୃଷ୍ଟିରେରଖି ସୌଦାଗରର ବିବାହ ପ୍ରସ୍ତାବରେ ରାଜିହେଲେ । ବିବାହ ପରେ ପୁଆଣି ହେବା ପର୍ଯ୍ୟନ୍ତ ଜେମା ପିତୃଗୃହରେ କଲା ଅବସ୍ଥାନ । ପତି-ଗୃହ ସଂପର୍କରେ ମନରେ ଭାସିଉଠିଲା ତାର ଅନେକ ସ୍ୱପ୍ନ । ଗ୍ରାମ୍ୟ ରମଣୀଙ୍କର ଥଟ୍ଟା ପହଲୀ ମଧ୍ୟରେ ଜେମା ମନରେ ମଡ଼ିଉଠେ କେତେ କଳ୍ପନାର ସୌଧ । ମାତ୍ର ବାସ୍ତବ ଜୀବନରେ ପତି-ଗୃହ ଗମନ ନିମନ୍ତେ ପ୍ରତୀକ୍ଷା କରି କରି ଜେମା ହୁଏ ନିରାଶ । ହଠାତ୍ ଦିନେ ଖବର ଆସେ ଯେ ଜେମାର ଋଣଗ୍ରସ୍ତ ସ୍ୱାମୀ ନିରୁଦ୍ଦିଷ୍ଟ । ଋଣଦାତାମାନେ ସ୍ୱାମୀଙ୍କର ସ୍ଥାବର ଅସ୍ଥାବର ସମସ୍ତ ସଂପତ୍ତିକୁ କରି ନେଇଛନ୍ତି ଦଖଲ । ପରଦ୍ୱାରରେ ମୁଣ୍ଡଗୁଞ୍ଜିଥିବା ଜେମାର ଶାଶୂ ଓ ଦୁଇ ଭଗ୍ନୀପୁତ୍ରଙ୍କୁ ଜେମାର ପିତା ଦଳେଇ ନେଇଆସନ୍ତି ନିଜ ଗ୍ରାମକୁ । ଏଭଳି ଅଘଟଣରେ ଜେମାର ମୁହଁରୁ ଲିଭିଗଲା ହସ । ପିତୃଗୃହରେ ଅବସ୍ଥାନ କାଳରେ ଜେମାର ଜୀବନରେ ଦେଖାଦେଇଛି ଆଉ ଏକ ଘଟଣା ।

ଜେମା ଲମ୍ପଟ-ବୃଦ୍ଧ-ସ୍ୱାମୀର ସାନିଧ ଲାଭ କରିପାରି ନଥିଲା— ତା ପୂର୍ବରୁ ସ୍ୱାମୀ ହୋଇଥିଲେ ପଳାତକ । ଜେମାର କୁଆଁରୀ ମନ କୌଣସି ଆଶ୍ରା ଲୋଡୁଥିବାବେଳେ ପରିଚୟ ହୁଏ ଜ୍ୟେଷ୍ଠଭ୍ରାତାଙ୍କ ଶାଳକ ଯୁବକ-ବନ୍ଧୁଙ୍କ ସହିତ । ସପରିବାର ଅଳେଶ୍ୱର ମହାଦେବଙ୍କ

ଦର୍ଶନ ଉଦ୍ଦେଶ୍ୟରେ ଦୀର୍ଘପଥ ପଦଯାତ୍ରା ସମୟରେ ପୂର୍ବର ସଖ୍ୟ ଆହୁରି ନିବିଡ଼ତର ହୁଏ । ମାତ୍ର ଏକ ସ୍ଥାନରେ ଗ୍ରାମର ଅନ୍ୟ ଏକ ଯୁବତୀ ସହିତ କୌଣସି ଦୃଷ୍ଟି-କଟୁ ଅବସ୍ଥା ଦେଖି ସେ ବିମର୍ଷ ହୋଇଯାଇଛି । ଗ୍ରାମର ଅନ୍ୟ ନାରୀମାନେ ସେ ଘଟଣାକୁ ନେଇ ସେ ଯୁବତୀ ସହିତ ବିବାହ ସଂପର୍କରେ ଚର୍ଚ୍ଚାକରିବାରୁ ଜେମାର ସ୍ୱପ୍ନ ଭାଙ୍ଗିଯାଇଛି । ଦୀର୍ଘଦିନ ଧରି ବଧୂ-ଭ୍ରାତା ତା ମନରେ ଯେଉଁ ସପନର ଜାଲ ବିଛାଇଆସିଥିଲା ଜେମା ତାକୁ ପ୍ରତାରଣାବୋଲି ଜାଣିନେଇଛି ।

ପ୍ରଥମ ପ୍ରଣୟ ବିଷମୟ ହେବାରୁ ଜେମାର ମନରେ ଦେଖାଦେଇଛି ଝଡ଼ । ଏହି ସମୟରେ ଭାଉଜଙ୍କ ପ୍ରସ୍ତାବକ୍ରମେ ଭାଇ ଜେମାର ବିବାହ-ପ୍ରସ୍ତାବ ନିମନ୍ତେ କରିଛନ୍ତି ଆୟୋଜନ । ଜେମାର ଶାଶୂ ଏ ବିଷୟରେ କରିଛନ୍ତି ସମ୍ମତିପ୍ରଦାନ । ଅନ୍ୟାନ୍ୟ ପ୍ରସ୍ତାବ ସହିତ ଭ୍ରାତୃ-ଶାଳକ ପୂର୍ବଯୁବକଙ୍କ ବିଷୟରେ ଆସିଛି ପ୍ରସ୍ତାବ, ମାତ୍ର ଜେମା ସେ ପ୍ରସ୍ତାବକୁ କରିଛି ପ୍ରତ୍ୟାଖ୍ୟାନ । ବୁକୁର ବେଦନାକୁ ମନରେ ମାରି ସେ କହିଛି– ସେ'ତ ଜଣକର ହାତ ଧରିଥିଲା, ସେ ବିବାହ ଯଦି ବିଫଳହେଲା ତେବେ ସେ ଆଉ ବିବାହ କରିବ ନାହିଁ । ତାପରେ ଭଉଣୀର ଦୁଇ ପୁଅ ଓ ଶାଶୁଙ୍କ ସହିତ ଫେରିଯାଇଛି ଗଞ୍ଜାମରେ ଅବସ୍ଥିତ ଶାଶୁଘରକୁ ।

କରୁଣ ପରିବେଶ ମଧ୍ୟରେ ହିଁ ହୋଇଛି ଜେମାକାବ୍ୟର ପରିସମାପ୍ତି । ସତ୍ୟ-ଘଟଣା ଉପରେ ଆଧାରିତ କଥାବସ୍ତୁକୁ ନେଇ ମାନସିଂହ ଦୃଷ୍ଟିକରିଛନ୍ତି ଏକ ଚମତ୍କାର କାବ୍ୟ । ଭାଷା, ଭାବ ଓ ଉପସ୍ଥାପନା ଦୃଷ୍ଟିରୁ ମାନସିଂହଙ୍କର ଏହା ଏକ ଅନନ୍ୟସାଧାରଣ ସୃଷ୍ଟି ।

**ସାଧବଝିଅ–** ମାନସିଂହଙ୍କ ରଚନାବଳୀ ମଧ୍ୟରେ 'ସାଧବଝିଅ' ଏକ ଭିନ୍ନ ସ୍ୱାଦର କାବ୍ୟ । ଓଡ଼ିଶାର ନୌବାଣିଜ୍ୟର ଗୌରବଗାଥା, ସର୍ବୋପରି ସାଧବପୁଅର ଦୁଃସାହସିକ ଜୟଯାତ୍ରା ମାନସିଂହଙ୍କ ମନରାଜ୍ୟରେ ଯେପରି ହେଉଥିଲା ସର୍ବଦା ଅନୁରଣିତ । ରୋମାଣ୍ଟିକ୍ କବି ମାନସିଂହଙ୍କ ସୁଦୂର ମୋହ, ଅତୀତ ପ୍ରୀତି ତାଙ୍କୁ ପ୍ରୋତ୍ସାହିତ କରିଛି ଉତ୍କଳର ସାଧବମାନଙ୍କ ସଂପର୍କରେ କାବ୍ୟ ରଚନା କରିବାକୁ । ଏଇ କାବ୍ୟକୁ ମାନସିଂହ ଦୀର୍ଘ ବ୍ୟବଧାନ ମଧ୍ୟରେ ସମାପ୍ତ କରିଛନ୍ତି । କାବ୍ୟର ପ୍ରାରମ୍ଭ ଓ ପରିସମାପ୍ତିର ବିଳମ୍ବ ସଂପର୍କରେ ମାନସିଂହ କାବ୍ୟର ମୁଖବନ୍ଧରେ ସ୍ପଷ୍ଟକରି ଦେଇଛନ୍ତି । ସାଧବଝିଅ କାବ୍ୟ ଚଉଦଟି ପରିଚ୍ଛେଦରେ ସମାପ୍ତ ହୋଇଛି । ଏହା ମଧ୍ୟରୁ ଅନେକ ଗୋଟିଏ ଗୋଟିଏ ସ୍ୱୟଂସଂପୂର୍ଣ୍ଣ କବିତା । ସାଧବଝିଅ ଓ ସାଧବପୁଅର ପ୍ରଣୟ କାହାଣୀ ମଧ୍ୟରେ ମାନସିଂହ ବର୍ଣ୍ଣନା କରିଛନ୍ତି ଓଡ଼ିଆ ସାଧବପୁଅର ମନର କାହାଣୀ ।

ସୌଦାଗରର ସାତ ପୁଅରେ ଗୋଟିଏ ସୁନାନାକୀ ଝିଅ । ସେ ଝିଅ ପୁଣି ଶୟନକରେ ହଂସୁଲି ଶେଯରେ, ଆଉ ସ୍ନାନକରେ ସୁବାସ ଜଳରେ । କୌଣସି ସମୟରେ ବୋଇତ ବନ୍ଦାଣ ପାଇଁ ଭାଉଜମାନଙ୍କ ସାଥିରେ ଯାଇଛି ସାଧବଝିଅ । ସେଇଠି ଅନ୍ୟ ଏକ ବୋଇତରେ ସେ ଦେଖିଛି ସାଧବପୁଅକୁ । ଦୁଇଟି ଆଖିର ଘଟିଛି ମିଳନ । ତାପରେ ବଣିଜ କରି କରି ବୋଇତ ଭାସିଯାଇଛି କେତେ କେତେ ଦେଶକୁ । ମାତ୍ର ସେଇଦିନୁ ସାଧବଝିଅ ଅନାଇଁ

ରହିଛି ସାଧବପୁଅକୁ । ସାଧବଝିଅର କୌଣସି ଜିନିଷରେ ଅଭାବ ନାହିଁ, ମାତ୍ର- ମନର ମଣିଷ ନମିଳେ ଯଦି, ବୁକୁର ବେଦନା ରହେ ବୁକୁରେ ।

ସାଧବଝିଅ ନଦୀ ଘାଟର ବିଜନ ବେଳାରେ ଚାହିଁରହିଛି ମନର ମଣିଷକୁ, ସାଧବ ପୁଅକୁ । ସାଧବ ପୁଅ ବି ମନେ ମନେ ସେହିଦିନୁ ଖୋଜିବୁଲୁଛି ମାନସୀକୁ, ସାଧବଝିଅକୁ । ଦେଶ ଦେଶ ବୁଲିକରି ଚାଲିଛି ବ୍ୟବସାୟ–

''ସାଧବପୁଅ ମୁଁ ବୋଇତରେ ମୋ ଜୀବନ
ସାଗର ଲହରୀ ଗଣି ସରେ ଯଉବନ,
ଧ୍ରୁବତାରା ଚାହିଁ ଶୁଖଇ ଆଖିର ପାଣି
କାନେ ଚିରକଟୁ ସୁନା ରୁପା ଝଣଝଣ ।''

ସାଧବପୁଅ ଏତେ ଘାଟ ବୁଲିଛି, ଏତେ ଦେଶ ବୁଲିଛି, ମାତ୍ର ସେ ମାଦକଭରା ଆଖି ଯୋଡ଼ିକ ସେ କେଉଁଠି ହେଲେ ପାଇନାହିଁ । ଯାଁହା ପାଖରେ ସେଦିନ ତାର ଆତ୍ମା ଓ ମନ ସମର୍ପିତ ହୋଇଥିଲା ସେ ତାକୁଇ ଖୋଜୁଛି । ଚତୁର୍ଥ ଅଂଶରେ କବି ମାନସିଂହ ପ୍ରେମିକ-ପ୍ରେମିକା ହୃଦୟର ସଂଯୋଗକାରୀ ମାଲୁଣୀର ପ୍ରସଙ୍ଗ ଅବତାରଣା କରିଛନ୍ତି । ଏ କାବ୍ୟରେ ପ୍ରତିନାୟକ ଭାବରେ ଦେଖାଦେଇଛି ଏକ ଅତ୍ୟାଚାରୀ ରାଜପୁତ୍ର । ସେ ବି ସାଧବଝିଅର ରୂପ ଦର୍ଶନରେ ପାଗଳ । ରାଜ୍ୟର ରାଜା ସାଧବକୁ ଏ ପ୍ରସଙ୍ଗ ଜଣାଇବା ସମୟରେ ସାଧବ ନିଜର ପୂର୍ବ ପ୍ରତିଶ୍ରୁତି ସଂପର୍କରେ ଜଣାଇ କହିଛି ଯେ– ନୀଳାଚଳ ଧାମରେ ସେ ସତ୍ୟ କରିଛି ଯେ ଚେଲିତୋଳାର ସାଧବ ପୁଅକୁ କନ୍ୟା ଦାନ କରିବ । ଏ କଥାରେ ରାଜା ନୀରବ ହୋଇଗଲେ ମଧ ରାଜପୁତ୍ର ହୋଇଛି ଆହୁରି ହିଂସ୍ର ।

ଏଣେ ଏଇ ମାଲୁଣୀ ମାଧମରେ ପୂର୍ବୋକ୍ତ ସାଧବପୁଅର ସାଧବଝିଅ ସହିତ ହୋଇଛି ଯୋଗସୂତ୍ର । କ୍ରମଶଃ ଗୋପନରେ ସେମାନଙ୍କର ହୋଇଛି ମିଳନ । ରଜାପୁଅର ଚାରମାନେ ଏଥିରେ ଦେଇଛନ୍ତି ବାଧା । ପ୍ରଣୟୀ ଯୁଗଳ ପଳାୟନ ସମୟରେ ରାଜାନୁଚରଙ୍କ ହାତରେ ହୋଇଛନ୍ତି ବଂଦୀ । ରଜାପୁଅ ବନ୍ଦିନୀ ସାଧବଝିଅ ପାଖରୁ ବିବାହ ପାଇଁ ବାରମ୍ବାର ଚାହିଁଛି ସମ୍ମତି, ମାତ୍ର ସାଧବଝିଅ ସେ ପ୍ରସ୍ତାବକୁ କରିଛି ପ୍ରତ୍ୟାଖ୍ୟାନ । ସାଧବପୁଅ କୌଣସି ପ୍ରକାରେ ମୁକ୍ତି ପାଇ ବୈରାଗୀ ବେଶରେ ଗୀତ ଗାଇ ଗାଇ ସାଧବଝିଅକୁ ଖୋଜି ଖୋଜି ଆସି ପହଁଚିଛି ବନ୍ଦିନୀ ସାଧବଝିଅ ପାଖରେ । ସେ ଗୀତ ଶୁଣି ଉପରେ ମହଲାରେ ନଜରବନ୍ଦୀ ଥିବା ସାଧବଝିଅ ଡେଇଁପଡ଼ିଛି ଓ ତାହାର ସଦ୍ୟମୃତ ଶରୀର ଉପରେ ଲୋଟିପଡ଼ି ଆତ୍ମହତ୍ୟା କରିଛି ସାଧବପୁଅ । ଯେଉଁ ମିଳନ ଜୀବନରେ ସମ୍ଭବ ହୋଇପାରିଲାନାହିଁ ତାହା ମରଣରେ ହିଁ ସମ୍ଭବ ହୋଇଛି ।

**କମଳାୟନ**–ଯେଉଁ ସମୟରେ ମହାକାବ୍ୟର ସ୍ଥାନ ଉପନ୍ୟାସ ଗ୍ରହଣକରିନେଇଥିଲା, ସେହି ସମୟରେ ମାନସିଂହଙ୍କ କମଳାୟନ ମହାକାବ୍ୟର ସୃଷ୍ଟି । ମାୟାଧର ମାନସିଂହ ଗୋଟାପଣେ କବି । ସେ ସାହିତ୍ୟର ବିବିଧ ଧାରାରେ ଲେଖନୀ ଚାଳନା କରିଥିଲେ ହେଁ

ସର୍ବତ୍ର ତାଙ୍କର କବିସତ୍ତା ହିଁ ବିଦ୍ୟମାନ । ତାଙ୍କ ମନରେ ଉଙ୍କିମାରିଥିବା ଏକ ବୃହତ୍ତର ଭାବନାକୁ ପରିବେଷଣ ପାଇଁ ବାଛିନେଲେ ସେ ମହାକାବ୍ୟ ରଚନାର ମାଧ୍ୟମ । କମଳାୟନ ତାଙ୍କର ପରିଣତ ବୟସର ରଚନା । ଏହି କାବ୍ୟକୁ କବି ଦୁଇଟି ପର୍ଯ୍ୟାୟରେ ରଚନା କରିଛନ୍ତି । କାବ୍ୟର ଉତ୍ତରାର୍ଦ୍ଧ ରଚନାହୋଇଛି ପ୍ରଥମାର୍ଦ୍ଧର ଦୁଇଟି ସଂସ୍କରଣ ପ୍ରକାଶନ ପରେ । ଏହି କାବ୍ୟରେ ତାଙ୍କ ଜୀବନାନୁଭୂତିର ନିର୍ଯାସ ବର୍ଣ୍ଣିତ । ଅନ୍ୟ ଭାବରେ କହିଲେ— ସନାତନୀ ମାନସିଂହ, ବୌଦ୍ଧ ମାନସିଂହଙ୍କ ଆତ୍ମାନୁଚିନ୍ତନ ହିଁ କମଳାୟନ କାବ୍ୟ । ଏହି କାବ୍ୟ-କଥାବସ୍ତୁର ସମୟସୀବା ୧୯୧୯ ମସିହାରୁ ୧୯୫୬ ପର୍ଯ୍ୟନ୍ତ । କାବ୍ୟର ଆରମ୍ଭ ଡଭାର ଦୁର୍ଭିକ୍ଷର ସାହାଯ୍ୟ ବଣ୍ଟନ କେନ୍ଦ୍ରରୁ । ସେବାର ଅବତାର ଗୋପବନ୍ଧୁଙ୍କ ନେତୃତ୍ୱରେ ଆରମ୍ଭ ହୋଇଥାଏ ସାହାଯ୍ୟ ବଣ୍ଟନ ଓ ଜନସେବା କାର୍ଯ୍ୟକ୍ରମ । କାବ୍ୟର ପରିସମାପ୍ତି ଘଟିଛି ହଂଗେରୀ ବିପ୍ଳବ ସମୟରେ । ଏହି କାବ୍ୟର ଗଠନଶୈଳୀ, ଉପସ୍ଥାପନା ଓ ପରିକଳ୍ପନା ମାନସିଂହଙ୍କ ଅନ୍ୟାନ୍ୟ କାବ୍ୟଠାରୁ ଭିନ୍ନ । ଓଡ଼ିଶାର ପଲ୍ଲୀରୁ ଆରମ୍ଭହୋଇ କାବ୍ୟରେ ବିଶ୍ୱ ପରିକ୍ରମା କରାଯାଇଛି ।

କମଳଲୋଚନ ମହାପାତ୍ର କାବ୍ୟର ନାୟକ । କମଳଲୋଚନର ଜୀବନାୟନ ହିଁ କମଳାୟନ କାବ୍ୟ । ଦୀନ ଦରିଦ୍ରର ସଖା ଗୋପବନ୍ଧୁ ଥିଲେ ମାନସିଂହଙ୍କର ଅନ୍ୟତର ଆଦର୍ଶ-ପୁରୁଷ । କବି ମାନସିଂହ ସତ୍ୟବାଦୀ ବନବିଦ୍ୟାଳୟରେ ପାଠ ପଢ଼ିବାର ସୁଯୋଗ ପାଇପାରିନାହାନ୍ତି; ମାତ୍ର ସତ୍ୟବାଦୀର ଆଦର୍ଶ, ବିଶେଷତଃ ଗୋପବନ୍ଧୁଙ୍କ ଭାବଧାରାହିଁ, ମାନସିଂହଙ୍କୁ ବହୁଭାବରେ ଅନୁପ୍ରାଣିତ କରିଛି । ଗୋପବନ୍ଧୁଙ୍କ ମହାପ୍ରୟାଣରେ ମାନସିଂହ ଯେଉଁ ପ୍ରାଣସ୍ପର୍ଶୀ କବିତା ରଚନା କରିଥିଲେ ତାହା ତାଙ୍କ ଜୀନବ ପଥରେ ବାଧା ହୋଇ ଠିଆହୋଇଥିଲା । ଇଂରେଜ ସରକାରଙ୍କ ଆଖିରେ ସେ ଜାତୀୟବାଦୀ ବୋଲି ଗଣାହେଲେ ! ତାଙ୍କପାଇଁ ସରକାରୀ ଚାକିରୀ ପାଇବାରେ ବାଧକ ହୋଇ ତାହା ଠିଆହେଲା । ମାତ୍ର ମାତ୍ରାରେ ଆକୃଷ୍ଟ କରିଥିଲେ ଯେ ଜୀବନର ପରିଣତ ବୟସର ଲେଖାରେ ବି ଗୋପବନ୍ଧୁ ପ୍ରମୁଖ ଭୂମିକା ଗ୍ରହଣକରିନେଲେ । କମଳାୟନ କାବ୍ୟକୁ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କଲେ ଜଣାଯାଏ କମଳ ଚରିତ୍ର ହିଁ ସ୍ୱୟଂ ଲେଖକ ଓ ଏ କାବ୍ର ତାଙ୍କର ଆତ୍ମଲିପି । ମାନସିଂହ ଯାହା ହେବାପାଇଁ ଚାହିଁଥିଲେ, ମାତ୍ର କେତେକ କାରଣରୁ ହୋଇପାରି ନ ଥିଲେ, ତାକୁ ସେ କମଳାୟନ କାବ୍ୟରେ ରୂପାୟିତ କରିଯାଇଛନ୍ତି ।

କମଳାୟନ କାବ୍ୟଟି ଦୁଇଟି ଭାଗରେ ବିଭକ୍ତ— ପୂର୍ବ ଖଣ୍ଡ ଓ ଉତ୍ତର ଖଣ୍ଡ । ପୂର୍ବ ଖଣ୍ଡ ଏଗାରଟି ସର୍ଗରେ ଓ ଉତ୍ତର ଖଣ୍ଡ ଦଶଟି ସର୍ଗରେ ବିଭକ୍ତ । କମଳାୟନ କାବ୍ୟର କଥାବସ୍ତୁ ଏହିପରି—୧୯୧୯ ମସିହାରେ ପୁରୀ ଜିଲ୍ଲାର ଡଭାର ଅଂଚଳରେ ଏକ ଭୟାବହ ଦୁର୍ଭିକ୍ଷ ଦେଖାଦେଇଥିଲା । ଡଭାରର ଏକ ଦୁର୍ଭିକ୍ଷ ସହାୟକ କେନ୍ଦ୍ରରେ ସ୍ୱେଚ୍ଛାସେବକ ଭାବରେ କର୍ମରତ ଥିଲା ଛାତ୍ର କମଳଲୋଚନ ମହାପାତ୍ର । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ତତ୍ତ୍ୱାବଧାନରେ ଚାଉଳ ବଣ୍ଟନ ସମୟରେ କମଳଲୋଚନ କରିଥିଲା ଗ୍ରାମ୍ୟ ମଲ୍ଲଙ୍କୁ ତିରସ୍କାର । ଶାଳପ୍ରାଂଶୁ ବଳିଷ୍ଠ ଚେହେରାର ଗ୍ରାମ୍ୟ ମଲ୍ଲ ଏଇ ବୁଭୁକ୍ଷୁ-ସହାୟକ-ତଣ୍ଡୁଳ

ନିମନ୍ତେ ହକ୍‌ଦାର ନୁହନ୍ତି ବୋଲି ମକଳଲୋଚନ ତିରସ୍କାର କରିବାରୁ ଗ୍ରାମ୍ୟ ଜନତା ମିଳିତ ଭାବରେ ପ୍ରତିବାଦ ଜଣାଇଛି । ଭୋକିଲା ଜନତାର ସାଥୀ ଦରଦୀ ଗୋପବନ୍ଧୁ ସେ ଦିନର ବିତରଣ କର୍ମ ପରେ ସ୍ୱେଚ୍ଛାସେବୀମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ– ''କମଳ, କରିଲ ଯା'କୁ ତୁମେ ଭ୍ରମେ ତିରସ୍କାର । ଓଡ଼ିଆ ଜାତିର ତାକୁ ପ୍ରତୀକ ବିଚାର ।''

ଏହିପରି ଭାବରେ ଉତ୍କଳର ଅତୀତ ଗରିମା, ଜାତିର ପତନ, ଦୁର୍ଦ୍ଦଶା ବିଷୟରେ କହିଲା ପରେ ଉତ୍କଳମଣି ଦୁଃଖ କରିଛନ୍ତି ଯେ ଜାତିର ମର୍ମ-ବ୍ୟଥା ବୁଝିବା ଅପେକ୍ଷା ଅନେକ ଲୋକ ଆତ୍ମ-ସୁଖ ପାଇଁ ତତ୍ପର । ସେ ଆଶା ପ୍ରକାଶ କରି କହିଛନ୍ତି–

''ଆଶା ଖାଲି ତୁମପରି ତରୁଣ କୂଳରୁ<br>
କିଏ ଯଦି ହୋଇପାରେ ଜାତି କଳ୍ପତରୁ,<br>
ନିଜର ସମସ୍ତ ଦେଇ ମାନବ ସେବାରେ<br>
ଇଚ୍ଛା ଥିଲେ ନରପୁତ୍ର ସବୁକରିପାରେ ।''

ଗୋପବନ୍ଧୁଙ୍କର ଏଇ ଉପଦେଶ କମଳଲୋଚନର ସମଗ୍ର ଜୀବନକୁ ପରିବର୍ତ୍ତନ କରିଦେଇଛି । ସେ ବାଛିନେଇଛି ଜୀବନରେ ଦେଶସେବା ବ୍ରତ । ଏଣେ ପାରିବାରିକ ଅର୍ଥାଭାବଯୋଗୁ ସେ ମେସ୍‌ରେ ବି ଭଲଭାବରେ ଚଳିପାରିନି । କଲେଜର ଏକ ବକ୍ତୃତା ପ୍ରତିଯୋଗିତାରେ ପୁରସ୍କୃତ ହେବା ଯୋଗୁ ଅଧ୍ୟାପକ ଅବିନାଶଚନ୍ଦ୍ରଙ୍କର ସେ କରିଛି ଦୃଷ୍ଟି ଆକର୍ଷଣ । ପୁତ୍ରର ଗୃହଶିକ୍ଷକ ଭାବରେ କମଳ ତାଙ୍କ ଘରେ କରିଛି ଅବସ୍ଥାନ ତଥା ତାଙ୍କ ବିପ୍ଳବିଣୀ କନ୍ୟା କରୁଣା ସହିତ ହୋଇଛି ତାର ପରିଚୟ ଓ ଅନ୍ତରଙ୍ଗତା । ପରେ କରୁଣା ସନ୍ତ୍ରାସବାଦୀ କାର୍ଯ୍ୟକ୍ରମରେ ଯୋଗଦାନ କରିଛି । କରୁଣା କମଳର ସଖ୍ୟ ପ୍ରତି ପ୍ରଫେସର୍ ଅବିନାଶ ଚନ୍ଦ୍ରଙ୍କର ଥିଲା ଆର୍ଶୀବାଦ । କରୁଣା ବିବାହ ପୂର୍ବରୁ ରାଜନୈତିକ ହତ୍ୟାକାଣ୍ଡରେ ହୁଏ ଗିରଫ । ଦର୍ଶ ବର୍ଷ ପରେ କମଳର ପିତାଙ୍କର ହୁଏ ପରଲୋକ । ଭାରତବର୍ଷରେ ଆରମ୍ଭ ହୋଇଯାଇଥାଏ ଅସହଯୋଗ ଆନ୍ଦୋଳନ । ଜୀବିକା ଅନ୍ୱେଷଣରେ ବାହାରି କମଳ କରେ ଶିକ୍ଷକତା ଗ୍ରହଣ । କମଳର ବାଲ୍ୟବିଧବା ଭଉଣୀ ରମା ସହିତ ଖ୍ରୀଷ୍ଟିଆନ୍ ଯୁବକ ଅରବିନ୍ଦର ହୁଏ ବିବାହ । ଗ୍ରାମବାସୀଙ୍କ ବିରୋଧ ଓ କମଳର ଗୃହଦାହ ପରେ ସେମାନେ କରନ୍ତି ଗ୍ରାମତ୍ୟାଗ । ଲବଣ ସତ୍ୟାଗ୍ରହରେ କମଳ କରେ ଯୋଗଦାନ । ପୋଲିସ୍ ମାଡ଼ରେ ଜଖମୀ କମଳର ସେବାପାଇଁ ଛଦ୍ମବେଶରେ କରୁଣାର ହୁଏ ଆବିର୍ଭାବ । ସେଇ ଶିବିରରେ କମଳ ଓ କରୁଣାର ହୁଏ ବିବାହ । କଂଗ୍ରେସର ଛଦ୍ମତା ଯୋଗୁ କମଳ ଦଳତ୍ୟାଗକରି ଖବରକାଗଜ ସଂସ୍ଥାରେ ଯୋଗଦାନକରେ । ତାପରେ କମଳ ଓ କରୁଣା ଆମେରିକା ଯାତ୍ରା କରନ୍ତି । ନିୟୁଅର୍କରେ ନିବାସ କାଳରେ କରୁଣାର ମାତୃତ୍ୱଲାଭ– ସିସ୍ ୱାଟସନ୍ ନାମରେ ଜଣେ ନର୍ସଙ୍କର ସାହାର୍ଯ୍ୟ– ବିଶ୍ୱକୁ ଏକତ୍ର କରିବାର ମସୁଧା– ବିଶ୍ୱଯୁଦ୍ଧ ଆରମ୍ଭ– ମାନବସେବା ପାଇଁ କମଳ ଓ କରୁଣାର ଯୁଦ୍ଧରେ ଯୋଗଦାନ । ଯୁଦ୍ଧ ପରେ ଗାଆଁରୁ ମାଳତୀନାନୀର ପତ୍ର ପାଇ ଜନ୍ମମାଟିକୁ ଫେରିଆସେ କମଳ । କରୁଣାର ପିତାଙ୍କ ପ୍ରଦତ୍ତ ସଂପତ୍ତିରୁ ସେମାନେ ରେଡ଼କ୍ରସକୁ କରନ୍ତି ବିରାଟ ସଂପତ୍ତି ଦାନ– ନିଜ ଗ୍ରାମରେ କରୁଣା କଲୋନୀ ସ୍ଥାପନକରି

'ସେବା କାର୍ଯ୍ୟ— ସର୍ବଧର୍ମ ସମନ୍ୱୟର ଚିନ୍ତା— କମଳ ଓ କରୁଣାର କନ୍ୟା ବିଶ୍ୱମିତ୍ରାର ଭାରତ ପ୍ରତ୍ୟାଗମନ— କମଳର ସାନଭାଇ ସ୍ୱାମୀ ମହାନନ୍ଦଙ୍କର ଗ୍ରାମକୁ ପ୍ରତ୍ୟାଗମନ—କରୁଣାର ମୃତ୍ୟୁ । ଏଇଠି ମୂଳ କାବ୍ୟ ବା ପୂର୍ବଖଣ୍ଡର କଥାବସ୍ତୁର ପରିସମାପ୍ତି ।

ପରେ ରଚନା କରାଯାଇଛି କମଳାୟନ ଉତ୍ତରଖଣ୍ଡ । ଏହାର କଳେବର ପୂର୍ବଖଣ୍ଡର ସମାନ ଥିଲେ ମଧ ଏହାର ଘଟଣାବଳୀ ବିଶେଷ ପରିବ୍ୟାପ୍ତ ନୁହେଁ । ଏଥିରେ ରହିଛି ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ଚିତ୍ର— ଚିଲିକା କୂଳର ଗୋଟିଏ ଆଶ୍ରମ— ଏଠାରେ ସାରା ବସୁଧାକୁ ଗୋଟିଏ ପରିବାର କରିବାର ଭାବନା— ବିଶ୍ୱମିତ୍ରାର ଦୁଇବନ୍ଧୁ ସେପିଲେକ ଓ ମାଲିକମ୍‌ଙ୍କ ଆଗମନ । ସେମାନଙ୍କ ମଧ୍ୟରୁ ଜଣେ ରୁଷର ଅଧିବାସୀ, ଆଉ ଜଣେ ଇଂଲାଣ୍ଡର ।

ଜାତୀୟତା-ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ମଧ ମାନସିଂହଲେଖନୀ ଅନ୍ଧ ସ୍ତାବକତା ଦୋଷରେ ଦୋଷଦୃଷ୍ଟ ନୁହେଁ । ସେ ଦେଶ ମଧରେ ଥିବା କୁସଂସ୍କାର, ପୁରୋହିତ-ତନ୍ତ୍ର, ଧର୍ମୀୟ ବିଭେଦ, ଜ ିପ୍ରଥା ସମେତ ନାନା କୁସଂସ୍କାର ବିରୋଧରେ କମଳାୟନ କାବ୍ୟରେ ସ୍ୱରଉଠାଇଛନ୍ତି । ନିଜ ସଂସ୍କୃତିପ୍ରତି ଉଦାସୀନ ପଥଭୁଲା ଭାରତୀୟ ଯୁବ-ସମାଜକୁ ନାନା ସ୍ଥାନରେ ବାଟଦେଖାଇବାର ପ୍ରୟାସ କରିଛନ୍ତି । ଚିଲିକାର କୋଳରେ ବଢ଼ିଆସିଥିବା କବି ମାନସିଂହ ଉତ୍କଳୀୟ ପ୍ରକୃତିକୁ ପ୍ରାଣଭରି ଭଲପାଇଛନ୍ତି । ରାଧାନାଥଙ୍କ ପରେ ଚିଲିକାକୁ ପ୍ରାଣଭରି ଭଲପାଇଥିବା କବି ହେଉଛନ୍ତି ମାନସିଂହ । କମଳାୟନ କାବ୍ୟ କବିଙ୍କର ସମସାମୟିକ ଘଟଣା ଉପରେ ଆଧାରିତ । କାବ୍ୟ-ସଂପର୍କୀୟ କେତେକ ତ୍ରୁଟିକୁ ଛାଡିଦେଲେ କମଳାୟନ ସମସାମୟିକ ଓଡ଼ିଶାର ଏକ ଉଲ୍ଲେଖନୀୟ ସୃଷ୍ଟି ।

ମାନସିଂହଙ୍କର କାବ୍ୟ-କବିତାରେ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ଛନ୍ଦର ପ୍ରୟୋଗ କରାଯାଇଛି । କେତେକ ସ୍ଥାନରେ ପାରଂପରିକ ରାଗରେ ରଚନା କରାଯାଇ ରାଗର ନାମୋଲ୍ଲେଖ କରାଯାଇଛି । ଆଉ କେତେକ ସ୍ଥାନରେ ପ୍ରାଚୀନ ରାଗକୁ ଅନୁସରଣ କରିଥିଲେ ମଧ ରାଗର ନାମ ପ୍ରଦାନ କରାଯାଇନାହିଁ । ମାନସିଂହଙ୍କ କାବ୍ୟାବଳୀରେ ସ୍ପଷ୍ଟ ଭାବରେ ରାଗ-ନାମ ନିର୍ଦ୍ଦେଶ କରାନଯାଇଥିଲେ ମଧ ନିକ୍ୱଣ କାବ୍ୟର ଚତୁର୍ଥ, ପଞ୍ଚମ, ଷଷ୍ଠ ଭାଗ ରାଗ ରାମକେରୀରେ ଓ ଜେମା କାବ୍ୟ ପ୍ରଥମ ପର୍ବର ପୂର୍ବଭାଗ ତଥା ଉତ୍ତର ଭାଗ ମୋଟ ୧୨୩ ପଦ ଓଡ଼ିଶାର ବହୁ ପ୍ରଚଳିତ ରାଗ 'ଚୋଖୀ'ରେ ଲିଖିତ । ଜେମା କାବ୍ୟ ମଧପର୍ବର ପୂର୍ବଭାଗ ଓ ଉତ୍ତରଭାଗର ମୋଟ ୧୩୪ ପଦ ରାଗ ଶଙ୍କରାଭରଣରେ ଲିଖିତ । ଶେଷ ପର୍ବର ୪୪ଟି ପଦ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟର 'ଚେତି ଚତୁରୀ ଚାହିଁଲା ନିଶି ନାଶେ ପାଶେ ନାହିଁ ଦିବ୍ୟ ତରୁଣ' ବାଣୀରେ ଲେଖିବାକୁ ପ୍ରୟାସ କରିଛନ୍ତି; ମାତ୍ର ଶେଷପାଦକୁ ଉପେକ୍ଷା କରିଛନ୍ତି । ଆବୃତି ପାଇଁ ଏହା ସହଜ ହୋଇଥିବାରୁ ଏପରି କରାଯାଇଥାଇପାରେ । 'ସାଧବଝିଅ' କାବ୍ୟର ତୃତୀୟ ଭାଗ, ରାଗ ବଙ୍ଗଳାଶ୍ରୀ, ପଞ୍ଚମ ଭାଗ ରାଗ ରାମକେରୀରେ ଲିଖିତ ହୋଇଥିଲେ ମଧ ରାଗର ନାମ ଉଲ୍ଲେଖ କରାଯାଇ ନାହିଁ; କେବଳ ଅଷ୍ଟମ ଭାଗକୁ ରାଗ-କାଳୀ ବୋଲି ମାନସିଂହ ଉଲ୍ଲେଖ କରିଛନ୍ତି । ତ୍ରୟୋଦଶ

ଭାଗ ମଧ୍ୟ ଚଉଦଅକ୍ଷରୀ ଛନ୍ଦରେ ଲେଖାଯାଇଛି । ମାନସିଂହ କବିତାକୁ ଆବୃତ୍ତିଧର୍ମୀ କରିବାପାଇଁ ଅନେକ ପ୍ରାଚୀନ ଛନ୍ଦକୁ ନିଜସ୍ୱ ଭାବରେ ସଜ୍ଜିତ କରିଛନ୍ତି ।

ମାନସିଂହ ଗ୍ରନ୍ଥାବଳୀର ପଞ୍ଚମ ଖଣ୍ଡ ପ୍ରକାଶିତ ହେବାକୁ ଯାଉଛି । ମାନସିଂହଙ୍କ ଜୀବଦ୍ଦଶାରେ ତାଙ୍କ ସୃଷ୍ଟିର କେତେକ ଅଂଶ ମାନସିଂହ ଗ୍ରନ୍ଥାବଳୀ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଖଣ୍ଡ ଭାବରେ 'ଗ୍ରନ୍ଥମନ୍ଦିର' ପ୍ରକାଶନ ସଂସ୍ଥାଦ୍ୱାରା ଯଥାକ୍ରମେ ୧୯୬୨, ୧୯୬୪ ଓ ୧୯୭୩ରେ ପ୍ରକାଶିତ ହୋଇଥିଲା । ଦୁର୍ଯୋଗକୁ ୧୯୭୩ ମସିହା କୁମାରପୂର୍ଣ୍ଣିମାରେ ଅକାଳରେ ଡ. ମାନସିଂହଙ୍କର ପରଲୋକ ହୋଇଗଲା । କବି ମାନସିଂହଙ୍କର ଅତି ଅନ୍ତରଙ୍ଗ ତଥା ଗ୍ରନ୍ଥମନ୍ଦିର ପ୍ରକାଶନ ସଂସ୍ଥାର ପ୍ରତିଷ୍ଠାତା ସ୍ୱର୍ଗତ ଶ୍ରୀଧର ମହାପାତ୍ର 'ମାନସିଂହ ଗ୍ରନ୍ଥାବଳୀ'ର ଆଦ୍ୟ ପ୍ରକାଶକ ଥିଲେ । ଶ୍ରୀଧର ମହାପାତ୍ରଙ୍କ ପରଲୋକ ଗମନ ପରେ ଅନେକ ଦିନ ପର୍ଯ୍ୟନ୍ତ ମାନସିଂହଙ୍କ ଚରିତ ଗ୍ରନ୍ଥ ଓ ଗ୍ରନ୍ଥାବଳୀ କିଣିବା ପାଇଁ ମିଳିଲା ନାହିଁ । ଦୀର୍ଘ ଦିନର ବ୍ୟବଧାନ ପରେ ସ୍ୱର୍ଗତ ଶ୍ରୀଧର ମହାପାତ୍ରଙ୍କ ପୁତ୍ର ଶ୍ରୀ ଅଭିରାମ ମହାପାତ୍ର ଓ ପୌତ୍ର ଶ୍ରୀ ମନୋଜ କୁମାର ମହାପାତ୍ର ମାନସିଂହଙ୍କ ସମଗ୍ର ରଚନାବଳୀର ପ୍ରାମାଣିକ ସଂସ୍କରଣ ପ୍ରକାଶନ ପାଇଁ ପ୍ରୟାସକଲେ । ଗତବର୍ଷ ଏଇ ସମୟରେ ଅଟକଳ କରାଯାଇଥିଲା ଯେ ବର୍ତ୍ତମାନ ଗ୍ରନ୍ଥାବଳୀର ଆକାରରେ ୧୮ ଖଣ୍ଡରେ ମାନସିଂହଙ୍କ ସମଗ୍ର ରଚନାବଳୀ ପ୍ରକାଶ କରାଯାଇପାରିବ । ଏଇ ସମୟ ମଧ୍ୟରେ ମାନସିଂହଙ୍କର ଆଉ କେତେକ ସୃଷ୍ଟି ଆମର ହସ୍ତଗତ ହେବାରୁ ସେ ଅଟକଳରେ ପରିବର୍ତ୍ତନ ହେବାକୁ ଯାଉଛି । ବର୍ତ୍ତମାନ ଦେଖାଯାଉଛି ଯେ ଏହା ପ୍ରାୟ ୨୫ ଖଣ୍ଡରେ ଶେଷହେବ । ଆସନ୍ତା ୨୦୦୫ ମସିହାରେ ମାନସିଂହଙ୍କ ଜନ୍ମ ଶତବାର୍ଷିକୀ ପାଳିତ ହେବ । ଏଇ ସମୟ ମଧ୍ୟରେ ସମଗ୍ର ରଚନାବଳୀକୁ ଓଡ଼ିଆ ପାଠକ ପାଠିକାଙ୍କ ହସ୍ତରେ ଅର୍ପଣ କରିପାରିଲେ ମାନସିଂହଙ୍କ ପ୍ରତି ଓଡ଼ିଆ ଜାତିର ଶ୍ରଦ୍ଧା ନିବେଦନ ହୋଇପାରନ୍ତା ।

ମାନସିଂହଙ୍କ ଅନେକ ରଚନା ବିଭିନ୍ନ ପୁସ୍ତକ ଓ ପତ୍ରପତ୍ରିକାରେ ବିକ୍ଷିପ୍ତ ଭାବରେ ରହିଛି । ତାଙ୍କ ରଚନାର ନାନାବିଧ ସଂସ୍କରଣ ସହଜ-ଲବ୍ଧ ହୋଇପାରୁନାହିଁ । ମାନସିଂହ ଗ୍ରନ୍ଥାବଳୀ ସଂପାଦନ ଏକ ଜାତୀୟ କାର୍ଯ୍ୟ । ମାନସିଂହ ସାହିତ୍ୟ-ପ୍ରେମୀ ଶ୍ରୀ ଅଭିରାମ ମହାପାତ୍ରଙ୍କ ସଶ୍ରଦ୍ଧ ତାଗିଦା ବିନା ଏ କାର୍ଯ୍ୟରେ ଆଗେଇବା ମୋ ପକ୍ଷରେ ସମ୍ଭବ ହୋଇପାରି ନଥାନ୍ତା । ଶ୍ରୀ ମନୋଜ କୁମାର ମହାପାତ୍ରଙ୍କ ସାହସିକ ପଦକ୍ଷେପ, ଅଭିରାମବାବୁଙ୍କ ଐକାନ୍ତିକ ଇଚ୍ଛା ଓ ମୋର ବନ୍ଧୁ ଶ୍ରୀ ଦେବେନ୍ଦ୍ର କୁମାର ଦାଶଙ୍କ ସମୟୋଚିତ ପରାମର୍ଶ ଯୋଗୁହିଁ ଏ କାର୍ଯ୍ୟ ସମ୍ଭବ ହୋଇପାରିଛି । ମୁଁ ସମସ୍ତଙ୍କୁ ଗଭୀର କୃତଜ୍ଞତା ଜଣାଉଛି । ଏ କାର୍ଯ୍ୟ ସଂପାଦନା ସମୟରେ ଅନେକ କିଛି ଭୁଲ ରହିଯାଇଥାଇପାରେ; ସହୃଦୟ ପାଠକ/ପାଠିକା ସେ ସଂପର୍କରେ ଅବଗତ କରାଇଲେ ପରବର୍ତ୍ତୀ ଖଣ୍ଡରେ ତଥା ପରବର୍ତ୍ତୀ ସଂସ୍କରଣରେ ସଂଶୋଧନ କରାଯାଇପାରିବ ।

୧.୧୧. ୧୯୯୯ ଡକ୍ଟର ଶ୍ରୀଚରଣ ମହାନ୍ତି

କାବ୍ୟ

# ସୂଚୀପତ୍ର



| | କାବ୍ୟ | ପୃଷ୍ଠା |
|---|---|---|


---

# ଉପେକ୍ଷିତା

[ଗୋଦାବରୀ କୂଳରେ ସୁରମ୍ୟ ଉପବନ । ତା'ମଧ୍ୟରେ ବିରାଟ ସୁଦୃଢ଼ ସୌଧ । ଗୋଟିଏ କକ୍ଷରେ ରାଜକୁମାରୀ ସୂର୍ପଣଖା ବ୍ୟାକୁଳଭାବରେ ପଲଙ୍କ ଉପରେ ଅର୍ଦ୍ଧଶାୟିତା ରହିଛି । ତା'ର ଅପୂର୍ବ ରୂପରାଶି ଆଲୁଳାୟିତ କୁନ୍ତଳ ଓ ଶ୍ଳଥ ବସନଭୂଷଣ ମଧ୍ୟରୁ ଉଛୁଳି ପଡୁଛି । ଗବାକ୍ଷପଥରେ ଅନାଇଲେ ଦୂର ବନକୋଳରେ ରାମ ଲକ୍ଷ୍ମଣଙ୍କର ପର୍ଣ୍ଣଶାଳା ଓ ତା'ର ଚାରିପାଖର ଜୀବଜନ୍ତୁ-ଗଛଲତାର ଅସ୍ପଷ୍ଟ ଛବି ଦେଖାଯାଉଛି । ସେ ସେହି ଆଡ଼କୁ ନିର୍ନିମେଷ ନୟନରେ ଅନାଇରହି ହୃଦୟର ଅବ୍ୟକ୍ତ ବେଦନାକୁ କବିତାପ୍ରସାରରେ ଭସାଇଦେଉଛି ।]

ଚୂର୍ଣ୍ଣକର, ଚୂର୍ଣ୍ଣକର, ଭାଙ୍ଗ ଲୋ ସଖିଏ
ଏ ବିରାଟ ସୌଧଗୃହ, ଗବାକ୍ଷରୁ ଯା'ର
ଦୃଷ୍ଟିପଥେ ପଡ଼େ ରାମ-କମନୀୟ-କାନ୍ତି,
ଅହରହ ଦୁର୍ବିସହ ବିରହେ ଜଳାଇ
ହିଆ ମୋର । ପୋଡ଼ିଯାଏ ମନ ଲୋ ସଜନି !
ଦେଖିଣ ଶ୍ରୀରାମ-ଅଙ୍ଗ-ଅନଙ୍ଗ-ସୌନ୍ଦର୍ଯ୍ୟ
ଲୋଟିବାର ଅଯତନେ କାନନେ କାନନେ
ଲୋକଚକ୍ଷୁ ଅନ୍ତରାଳେ, ଫିଙ୍ଗିଦେଇ ପୂଜା
କୋଟି କୋଟି ହୃଦୟର । ମାନେ କି ଲୋ ଆହା !
ଏ ରୂପେ, ଏ ରୁକ୍ଷ-ଧୂର ଜଟାର ବହନ ?
ଏ ମଳିନ ଅଚିକ୍‌କଣ ବୃକ୍ଷର ବଲ୍‌କଲ
ସାଜେ କି ଲୋ ଏଡ଼େ ସ୍ନିଗ୍‌ଧ-ମଧୁର ଅଙ୍ଗକୁ ?
କେଉଁ ନାରୀ ସହିବ ଲୋ ଦେଖି ବୁଲିବାର
ଏମନ୍ତ ଗନ୍ଧର୍ବ-ରୂପ ସୁନ୍ଦର ପୁରୁଷେ
କାନନ-ଶବର ପରି ବନ ପଥେ ପଥେ
ହୀନ ମୃଗୟାରେ ମାତି ପେଟପୂର୍ତ୍ତି ପାଇଁ ?
ସନ୍ଧ୍ୟାର କନକ-କାନ୍ତି ଲିଭିଯାଏ ଯେବେ
ଦୂର ବନମାଳ ଚୁମି ବାରୁଣୀ-ଗଗନେ,
ଭାସିଆସେ ଧୀରେ ଧୀରେ ନବବଧୂ ପରି

ରଜନୀ-ରମଣୀ, ତା'ର ବଦନ ଘୋଡ଼ାଇ
ଲଜ୍ଜାଭରେ କୃଷ୍ଣାଞ୍ଚଳେ, ତେବେ ଲୋ ସଙ୍ଗିନି,
ଉଚିତ ହୁଅନ୍ତା ସିନା ଏମନ୍ତ ପୁରୁଷେ
ଭେଟିବାର, ପାରିଜାତ ପୁଷ୍ପହାରରାଶି
ଲମ୍ବାଇ ବିଶାଳ ଗଳେ, ବସାଇ ଆଦରେ
କୋମଳ ହଂସୂଳି ଶେଯେ, କର୍ପୂର-ଚ୍ଛୁରିତ,
ଚୁମ୍ବିବା ଚରଣ ତା'ର ରାତିସାରା ବସି,
ଶୁଣିବା ନୀରବେ, ତା'ର ହୃଦୟର ଗାଥା !
କି ମହାଜୀବନ ବହେ କି ଅମୃତ ଧରି
ସେ ସୁନ୍ଦର-ସ୍ନିଗ୍ଧ ଶ୍ୟାମ ଆବରଣ ତଳେ,
ଯାହାର ପରଶ ଲଭି ରୁକ୍ଷ ବନ-ଗିରି
ଉଲ୍ଲସି ଉଠନ୍ତି ସଖି, ହୁଏ ପୁଲକିତ
ମେଦୁର-ମୁଦିର ଦେଖି ନୀପ-ପୁଷ୍ପ ଯଥା ।
କିନ୍ତୁ ଆହା, ଦେଖୁଛ ତ ଶ୍ରୀରାମର ଦଶା
ଏ କାନନେ ? ଦିନ ଶେଷେ ଫେରି ମୃଗୟାରୁ
ବନ୍ଧୁର-କଠିନ-ଧରା ଆଶ୍ରୟ ତାଙ୍କର;
ଶୁଷ୍କ-ଶାଖା ଉପାଧାନ, ପଲ୍ଲବ ବ୍ୟଜନ,
ଦଗ୍ଧ ମାଂସ, ରୁକ୍ଷମୂଳ ହୁଅଇ ଆହାର !
କେତେ କଷ୍ଟ ସତେ ସଖି ! ଏଡ଼େ ଦେବତାରେ
ଏପରି ପୂଜା କି କେହି ଦେଇପାରେ ଭବେ ?

ଉନ୍ନତ ସୁସଭ୍ୟ ବୋଲି ବୋଲନ୍ତି ଜଗତେ
ଏ ଆର୍ଯ୍ୟସନ୍ତତି ସବୁ, ଘୃଣା କରି ଚିର
ରକ୍ଷକୁଳେ ନରଦ୍ୱେଷୀ ବର୍ବର କୁହାଇ,
କାହିଁ ଲୋ ସେ ସୁସଭ୍ୟତା, ଉଦାର ହୃଦୟ ?
ପଠାଇ ଶ୍ରୀରାମ ପରି ସୁକାନ୍ତି ପୁରୁଷେ
ଭୀମ ଅରଣ୍ୟାନୀ କୋଳେ, ବ୍ୟାଘ୍ର ସିଂହ ସାଥେ
ଚିର କଷ୍ଟ ଲଭି ଦିନ ଯାପିବାର ପାଇଁ;
ସୁଖେ ଶୋଇ ଅଯୋଧାରେ ବିଳାସର କୋଳେ
ଯାପଇ ଜୀବନ ଯେହୁ, ସେ କି କେବେ ସଖି
ହୋଇପାରେ ସଭ୍ୟ, ଭଦ୍ର ? କେଉଁ ଗୁଣେ ସେ ଗୋ
ନିଜେ ନିଜେ ରକ୍ଷକୁଳୁ ମହତ୍ତର ବୋଲି
ମଣନ୍ତି, ଜାଣେନା ମୁହିଁ । ଧିକ୍ ସେ କୈକେୟୀ !

କି ହୃଦୟେ ସେ ନିଷ୍ଠୁରା ମନ୍ତ୍ରିଲା ଗୁପତେ
ସ୍ତ୍ରୈଣ ବୃଦ୍ଧ ରାଜାକାନେ ପେଷିବାକୁ ବନେ
ରାମ ପରି ସୁପୁତ୍ରରେ । ଧିକ୍ ସେ କୌଶଲ୍ୟା !
କେଉଁ ଗୁଣେ ପାଟରାଣୀ ବୋଲାଉଛି ସେ ଲୋ
ପଠାଇ ଅବାଧେ ପୁତ୍ର, ପୁତ୍ରବଧୂ ବନେ
—ବାର୍ଦ୍ଧକ୍ୟର ଏକମାତ୍ର ଆନନ୍ଦ ସମ୍ବଳ,
ଜୀବନ ଧରି ଯା' ଅଛି ଅଯୋଧ୍ୟା ନଗରେ !
ମୁଁ କିନ୍ତୁ ସଜନି ! ଆଉ ନ ପାରିବି ସହି,
ନାରୀର ହୃଦୟ ମୋର କୋମଳ କରୁଣ
ଏମନ୍ତ ଦାରୁଣ-ଦୃଶ୍ୟେ ଫାଟିଯାଏ ସତେ !
ଶ୍ରୀରାମେ ପ୍ରତ୍ୟକ୍ଷେ ଦେଖି କୁଟୀର-ନିବାସୀ
ଏସନ ପ୍ରାସାଦ-କକ୍ଷେ କରିବାକୁ ବାସ
ବାସନା ମୋ ନାହିଁ ତିଳେ, ଭାଙ୍ଗିଦିଅ ସଖି
ଏ ବିରାଟ ସୌଧଗୃହ, କର ଧୂଳିସାତ୍
ଚୈତ୍ରରଥୋପମ ମମ ଏହି ଉପବନ ।

କହ ବସନ୍ତରେ ଫେରିଯାଉ ସ୍ୱର୍ଗପୂରେ,
କି ଲାଭ ତହିଁରେ ଆଉ, ମାଧବ-ନିଶୀଥେ
ନିଶାକାନ୍ତ କାନ୍ତ-କରେ ଶାନ୍ତ ବନାନ୍ତରୁ
ଥରି ଥରି ଭାସି ଯେବେ ଆସିବ କରୁଣେ
ଚକ୍ରବାକୀ ଆର୍ତ୍ତନାଦ, କୁଞ୍ଜେ କୁଞ୍ଜେ ରହି
ସୁକେଳି-ଉନ୍ନିଦ୍ର ଯେବେ ଛାଡ଼ିବ କୋକିଳ
ପ୍ରମୋଦ-ଗଦ୍‌ଗଦ ଗୀତି, ବୃନ୍ତେ ବୃନ୍ତେ ଯେବେ
ହସିବେ ମଧୁର ହାସ୍ୟ କୌମୁଦୀ ଚୁମ୍ବନେ
ପୁଷ୍ପାଙ୍ଗନା ସୁଯୌବନା, ପ୍ରାସାଦ-ବରହୀ
ବ୍ୟାକୁଳେ ଡାକିବ ଯେବେ ବନପାରେ ଚାହିଁ
ସ୍ୱପ୍ନ-ଜଡ଼ ନେତ୍ରଯୁଗେ ନିଜ ପ୍ରେୟସୀରେ,
କେମନ୍ତେ ବଞ୍ଚିବି କହ ସେକାଳେ ସଜନି !
ଏ ବିରହ ହୃଦେ ଧରି, ଆଣି ସ୍ମୃତି-ପଥେ
ଶ୍ରୀରାମର ରୂପରାଶି ଭୁବନ-ମୋହନ !
ଛାଡ଼ିଲି ସେ ଆଶା ସଖି, ନାହିଁ ଆଉ ବାଞ୍ଛା
ଶ୍ରୀରାମ ସଙ୍ଗତେ ସୁଖେ ବୁଲି କୁଞ୍ଜେ କୁଞ୍ଜେ

ଯାପିବାର ଶରତ୍‌ର ମଧୁର ମଧ୍ୟାହ୍ନ ।
ଭାବିଥିଲି, ଗୋଦାବରୀ-ବେତସ ନିକୁଞ୍ଜେ
ନିରଦିନ ପାରି ଦେଇ ଅଂଶୁକ ଅଞ୍ଚଳ
ଦିବସ-ଯୌବନେ ସଖି, ମୃଗୟା-ନିବୃତ୍ତ
ରାମରେ ଶୁଆଇ ତହିଁ ସେବୁଥାନ୍ତି ପଦ;
ତଟିନୀ-ତରଙ୍ଗ-ବାତେ ବୀରମଣି ଖେଦ
ହେଉଥାନ୍ତା ଅପନୀତ; ସେ ପାରିର ବନୁ
ଆସୁଥାନ୍ତା ଭାସି ସ୍ୱପ୍ନ-ମଦିରା ବୁହାଇ
ଅଶୋକ-କେତକ ଗନ୍ଧ, ଭାସୁଥାନ୍ତେ ସୁଖେ
କେଳି-ଲୋଳ-ଚକ୍ରବାକ-ସାରସ ଦମ୍ପତି
ଲହରୀର ପରେ ପରେ; ଜଗାଇ ହୃଦୟେ
ସୁଗୋପନେ ପ୍ରଣୟର ଅଥୟ ତରଙ୍ଗ—
ଡାଳୁ ଡାଳୁ ଝାଡ଼ିଦେଇ ମୌନ-ପୁଷ୍ପରାଶି
ପତ୍ରେ ପତ୍ରେ ଜନମାଇ ମର୍ମର-ସଙ୍ଗୀତ
ମଧ୍ୟାହ୍ନ ଉଲ୍ଲୋଳ ବାୟୁ ଦେଉଥାନ୍ତା ଯେହ୍ନେ
ବକ୍ଷେ ବକ୍ଷେ ପ୍ରଣୟର ଅମୃତ ସଙ୍କେତ !

ଅଥବା ସେ କେଉଁ ପ୍ରାତେ ବାଳାରୁଣ-କରେ
ରକ୍ତପାଟ ପିନ୍ଧି ଯେବେ ପ୍ରକୃତି-ସୁନ୍ଦରୀ
ହସନ୍ତେ କୋମଳ ସ୍ମିତ, ବୃନ୍ତେ ବୃନ୍ତେ ରହି
ଶିଶିର ଚୁମ୍ବନଘାତେ ଫୁଟନ୍ତେ ସୁମନ,
କୁଳାୟୁ ଉଠନ୍ତେ ଗାଇ ଆଦ୍ୟ ବ୍ୟଥାଗୀତି
ବିହଗ-ପ୍ରଣୟୀ-ଯୁଗ, ଚଞ୍ଚୁ ଚଞ୍ଚୁ ଭରେ
ପରସ୍ପରେ ଦେଇ ଦୁଃଖେ ନିଶାନ୍ତ ଚୁମ୍ବନ,
ହରିଣ-ହରିଣୀ ଯେବେ ଗ୍ରୀବା ପୁଚ୍ଛ ଟେକି
ଲମ୍ଫନ୍ତେ କାନନଭାଗେ ସ୍ୱର୍ଣ୍ଣ କରେ ଲଭି
ଜୀବନର ଅନୁଭୂତି, ବାହାରନ୍ତେ ରାମ
ଶରଚାପ ସ୍କନ୍ଧେ ରଖି ପାରିଧି ବ୍ୟସନେ
ବିଶାଳ-ସୁନୀଳ ବପୁ ଝଲୁଥାନ୍ତା ରଙ୍ଗେ
କନକ ପରଶ ଲଭି ବାଳ ଅରୁଣର,
ସେକାଳେ ଲୋ ସଖି ମନେ ଭାବିଥିଲି ଶୁଣ
ଗୋଦାବରୀ-ବେଣୀ-ସ୍ନାତ କୁନ୍ତଳ ଲମ୍ବାଇ

ଶୁଭ୍ର ପୂତ ବୃକ୍ଷ ଛାଲେ ଆବରି ମୋ ଅଙ୍ଗ
ହସ୍ତେ ଧରି ହେମଥାଳେ ସ୍ୱହସ୍ତ-ଗ୍ରଥିତ
ପୁଷ୍ପମାଳା, ପାଦ୍ୟ ଅର୍ଘ୍ୟ ଚନ୍ଦନ ଅଗୁରୁ,
ପୂଜାରିଣୀ ବେଶେ ଯାଇ ହୁଅନ୍ତି ମୁଁ ଉଭା
ଶ୍ରୀରାମର ପଦପ୍ରାନ୍ତେ, ପୂଜନ୍ତି ଯତନେ
ନୟନର ଅଶ୍ରୁଜଳେ ପଖାଳି ସେ ପାଦ,
କରୁଣ-ହୃଦୟ ବୀର ତୋଳିଥାନ୍ତେ ପରା
ଏ ଦୀନାରେ ବକ୍ଷଦେଶେ, ସେ ପରଶ ପାଇ
ଏ ଜୀବନେ ମଣିଥାନ୍ତି କୃତକୃତ୍ୟ ଭବେ ।

ନାହିଁ ତ ସେ ଆଶା ଆଉ, ଯାଇଛି ଲୋ ସବୁ
କି ଲାଭ ଏ ସୌଧ-ସୁଖେ, ଭାଙ୍ଗିଦିଅ ବେଗେ
ଏ ବିରାଟ ସୌଧ-ଗୃହ, ରମ୍ୟ ଉପବନ,
ଫିଙ୍ଗିଦିଅ ଗୋଦାବରୀ-ଗଭୀର ଉଦରେ
ଅଛି ଯେତେ ମଣିମୟ ସିନ୍ଦୁକ, ମଞ୍ଜୁଷା,
ଯେତେକ ବସନ-ଭୂଷା,—ବିଳାସସାମଗ୍ରୀ ।
ନିଅ ଏ କୁଞ୍ଚିକା ସଖି, କାଢ଼ି ଥୁଅ ଆଗେ
ଶଚୀପତି ଉପହାର ବୈଦୁର୍ଯ୍ୟଖଚିତ
ସେ ବିପୁଳ ହାରଗୋଟି, ସେ କିରୀଟ ମମ
ସୁଧାଂଶୁ ଯା ଦେଇଥିଲେ ପ୍ରୀତିଭରେ ମୋତେ
ଶେଷ ଆଗମନ କାଳେ ରକ୍ଷପତି ଦୁର୍ଗେ;
ଆଉ ସେ ବଳୟ ଦୁଇ,—ପ୍ରଚେତା-ମହିଷୀ
ସ୍ୱାମୀ-ମାନରକ୍ଷା ପାଇଁ ଅର୍ପିଥିଲେ ଯାହା
ଭ୍ରାତୃକରେ; ଆଣ ପୁଣି ଜଳଦ-ଡମ୍ବର
ମହାଶାଢ଼ି, ଜଳଦର ପ୍ରେମମୟୀ ପତ୍ନୀ
ଶମ୍ପା ସଙ୍ଗେ ସଖୀ ହୋଇ ପ୍ରୀତି-ଚିହ୍ନରୂପେ
ପାଇଥିଲି ଯାହା; ଶେଷେ ରତ୍ନଚୁଡ଼ି ଯୋଡ଼ି
ନିଜ ଭାଇଙ୍କର ମତେ ସ୍ନେହ-ଦାନ ଯାହା,
ଆଣ ସବୁ, ରାଶୀକୃତ କର ମୋର ଆଗେ,
ପଦାଘାତ କରି ଚୂର୍ଣ୍ଣ କରିଦିଏ କ୍ଷଣେ
ଫିଙ୍ଗିଦିଅ ନଦୀଗର୍ଭେ, ବୁଝିଛି ଲୋ ସଖି,
ଧନରତ୍ନେ ଶମିବାର ନୁହେଁ ହୃଦବ୍ୟଥା,

କି ଲାଭ ତେବେ ଗୋ ଏତେ ମହାର୍ଘ-ଭୂଷଣେ ?
ଏସନ ବିଳାସମୟ ଜୀବନଯାପନେ ?
ଲୋଡ଼ା ନାହିଁ ଏ ଜୀବନ, କହ ବସନ୍ତରେ
ଫେରିଯାଉ ନିଜ ପୁରେ, ଘେନିଯାଉ ସଙ୍ଗେ
ମଳୟ ତା ପ୍ରାଣସଖା, ନ ଫୁଟୁ ଲୋ ଆଉ
ନଦୀଧାରେ କଣ୍ଟକିତ—ନିକୁଞ୍ଜେ କେତକୀ
ଅନ୍ଧ କରି ଗନ୍ଧମୟ ରେଣୁରେ ତାହାର
ରକ୍ଷ ଯୁବତୀରେ, ଆଉ ନ ଫୁଟୁ ଅଶୋକ
ମୋ ଚରଣ ଅରୁଣିମା— ପ୍ରତିଯୋଗୀ ହୋଇ,
ଶୁଖିଯାଉ ଚିରଶ୍ୟାମ ଶାଦ୍ୱଳ ବିତାନ
ବୈଶାଖର ଖର ତାପେ, ଅଦିନେ ଜଳଦ
ସିଞ୍ଚିବ କିପାଇଁ ଆଉ ଶୀତଳ ଶୀକର ?

ମୌନେ ମୌନେ ପତ୍ର-ପୁଷ୍ପେ ପଡୁ ଲୋ ଗୋପନେ
ମରଣର କୃଷ୍ଣଛାୟା, ଡାଳେ ଡାଳେ ରହି
ମଉଳି ପଡ଼ନ୍ତୁ ସବୁ; ପ୍ରମୋଦ ପିପାସା
ଶୂନ୍ୟ ହୋଇ ମିଶିଯାଉ ପ୍ରଭଞ୍ଜନ ସଙ୍ଗେ,
ମୌନ ଅଭିଶାପ ଗୋଟି ମିଳାଇ ଆକାଶେ
ଗୋଟି ଗୋଟି ଲଭନ୍ତୁ ଲୋ ଧରଣୀ ଆଶ୍ରୟ !
ଆଉ କେଉଁ ଉପବନେ ଯାଉ ସେ କୋକିଳ
ପ୍ରେୟସୀରେ ଘେନି ତା'ର, ସହକାର ଯହିଁ
ନବ ବଉଳିତ-ଶିରେ ହୋଇଅଛି ଉଭା,
ଯାଉ ସେ ଟେଣ୍ଟେଇ, ଆଉ ଯହିଁ ପୁଷ୍ପ ସଙ୍ଗେ
କୌମୁଦୀ ଖେଳୁଛି ନିତ୍ୟ ପ୍ରଣୟର କ୍ରୀଡ଼ା ।
ଯାଆନ୍ତୁ ସଭିଏ ସଖି, ନିଜେ ଶୋଭା-ଲକ୍ଷ୍ମୀ
ଅଭିମାନେ ଯାନ୍ତୁ ଫେରି; ସୁଷମାରେ ମୋର
କି ଲାଭ ସଜନି ? ମୋର ବିଳାସେ କି ଲୋଡ଼ା ?

ଧନରତ୍ନେ ଜନ୍ମ ମୋର, ହୀରା-ନୀଳାପରେ
ଯାପିଲି ଜୀବନସାରା, ବୁଝିଛି ଲୋ ସଖି,
ମଣି-ମାଣିକ୍ୟର ମୂଲ୍ୟ,—ଅସାର ଝଟକେ
ବାନ୍ଧିଥାନ୍ତି ଲୋକ-ଚକ୍ଷୁ; ଭାବିଲି ମୁଁ ତହିଁ
କେଉଁ ଆଶେ ! ଆଜି ମନେ ଗୋଟି ଗୋଟି ହୋଇ

ଭାସିଯାଏ ଅତୀତର ଜୀବନ-କାହାଣୀ,
ଫାଟିଯାଏ ବକ୍ଷ ମୋର,—କି ଜୀବନ ସତେ !
-ବ୍ୟର୍ଥତାର ହତାଶାର ମହାସ୍ତୂପ ସିନା !
ରାଜକୁଳେ ଜନ୍ମ ମୋର, ମୋ ଭାଇ ରାବଣ
ଅତୀତେ ଭବିଷ୍ୟେ ବିଶ୍ୱେ ଅଦ୍ୱିତୀୟ ଯା'ର
ରାଜପଣ । ମନେ ମନେ ଭାବିବ ସଂସାର
ମୋ ଭଳି ଦୁଲଣା କନ୍ୟା ନାହିଁଛି ଭୁବନେ,
କିନ୍ତୁ ସତେ ବିପରୀତ କେଡ଼େ ମୋ ଜୀବନ !

କୈଶୋର ମୋହର କ୍ଷୁଣ କ୍ଷୁଣରେ ସଖିଏ
କଟାଇଲି ଶାନ୍ତିପୂତ ଋଷି ତପୋବନେ,
ପିତାଙ୍କ ଜଗତ-ଶ୍ରୁତ ସାଧନ ଆଶ୍ରମେ ।
ଋଷିକନ୍ୟା ଋଷିପୁତ୍ର ମେଳେ ମୋ ଜୀବନ
ଗିରି-ତରଙ୍ଗିଣୀ ପରି ଯାଉଥିଲା ବହି
ଅନନ୍ତ ଆମୋଦ ଧରି ଅସୀମ ପ୍ରଣୟେ,
ବନେ ବନେ କୁଞ୍ଜେ କୁଞ୍ଜେ ବୃକ୍ଷଲତା କୋଳେ
କନ୍ଦରେ କନ୍ଦରେ, ନୀଳ ଆକାଶର ତଳେ
ବକ୍ଷେ, ବକ୍ଷେ ଚିରଶ୍ୟାମ କାନନ ଭୂମିର
ଏ ମୁକ୍ତ ମଳୟ ପରି ଯାଉଥିଲି ଚୁମ୍ବି
ପୁଷ୍ପେ ପୁଷ୍ପେ ପତ୍ରେ ପତ୍ରେ, ସହଚରୀ ସଙ୍ଗେ
ଲୋଟିଯାଉଥିଲି ମୁଁ ସେ କାନନେ କାନନେ ।
କି ଥିଲା ବାସନା ମମ ? କି ଆଶା ମୋହର !
ମୋଦ ଦେଇ ଅନ୍ୟ ପ୍ରାଣେ, ସଜଫୁଲ ପରି
ହସି ହସି ଦୁଇ ଦିନ ସୂର୍ଯ୍ୟାଲୋକ ତଳେ—
ମିଶାଇ ବାୟୁର ଅଙ୍ଗେ ସ୍ୱଅଙ୍ଗ ସୁରଭି
ଧୂଳିରେ ମିଶିବା ଶେଷେ, ଏ ଥିଲା ହୃଦୟେ
ଏକାନ୍ତ ବାସନା ମମ । କିନ୍ତୁ ଲୋ ସଜନି !
ମନେ ମନେ ସେ ଆଶାରେ ଦେଇଛି ମୁଁ ଚିପି,
ବିଧାତାର ଇଚ୍ଛା ତାହା, କେଉଁ ପାପଫଳେ
ଚିରକାଳ ଏ ଜୀବନେ ଲାଗିଛି ବ୍ୟର୍ଥତା !
ଏକଦା ସେ ତପୋବନେ ଦେଲେ ଦରଶନ

ସୁକାନ୍ତ କିଶୋର ପୁଣି; ଅଧ୍ୟୟନ ଆଶେ
ପିତୃ ପଦତଳେ ବସି । ନୀଳକାନ୍ତ ଶିରୀ,
ଆୟତ ଲୋଚନଯୁଗ, ଉନ୍ନତ ନାସିକା
କୁଞ୍ଚିତ ସୁକେଶ ଦାମ ଲମ୍ବିଥାଏ ସ୍କନ୍ଧେ
ଅଯତନେ, ତୀବ୍ର ଦୃପ୍ତ ଚକ୍ଷୁର ଚାହାଣି,
ଥରେ ଦେଖି ଭୁଲିବାର ଅସମ୍ଭବ ସଖି !
କେଶରୀ-ବିକ୍ରମ ଠାଣି, ଆରକ୍ତ-ଚରଣ
ଧୀରେ କ୍ଷେପି ଚାଲୁଥିଲେ, ରହୁଥିବେ ଚାହିଁ
ପଥର ପଥିକବ୍ରଜ, ଧୂସର-ବଲ୍‌କଳ
ଅଙ୍ଗକୁ କି ସାଜେ ସେ ଲୋ, ନବୀନ ଜଳଦେ
ଜଡ଼ିଛି ଚପଳା ସେ କି ଅଚପଳ ହୋଇ !
ପ୍ରଥମେ କିନ୍ତୁ ଲୋ ସଖି, ଘୃଣାକ୍ଷରେ ସୁଦ୍ଧା
ଚାହୁଁ ମୁଁ ନ ଥାଏ ତାଙ୍କ ସୁନ୍ଦର ବଦନେ ।
ଗୁରୁକନ୍ୟା ବୋଲି ବଡ଼ ଦମ୍ଭେ ବୁଲୁଥାଏ
ସାଙ୍ଗ-ସଖୀମେଳେ, ଭାବି, ଭବେ ମୋ ସମାନ
ନାହାନ୍ତି କେ, ମୁଁ କାହିଁକି କାହା ପଦପାଶେ
ଠିଆହେବି ପ୍ରୀତି ପାଇଁ ? ମୋର ପ୍ରୀତି ଲାଗି
ଧାଇଁବ ଜଗତ ସିନା ! ସୁଶୀଳ-କିଶୋର
ଠିଆହୋଇ କେଉଁ ବୃକ୍ଷଛାୟାତଳେ ଧୀରେ
ଶାନ୍ତ ସୌମ୍ୟ ଦୃଷ୍ଟି ଦେଇ ମୋହ କ୍ରୀଡ଼ାପରେ
ରହିଥିବେ ନିର୍ବିକାର, ମୁଁ କିନ୍ତୁ ଦାମ୍ଭିକ
ନ ଚାହିଁ ନିମେଷ ପାଇଁ ଅନ୍ୟ ଅଭିମାନେ
ଯାଏ ଫେରି, ମିଶିଯାଏ ବୃକ୍ଷଲତା କୋଳେ
ମିଶିଯାଏ ସଙ୍ଗିନୀଙ୍କ ପୀରତି ସୋହାଗେ ।
ଏହିପରି ଗଲା ବହି ତରଳ ପରାଣେ
କୈଶୋରର ଦିନମାନ ।

ସେଦିନ ପୂର୍ଣ୍ଣିମା
ଆସିଛି ସେ ତପୋବନେ ସ୍ୱର୍ଗଶୋଭା ଧରି ।
ଚନ୍ଦ୍ରିକାର ମଧୁକ୍ରୀଡ଼ା ଲଗାଇଛି ଯାଦୁ
କାନନର ଅଂଶେ ଅଂଶେ; ଆଶ୍ରମ-ତଟିନୀ
ଫୁଲି ଫୁଲି ତୀବ୍ର ବେଗେ ବହୁଛି ଭସାଇ

ବକ୍ଷେ ବକ୍ଷେ କୌମୁଦୀର ନୃତ୍ୟମାନ ଲୀଳା,
ଫୁଟିଛି ଅସଂଖ୍ୟ ଫୁଲ, ଅଧର ମେଲାଇ
ବୃକ୍ଷେ ବୃକ୍ଷେ ଡାଳେ ଡାଳେ, ହିଆଭରି ଥରେ
ଚନ୍ଦ୍ରିକା ପିଇବା ଆଶେ । ତପୋବନେ ଯେତେ
ବାଳକବାଳିକା ସର୍ବେ ମାତିଛୁ ସେଦିନ
ମହୋତ୍ସବେ, ନିଜେ ନିଜେ ରାଜାରାଣୀ ହୋଇ,
ଆରମ୍ଭିଲୁ ଅଭିଷେକ, ରାଣୀ କରି ମତେ
ବନ୍ଦିଲେ ପ୍ରଥମେ ସର୍ବେ ଫୁଲ ଫଳ ଦେଇ,
ଯେ ଯାହାର ଉପହାର ଯତନେ ସଂପାଦି
ଢାଳିଲେ ମୋ ପାଦତଳେ । ଅନ୍ଧାରରୁ ଉଠି
ଧୀରେ ଧୀରେ ସେ କିଶୋର ସମସ୍ତଙ୍କ ଶେଷେ
କହିଲେ ଥରାଇ ଓଷ୍ଠ, ''ଘେନିବ କି ମୋର
ଏ ମାଳଟି ?'' ନ ଦେଇଣ ଅବକାଶ ମତେ
ସମ୍ମତି ପ୍ରଦାନ ପାଇଁ, ଲମ୍ବାଇଲେ ଗଳେ
ନିଜ ହସ୍ତେ ପୁଷ୍ପମାଳା, ସେ ନୟନଭଙ୍ଗି
ସେ ମଧୁର ପ୍ରୀତିମୟ ବଚନର ଧାରା,
ବଦନେ ସେ ସରଳତା—କିଣିଲା ହୃଦୟ !
ସହସା ବକ୍ଷରେ ମୋର ବାଜିଲା ଦାରୁଣେ
ପୂର୍ବ ଅନପେକ୍ଷା ପାଇଁ ତୀବ୍ର ଅନୁତାପ ।

ନିଜ ହୃଦ ନିଜେ ମତେ ଝିଙ୍ଗାସିଲା ସଖି !
କିପାଇଁ ମୁଁ ନ ରଖିଛି କିଶୋର ବକ୍ଷର
ସେ ବିପୁଳ ପ୍ରେମଦାନ ! ସେହିଦିନୁ ପ୍ରାଣେ
ଜାଗିଲା ପ୍ରଣୟ-ଶିଖା, ସବୁ ସାଥୀମେଳେ
ତାହାରି ପ୍ରାଣର ଖାଲି ଶୁଭିଲା ମୁରଲୀ ।
ସେ ମୁରଲୀ ଅନୁସରି ଧାଇଁଲି ସତତ ।
କ୍ରମେ କ୍ରମେ ପରସ୍ପରେ କଲୁ ଆପଣାର,
ଆରେକ ଭାବିଲା ବସି ଅନ୍ୟ କଥାମାନ
ନିର୍ବେଦ ନୀରବେ, ଅବା ନିରଜନେ କାହିଁ
ବକୁଳତଳରେ ଥୋଇ ମୋ କୋଳରେ ଶିର
ନିର୍ନିମେଷେ ଚାହିଁଥାଉ ଅଧରେ ଅଧରେ ।
ଆନ ସଖୀ ସଙ୍ଗ ଛାଡ଼ି ସେ କିଶୋର ସଙ୍ଗେ

ଭ୍ରମିଲି କ୍ରମେ ମୁଁ ସଦା, ଅଧ୍ୟୟନ ବେଳେ
ପଢ଼ନ୍ତି ସେ ଦୃଷ୍ଟି ରଖି ଗ୍ରନ୍ଥ ପତ୍ରେ ପତ୍ରେ
ତାଙ୍କ ପଦତଳେ ଶୋଇ ଚାହିଁଥାଏ ମୁହିଁ
ସେ କୋମଳ ମୁଖଖଣ୍ଡି । ମଧ୍ୟାହ୍ନ ଆଗମେ
ତପୋଭୂମି ପ୍ରାନ୍ତେ ଯାଇ ଚରାଉ ଗୋଧନ
ବଳ୍କଳ ଉତ୍ତରୀ ପାରି ସହକାର ଛାୟେ
ବସି, ମୁଖେ ବଂଶୀ ବାଉ; ପାଗଳ ପବନ
ରନ୍ଧ୍ରେ ରନ୍ଧ୍ରେ କରେ କ୍ରୀଡ଼ା ! ଅବା କେତେବେଳେ
କାନନ ପଲ୍ୱଲୁ ତୋଳି ଅରବିନ୍ଦରାଜି
ମାଳା ଗୁନ୍ଥି ମୋ ଗଳାରେ ଦିଅନ୍ତି ଲମ୍ବାଇ
ରାଣୀ ବୋଲି ଉଚ୍ଚେ ଧ୍ୱନି, କମ୍ପାଇ କାନନ
ତାଳିମାରି; ପୁଣି ମୁଦେ ଉତ୍ପଳ କେଶର
ଯତନେ ନିଖାରି ଦୁହେଁ ଖୁଆଉଁ ଦୁହିଁରେ ।

ସଂଧ୍ୟାଗମେ ଫେରିଆସୁ ଗୋଧନ ବୁଲାଇ,
ପଥଯାକ ଦେଖୁଥାଏ ଖାଲି ମୁଁ ନିରେଖି—
କେମନ୍ତେ ଦିନାନ୍ତେ ରବି ହେମ ରସାଣରେ
ଝଲିଉଠୁଥାଏ ସେହି ସୁନ୍ଦର ବଦନ ।
ନିଶାଗମେ ଏକଶଯ୍ୟା ଆଶ୍ରି ଦୁହେଁ ପୁଣି
ଯାପି ନେଉ କାଳ ସୁଖେ, ହୁଏ ନାହିଁ ନିଦ—
କହନ୍ତି ସେ ନାନା କଥା— ଦେବ ଦେବୀ ପ୍ରେମ,
ଯକ୍ଷପୁରେ ବର୍ଷାକାଳେ ପ୍ରେମିକାର ଦଶା,
ବିଦ୍ୟୁତ୍‌ର ନିତ୍ୟପ୍ରୀତି ଜାତ ହେଲା କେନ୍ତେ
ଜଳଦରେ, କିମ୍ବା ରବି ସରଗ-ଭୁବନେ
କାହାର ପ୍ରଣୟ-ପାଶେ ନ ଦେଇଣ ଧରା
ପଦ୍ମିନୀର କି ଆଦରେ ବାନ୍ଧିଲେ ନିଜକୁ—
ଆହୁରି ଅସଂଖ୍ୟ କଥା, କହୁଥାନ୍ତି ସେହୁ—
ଉନିଦ୍ରେ ମୁଁ ଶୁଣୁଥାଏ । ଶୁଣୁ ଶୁଣୁ ସଖି !
ପାହିଯାଏ ସାରାରାତି, ତାଙ୍କ ବକ୍ଷେ ରଖି
ମୋ କିଶୋର ମଥାଗୋଟି ଶୋଇପଡ଼େ ଶେଷେ ।

ଏହିପରି ଗଲା ବହି ମୋ କୈଶୋର କାଳ
ଉନ୍ମୁଖ କୋରକବତ ପବନେ ଦୋହଲି ।

ଆସିଲା ଯୌବନ ଦିନେ, ସେଦିନ ସହସା
ଚମକିଲି ନିଜେ ଦେଖି ନିଜେ ମୁଁ ସଜନି,
ଚମକଇ ଯଥା ମେଘ ଆଦ୍ୟ ଆଷାଢ଼ରେ
ନିଜ ଅଙ୍ଗେ ଦେଖି ଶମ୍ପା କନକ-ନର୍ତ୍ତନ ।
ପୂଜାର ନୈବେଦ୍ୟରୂପେ ପୀନ ପୟୋଧର
ଉରସେ ଉଠିଲା ସଖି ! ଯତନେ ସାଇତି
ରଖିବାକୁ, ସେ-ଅବଧି-ମୁକ୍ତ-ଅଞ୍ଚଳକୁ
ଆଣିଲି ଟାଣି ମୁଁ ବକ୍ଷେ । ଅଙ୍ଗେ ଅଙ୍ଗେ ମୋର
ଗୋପନେ ଫିଟିଲା ଝଳି, ପ୍ରତି ପ୍ରଭାତରେ
ବଢ଼ିଲା ମୋ ଶିରୀ-ଶୋଭା, ନିଶାନ୍ତ ଶିଶିରେ
ଅବଗାହି ପୁଷ୍ପକାନ୍ତି ବଢ଼ିଥାଏ ଯଥା ।

ତରଳ-ଚଞ୍ଚଳ ଦୃଷ୍ଟି ହୋଇଲା ବିନୀତ,
ଉଶ୍ୱାସ-ଶରୀରଯଷ୍ଟି ହେଲା କ୍ରମେ କ୍ରମେ
ଅତି ଗୁରୁ, ଅଧରରେ କିଶୋରୀ-କନ୍ୟାର
ସେ ସରଳ-ବାଚାଳତା ମିଶିଗଲା କାହିଁ ।
ଭାଲୁଁ ତଳଯାଏ ମୋର ଖେଳିଲା ବିଲୋଳ—
ତରଳ ଲାବଣ୍ୟ ଲୀଳା ସୁଚପଳ ହୋଇ ।
ଆତ୍ମହରା ହୋଇ ମୁଁ ଗୋ ! ଆପଣା ସୌନ୍ଦର୍ଯ୍ୟେ
ବାମ କରେ ଥୋଇ ଗଣ୍ଡ ଭାଳିଲି ମୁଁ ବସି—
କାହାରେ ଅର୍ପିବି ମୋର ଏ ମହାସମ୍ପଦ ?

ବକ୍ଷେ ବକ୍ଷେ ଏଣେ ମୋର ବାଜିଲା ଡମ୍ବରୁ.
—ମନ୍ମଥ ସେନାନୀରୂପେ ଜାଗିଲେ ସହସା
ଲକ୍ଷ ଲକ୍ଷ ସ୍ୱପନଜ ଦୁର୍ଦ୍ଦାନ୍ତ ବାସନା
ଅହରହ ରଖି ମତେ ଉନ୍ମନ, ସଜନି !
ପ୍ରତିକ୍ଷଣେ ହୃଦେ ମୋର ବାଜିଲା ବିଷମେ
ଜଗତ୍‌ର ପ୍ରତି ଅଂଶୁ କୋଟି ନିମନ୍ତ୍ରଣ—
ହୃଦଚିରା ଡାକ ସେ ଲୋ, ହିଆ ମୋର ସଖି
ଯାଉଥାଏ ପୋଡ଼ି ଖାଲି, ଏ ପରାଣ ମୋର
ଉତ୍ତରଳେ ଉଠୁଥାଏ ବହିଯିବା ପାଇଁ
ସେହି ଡାକ ଅନୁସରି; ଭ୍ରମି ଭ୍ରମି କ୍ଷଣେ

ବିଶ୍ୱର ପ୍ରତ୍ୟେକ ରନ୍ଧ୍ରେ, ଚୁମ୍ବିଣ ନିରତେ
ସବୁ ବିଶ୍ୱବାସୀ ହିଆ, ଶମିବାକୁ ତୃଷା
କରିଥାଏ ସେ ବାସନା ! କିନ୍ତୁ ଲୋ ସଜନି !
ଗୁରୁଅଙ୍ଗ ଆବରଣ ଭେଦି ସେ ବିଚାରୀ
ଯିବ କାହିଁ ?

କିନ୍ତୁ ଶୁଣ ଶୁଣ ଲୋ ସଜନି !
ଯେ ଦିନ ଆସିଲା ଅଙ୍ଗେ ଯୌବନ-ପ୍ରବାହ,
ମୋହଠାରୁ ଭିନ୍ନ ହେଲେ ସେ କିଶୋରମଣି ।
ପିତା ମୋର ଗୁରୁଦେବ, ବ୍ରହ୍ମଚାରୀ-ବ୍ରତେ
ମାନସେ ଆଶଙ୍କା ପୋଷି ଦୁହିଁକୁ ଦାରୁଣେ
ରଖାଇଲେ ଭିନ୍ନ ଠାବେ । ଶୁଣିଲି ଏ ଆଜ୍ଞା
ଯେ କାଳେ, ମୋ ମୁଣ୍ଡେ ସତେ ପଡ଼ିଲା ଦମ୍ଭୋଳି,
ପ୍ରମାଦ ଗଣିଲି ବସି ନିରଜନ କକ୍ଷେ ।
ଯେତିକି ଆସିଲା ମନେ ସଖାହୀନ ଭାବ
ବଢ଼ିଲା ଉଦ୍‌ବେଗ ତେତେ ମିଶିବାର ପାଇଁ
କିଶୋରର ଅଙ୍ଗେ ଅଙ୍ଗେ; ଅଥୟ ହୃଦୟ
ଉଚ୍ଛନ୍ନ କରିଲା ମତେ, ଅହରହ ସଖି
ନୟନୁଁ ବହିଲା ଲୁହ, ସୁମରି ତା କଥା—
ଖେଳିବାର, ହସିବାର, ଭାଷିବାର ମୁଖେ
ମୋହ ମନ ଜାଣି ପ୍ରୀତି ମଧୁର ବଚନ ।
ଦିନରାତି ଲୀଳାଖେଳା, ଖୁଆଖୋଇ ପୁଣି
ଏକ ପାଇଁ ଅନ୍ୟ ମନେ ସମ ଅନୁଭୂତି,
ସବୁ ଲୋ ପଡ଼ିଲା ମନେ, ଡାକିଲି ଈଶ୍ୱରେ
କରିବାକୁ ଅଙ୍ଗ ମୋର, ଛାୟାମୟ ଖାଲି
ଅବାଧେ ଯାଆନ୍ତି ଯେହ୍ନେ କିଶୋରର ପାଶେ
ବୁକେ ବୁକେ ମିଶି ତା'ର ଭୋଗୁଥାନ୍ତି ସଦା
ସେ ଅମୃତମୟ ସୁଖ ! କିନ୍ତୁ ଲୋ ଦେବତା
ନ ଶୁଣିଲେ ମୋ ମିନତି, ଗଲା ଦିନ ବହି
ଏହିପରି ବ୍ୟଥାମୟ ଆର୍ତ୍ତ ହାହାକାରେ ।
କେତେ ଚେଷ୍ଟା କଲି ସତେ ଦିନେହେଲେ କେବେ
ଦେଖନ୍ତି କ୍ଷଣକ ପାଇଁ ସେ କାନ୍ତ ବଦନ;

ପୂରାନ୍ତି ଆକୁଳ-ଚକ୍ଷୁ-ଦର୍ଶନ-ପିପାସା,
ହେଲା ନାହିଁ କିନ୍ତୁ ତାହା, ନିତାନ୍ତ ଆକଟେ
ଦୁହିଁକି ଲୋ ଭିନ୍ନ ଭିନ୍ନ ରଖିଥାନ୍ତି ସଦା ।
ସେ ଦିନ ଜାଗର ନିଶା, ଅମା ଅନ୍ଧକାର
ଗ୍ରାସିଛି ନିବିଡ଼େ ବନେ । ଘନ କୃଷ୍ଣାଞ୍ଚଳ
ଟାଣିଦେଇ ନିଶାଲକ୍ଷ୍ମୀ ଆକାଶୁ ଆକାଶେ
ଶାନ୍ତମନେ ଘୁମାଉଛି ତାରକାର ଦଳେ ।
ତପୋବନେ କୁଞ୍ଜେ କୁଞ୍ଜେ ଲାଗିଲାଣି ଦୀପ,
ଶିବମୂର୍ତ୍ତି ପାଶେ ପାଶେ କୁମାର କୁମାରୀ
ବୃଦ୍ଧ ବୃଦ୍ଧା ଧ୍ୟାନମଗ୍ନ ନେତ୍ରେ ଛନ୍ତି ବସି,
ପ୍ରଦୀପ ହସ୍ତରେ ଧରି ନିଜ ନିଜ କୁଞ୍ଜେ ।
ଏକା ଲୋ ମୋହରି କୁଞ୍ଜ ଥିଲା ଅନ୍ଧକାର,
ମୋ ମାନସ ଶିବ ଯେଣୁ ନ ଥିଲେ ମୋ ପାଶେ ।
ଯାଇଥିଲେ ଉମାପତି ନିମନ୍ତ୍ରଣେ ପିତା
କୈଳାସେ ସେଦିନ, ମହାମହୋତ୍ସବ ତହିଁ—
ଶିବଜଟେ ପୂର୍ଣ୍ଣଚନ୍ଦ୍ର ଉଜ୍ଜଳି ଉଠଇ
ସଂହରି ଚନ୍ଦ୍ରିକାଜାଳ ପୃଥିବୀର ମୁଖୁଁ,
ଆନନ୍ଦେ ଉଲ୍ଲସି ଉଠି ଗିରି-ତରଙ୍ଗିଣୀ
ଭାଗୀରଥୀ ସହ ଉଚ୍ଚେ ନୃତ୍ୟକରି ସୁଖେ
ପ୍ରସ୍ତରୁ ପ୍ରସ୍ତର ଲଙ୍ଘି ନମନ୍ତି ଭୂତଳେ;
ଶିବ-ବୃଷ ମହାନନ୍ଦେ ହମ୍ବାଳି ଗଦ୍‌ଗଦେ
ନିବାରଇ ଶୃଙ୍ଗକଣ୍ଡୁ କରି ବପ୍ରକ୍ରୀଡ଼ା
ଅତଟ-ଭୃଗୁର ସଙ୍ଗେ । ଅତି-ନୃତ୍ୟ ହେତୁ
ଗଣନାଥ ଗଣ୍ଡୁ କ୍ଷରି ମଦବାରିଧାରା
ପିଚ୍ଛିଳ କରାଇଦିଏ ଶିବ ସଭାଗୃହ ।

ଅନ୍ଧକାରେ ଅନ୍ଧକାରେ ବସି ନିରଜନେ
ହେଲା ନିଶା-ଅର୍ଦ୍ଧ ଶେଷ; କୁଞ୍ଜେ କୁଞ୍ଜେ ରହି
ଋଷିପୁତ୍ରକନ୍ୟାଗଣ ବ୍ରତ ଭାଙ୍ଗି ସୁଖେ
ନିଦ୍ରାର ଆଶ୍ରୟ ନେଲେ । ମତେ ନିଦ କାହିଁ ?
ସୁଯୋଗ ଦେଖି ମୁଁ ସଖି, କାଢ଼ିଲି ଚରଣ
(କେଡ଼େ ଅଭାଗିନୀ ମୁଁ ଲୋ, ପୁଷ୍ପ ତୋଳି ଯାଉଁ

ହେଲା ଅଙ୍ଗେ ସର୍ପାଘାତ) ଅନ୍ଧାରେ ଅନ୍ଧାରେ;
କୁଞ୍ଜମାନ ଦୂରେ ତେଜି, ବକ୍ର-ତୃଣ-ପଥେ,
ନଇଁ ନଇଁ ଆନମିତ ବୃକ୍ଷଲତା ତଳେ,
ଚିପି ଚିପି ପଦଦ୍ୱୟ ନିରୋଧି ନିଶ୍ୱାସ,
ଅନାଇଁ ଅନାଇଁ ଭୟେ ନିଜ ପଛେ ପଛେ ,
ଚମକି ଅଞ୍ଚଳ-ଘାତ-ଜାତ ମରମରେ,
ଢାକି ଢାକି ସ୍ୱବସନେ, ପହଞ୍ଚିଲି ଶେଷେ
କିଶୋରର କୁଞ୍ଜଦ୍ୱାରେ । ଥିଲେ ସେ ନିଷ୍ଠୁର
ବେଦପାଠେ ଆତ୍ମହରା, ପଦଶବ୍ଦେ ମୋର
ଚମକି ଚାହିଁଲେ ମତେ,

ଅଚିହ୍ନା ପରାୟେ
ପଚାରିଲେ,'' କି ନିମନ୍ତେ ଏ ନିଶୀଥେ ସଖି,
ଆସିଲ ଏ କୁଞ୍ଜେ ମୋର, ଜାଣନା କି ତମେ
ଆଶ୍ରମର ନୀତିତତି ?''

''ଜାଣେ ବୋଲି ଭଲେ
ଆସିଛି କିଶୋର ଆଜି ଏ ସୁଯୋଗ ଦେଖି,
ପ୍ରଭାତିଲେ ଏ ରଜନୀ, ଆଶ୍ରମ ନିୟମେ
ଏ ଚରଣ ଦୁଇ ମୁଁ ତ ନ ପାରିବି ଦେଖି,
ନିଦ୍ରାଗତ ସର୍ବେ ଏବେ—''

''କି କ୍ଷତି କିଶୋରି,
ମୋ ଚରଣ ନ ଦେଖିଲେ ? ମୋପାଶୁ, ଯୁବତି,
କି ଲାଭରେ, ଆଶ୍ରମର ଭାଙ୍ଗ ଏ ଶୃଙ୍ଖଳା ?
ତୁମରେ କି ଦେଇପାରେ ?''

''ଏସନ କଠିନ
କିପରି ହେଲ ହେ ସଖା, ଏତେ ଅଳ୍ପକାଳେ;
ଭୁଲି କି ଗଲଣି ପ୍ରିୟ, ସେ କିଶୋର ଲୀଳା,
ସେ ମଧୁର ସୁଖ-ଦୁଃଖ—''

''ଭୁଲିଛି ଯୁବତି,
ନୁହେ ଆଉ 'ପ୍ରିୟ', 'ବନ୍ଧୁ', 'ସଖା' ମୁଁ ତୁମର,
ସାମାନ୍ୟ ଆଶ୍ରମବାସୀ, ଆସିଥିଲି ଦିନେ
ଯିବି ପୁଣି ଅଳ୍ପକାଳେ—''

''ଯିବ ଅଳ୍ପକାଳେ ?

ବ୍ୟଥା କି ନ ଲାଗେ ହୃଦେ ? ନୁହ ବନ୍ଧୁ ଆଉ ?
କିପାଇଁ ଭୁଲିଲ ମଧୁ ସେ କିଶୋର କ୍ରୀଡ଼ା
ଏଡ଼େ ବେଗେ– ?''
''ସେ କାରଣ କି ପାଇଁ ଜାଣିବ ?
ଯାଅ ଫେରି ନିଦ୍ରା ତେଜି ଉଠନ୍ତି ଯଦି କେ
କି ବିପଦ ଭାବି ଦେଖ–''
''ଯିବି କେଉଁ ଆଡ଼େ ?
ହୃଦୟର ଏ ବିକଳ ଆର୍ତ୍ତନାଦ ଧରି,
ମର୍ମଭେଦୀ ଏ ନିଶ୍ୱାସ, ଏ ପାଗଳ ମନ
କେମନ୍ତେ ରଖିବି ସ୍ଥିର, ଜାଣନା କି ସଖା ?
ତୁମର ଏ ପଦପ୍ରାନ୍ତେ ବନ୍ଧା ମୋ ପରାଣ,
ତୁମରି ମୋହନ ମୂର୍ତ୍ତି ପାଏ ପୂଜା ନିତି
ଏ ବିରାଟ ବକ୍ଷତଳେ–''.
''ପାରିବିନି ତାହା,
ମୋ ପରାଣ ଜାଣିରଖ ଅନ୍ୟ ଯୁବତୀର
ସ୍ୱର୍ଣ୍ଣାଞ୍ଚଳେ ଚିରବନ୍ଧା ! ଶୁଣିଲି ମୁଁ ଏବେ–
ପିତା ମୋର ବାଲ୍ୟକାଳେ ଦେଇଛନ୍ତି କରି
ଆରେକ ବାଳିକା ସହ ପରିଣୀତ ମତେ !''
କହି ଯୁବା ନତମୁଖେ ବକ୍ଷେ ଭରି ବାରି,
ସଙ୍କେତିଲେ ଧୀରେ ମତେ ପଳାୟନ ପାଇଁ ।

ଆସିଲି ପଳାଇ ମୁଁ ଲୋ– ଜାଣେ ନା ମୁଁ କିନ୍ତୁ
କେମନ୍ତେ ମୁହୂର୍ତ୍ତେ ଆସି ପହଞ୍ଚିଲି କୁଞ୍ଜେ ।
ସେହିଦିନୁ ଆରମ୍ଭିଲା ଦୁର୍ଦ୍ଦଶା ମୋହର ।
କିଛିଦିନେ ସେ କିଶୋର ଛାଡ଼ିଲେ ଆଶ୍ରମ,
ନ ଦେଖିଛି ଆଉ ତାଙ୍କୁ ଲଜ୍ଜା ଅପମାନେ
ଦୁଃଖେ କ୍ରୋଧେ ଜଳିଗଲା ହୃଦୟ ମୋହର,
ଛାଡ଼ିଲି ମୁଁ ସବୁ ଲଜ୍ଜା ତା'ର ନାମ ଧରି
ଭ୍ରମିଲି କାନନେ କୁଞ୍ଜେ ଅହରହ ସଖି,
ନ ଥାଏ ଆଦର ଯତ୍ନ ବସନ-ଭୂଷଣେ
ନିଶା ଯାପେ ଗିରିକୋଳେ, ମୁକ୍ତ ନଭତଳେ
ନ ଥାଏ କିଛିହିଁ ଚେଷ୍ଟା ଅଶନେ ଶୟନେ,

ବନ୍ୟବାସୀ ପରି ମୁଁ ଲୋ ବଢ଼ିଲି ସେକାଳେ !
ଛିନ୍ନବସ୍ତ୍ର ଜୀର୍ଣ୍ଣ ଦେହ ମଳିନ ବଦନ
ରୁକ୍ଷକେଶ, ଶୁଷ୍କବେଶ—ଏମାନ ନିରେଖି,
କେ ମୋତେ କହିବ 'ଏ ରାବଣ-ଭଗିନୀ ?'
ଅସଭ୍ୟ ବର୍ବରବତ ବୁଲୁଥାଏ ସଦା,
ସୂର୍ପ ପରି ଅଯତନେ ବଢ଼ି ନଖପନ୍ତି
କଲା ମତେ ଭୟଙ୍କରା ଡାକିଲେ କେତେକ
ସୂର୍ପଣଖା ନାମ ଧରି ପାଗଳିନୀ ବୋଲି ।
ପଠାଇଲେ ପିତା ମୋତେ ଭ୍ରାତୃସଭା ପାଶେ—
ଦେବ-ବୈଦ୍ୟ ସୁଧାହସ୍ତ ଲାଗି ଅବା ଯଦି
ସୁସ୍ଥା ହୁଏ ଅଭାଗିନୀ । କିନ୍ତୁ ଲୋ ଭଗିନି !
ଅମୃତେ କି ମୃତ ହୁଏ ପୀରତି-ଆମୟ ?
ତପୋବନେ ଯାପି ମୋର ସମସ୍ତ ଯୌବନ,
ଚିର କୋଳାହଳମୟ ରକ୍ଷରାଜ ସଭା
ନ ଲାଗିଲା ରୁଚିକର । ତେଣୁ ସିନ୍ଧୁବକ୍ଷ
ଉଲ୍ଲଂଘି ଏ ମହାରଣ୍ୟେ, ଆସିଲି ପଳାଇ ।
ଭାଇପାଶେ ନିତି ନିତି ବହୁ ଦେବଯୁବା
ଆସନ୍ତି ଦର୍ଶନ ଆଶେ; କିନ୍ତୁ କାହା ମୁଖେ
ନ ଦେଖିଲି କିଶୋରର ବଦନ-ସୁଷମା !
ଏ ଅରଣ୍ୟେ, ପୁଣି କେତେ ଋଷି ତପୋବନେ
ବୁଲିଲି ଆକାଂକ୍ଷାଭରେ; ନ ପାଇଛି କିନ୍ତୁ
ସେ ରୂପ ଲାବଣ୍ୟମୟ ଯୁବା ମୁଖ କାହିଁ !
ସ୍ମୃତିକି କେବଳ ସଖି ସାଇତି ଏ ବକ୍ଷେ
ଯାପିଲି ବହୁତ କାଳ, କରିଥିଲି ଇଚ୍ଛା
ସେହିପରି ଯାଇଥାନ୍ତା ବହି ଏ ଜୀବନ
କଳ୍ପିତ ଆମୋଦ ଭୋଗି ସ୍ୱପ୍ନେ ଭାସି ଭାସି,
କିନ୍ତୁ ହାୟ ! ପୁଣି ବିଧି ଛେଚିଲା କଠୋରେ
ବାସ୍ତବତା ରୁକ୍ଷ ଅଙ୍ଗେ, ଚଖାଇ ମଧୁର
ଦେଇଛି ଅଜାଡ଼ି ଶେଷେ ହଳାହଳରାଶି !

———

## ନିକ୍ୱଣ

[ ୧ ]

''ରାଜଦରବାରେ ଅଛି
କବିର ଅଭାବ
ହେ ନଗରବାସି
କେ ଅଛି ହେ ଗାଇପାରେ,
ଜୀବନର ଗୀତି
ଦେଖା କର ଆସି ।
ନୃପତି ଦକ୍ଷିଣ ପାଶେ
ପାଇବ ଆସନ,
ସମ୍ମାନର କଥା,
ପ୍ରତିଦିନ୍ ଗାନ ଗାଇ
ଆଣିବ ମାଣିକ୍ୟ
ଉଜ୍ଜ୍ୱଳିବ ମଥା ।
ମହିଷୀଗଳାର ହାର
ବକ୍ଷେ ପୁଣି ପଡ଼ି
ଶୋଭିପାରେ ଦିନେ,
ରାଜକନ୍ୟା ରାଜପୁତ୍ରେ
ଶିଖାଇବ ଶ୍ଳୋକ
ପ୍ରମୋଦବିପିନେ ।
ପ୍ରମୋଦବିପିନେ ତାଙ୍କ
ହେବ ବସବାସ
କବିସମୁଚିତ,
ଅ-ବସନ୍ତେ ବସନ୍ତର
ତରଳ ସୁଷମା
ଯହିଁ ବିରାଜିତ ।
ଆସ କେ ଅଛ ହେ ଏଥୁ,
ଘେନ ଏ ପଦବୀ,
ସମ୍ମାନର କଥା''

''ମୁହିଁ ଯିବି ସେ ବିପିନେ
ଯହିଁ ପୁଷ୍ପବଧୂ
ଚିର ହାସ୍ୟରତା ।
ଜଳୁଥାଉ ହୀରା ମଣି
ରାଜଗନ୍ତାଘରେ
ନାହିଁ ଦରକାର,
ରାଣୀ-କଣ୍ଠ-ପୁଷ୍ପମାଳା
ଯଦି ହୁଏ କେବେ
ମୋର ପୁରସ୍କାର ।''

[ ୨ ]

ପ୍ରମୋଦକାନନେ କବି ସୁଖେ କାଳ କାଟେ ହେ
ସୁଖେ କାଳ କାଟେ,
ଜୀବନ-ତରୀଟି ବନ୍ଧା ସୁଖ-ନଦୀଘାଟେ ହେ
ସୁଖ-ନଦୀ ଘାଟେ ।
ଚଇତି ଉଦାସ ବାଆ ବହଇ ସେ ବନେ ହେ
ବହଇ ସେ ବନେ,
ଫୁଟାଏ ବଉଳକଢ଼ି ଅତି ସଂଗୋପନେ ହେ
ଅତି ସଂଗୋପନେ ।
ପ୍ରଭାତେ କୋକିଳ-ବଧୂ ଭାଙ୍ଗେ ତାଙ୍କ ନିଦ ହେ
ଭାଙ୍ଗେ ତାଙ୍କ ନିଦ,
କବିର ବାସନା ତେଣୁ ହୋଇଅଛି ସିଦ୍ଧ ହେ
ହୋଇଅଛି ସିଦ୍ଧ ।
ରାଜପୁତ୍ର ରାଜକନ୍ୟା ସରଗର ଚାନ୍ଦ ହେ
ସରଗର ଚାନ୍ଦ,
ତାଙ୍କୁ ଚାହିଁ କବି ହୁଏ ଆନନ୍ଦେ ବିଦଗ୍ଧ ହେ
ଆନନ୍ଦେ ବିଦଗ୍ଧ ।
କୁଞ୍ଜେ କୁଞ୍ଜେ ବୁଲେ କବି ଖେଳି ତାଙ୍କ ସଙ୍ଗେ ହେ
ଖେଳି ତାଙ୍କ ସଙ୍ଗେ,
ଦିନମାନ ଯାଏ ବହି ବିନୋଦ ପ୍ରସଙ୍ଗେ ହେ
ବିନୋଦ ପ୍ରସଙ୍ଗେ ।
ରାଜଦରବାରେ କବି ଗାଇଥାନ୍ତି ଗୀତ ହେ
ପାଇଥାନ୍ତି ମଣି,

ଫେରୁଁ ପଥେ ଦୀନଜନେ ଦେଇଥାନ୍ତି ଫିଙ୍ଗି ହେ
ହୃଦୟେ କି ମଣି ।
ଏ ଜୀବନ ମିଳେ ଯଦି ଏଇ ଧରାପରେ ହେ
ଏଇ ଧରାପରେ,
କିପାଇଁ ମଣିଷ ନିଜ ଜୀବନେ ଧିକ୍କାରେ ହେ
ଜୀବନେ ଧିକ୍କାରେ ।

[ ୩ ]

''ରାଜପୁତ୍ର,
ପ୍ରାତଃକାଳେ ଆଜି,
ଆସିଥିଲେ ଯେ ଅବଳାରାଜି,
ବୁଲିବାକୁ ପ୍ରମୋଦକାନନ—
ଜାଣିଛ କି ?— କିଏ ସେ ?—ସୁମନ-
ରାଶି ରାଶି ତୋଳି ଗଛୁ ଗଛୁ,
ଗଲେ ଚାଲି ।
ଚାହୁଁ କ୍ଷଣେ ପଛୁ,
ଏକ ବାଳା-ନୟନେ ମୋହର
ଆଖି ମିଶିଗଲା ଡରଡର ।
ଚମକି ମୁଁ କୁଞ୍ଜେ ଗଲି ପଶି
ଆଉ ଚାହିଁବାକୁ ନ ଭରସି
କେ ସେମାନେ ?''
''ମାମା ଆସିଥିବେ,
ଗଛଲତା ଥରେ ଦେଖିଯିବେ,
ସହଚରୀମାନ ସାଥେ ଧରି,
ଯିବେ ବୋଲି ଏ ବନେ ବିଚରି ।''
''ମତେ ଦେଖି କ୍ରୁଦ୍ଧ ହେବେନି ତ ?''
''ଏତେ ନୀଚ ନୁହେଁ ତାଙ୍କ ଚିତ୍ତ''
''ନାହିଁ ନାହିଁ ବୁଝିବ କୁମାର,
ରାଜୋଡ଼ାର କୁଟିଳ ବେଭାର,
ପିଲା ତମେ କି ବୁଝିବ, ଧନ,
ବୁଝ ଦେଖି ରାଣୀ-ମା'ଙ୍କ ମନ ।''

[ ୪ ]

''ମହାଶୟ, ଶୁଣ ସେଦିନ ସକାଳେ
ଆସିଥିଲେ ପାଟଅପା,
ତମକୁ ସଭିଏଁ ଦେଖିଛନ୍ତି, କିନ୍ତୁ
କେହି ତ ନୁହନ୍ତି ଖପା !
ଅପା ପୁଣି ମତେ ପଚାରିଲେ କେତେ
ତମ କଥା, ତମ ରୀତି,
କରୁଥାଅ କିସ ଦିନମାନ, କେଉଁ
କରମେ ବିଶେଷ ପ୍ରୀତି ?
କି କି ବହି ପଢ଼ କି ଅଭାବ ତବ
ଆଉ କିଏ ଅଛି ଘରେ ?
ପିଲାଦିନୁ ତମେ ବଢ଼ିଆସିଅଛ
କାହାର ମଙ୍ଗଳ କରେ ?
କବିତା ଲେଖୁଛ, ରଖ ତ ସାଇତି ?
ନ କର କି ଯଶ ଆଶା ?
କରୁଛ ତ ଇଚ୍ଛା ହେବାକୁ ଅମର
ମଣ୍ଡାଇ ନିଜର ଭାଷା ?
କେ ତୁମରେ କବି ଆଦର, ସଂଖୋଳା
ପରାଣୁ ଦିଅଇ ଢାଳି,
କାହାରି ପରାଣ ବଥାଏ କି କ୍ଷଣେ
ତମ ଶୁଭାଶୁଭ ଭାଳି ?
ଅଥବା କେ ଅଛି ତୁମର ପୀରତି-
ଭାଜନ ଏ ଧରାପରେ ?
କହିଛନ୍ତି ଅପା, ବୋଲ ମହାଶୟ,
କହିବି, ଫେରିଲେ ଘରେ ।
କହିଛନ୍ତି ପୁଣି କବିତା କେତୋଟି
ଦେଖିବେ ଦିଅ ମୋ ହାତେ,
ଇଚ୍ଛା ଯଦି ଥାଏ,- ନ ରଖି ପାଖରେ
ଫେରାଇବେ ସାଥେ ସାଥେ ।''

[ ୫ ]

''ହେମାମଣି, ଆହା ପଚାରିଛ ପରା
କାହାର କରୁଣ କରେ,
ଏ ଜୀବନ ମୋର ବଢ଼ିଆସିଅଛି
ଏତେ ଦିନ ଧରାପରେ ?
ହାୟ ଦୟାମୟି ଯିବ କି ପରତେ,
ମୋର ବୋଲି ନାହିଁ କେହି,
ଜାଣିନି ଜୀବନେ ଆଦର ଶରଧା
ଏ ଦୁଃଖୀ, କନକଦେହି !
କେହି ତ କେବେହେଁ ଶୁଭାଶୁଭେ ମୋର
ନୟନୁ ଢାଳିନି ଲୁହ,
ତମ ହୃଦେ କିପାଁ ମୋପାଇଁ ସରଳେ,
ଉଠେ ଏ କରୁଣା-ସୁଅ ?
ଏତେ ଦିନ ଗଲା ବହି, ମୋ ଜୀବନ
ଆଦର ସଂଖୋଳା ମତେ,
ଭ୍ରମେ ସୁଦ୍ଧା କେହି ତମ ପରି ହେମା
କରିନି ତ ଏ ଜଗତେ !
ଅପରିଚିତ ମୁଁ କ୍ଷଣେ ଦେଖା ସିନା
ତଥାପି ଏ ସମାଦର,
ଜାଣେନା ପାଖର ଲୋକ ପରିଜନ
ପାଉଥିବେ କି ଆଦର !''

[୬]

''କବି ହେ,
ହେମା ଦେଇଛନ୍ତି ଏ ସୁମନମାଳା
ଘେନ ହେ ଗଳେ,
ସରଳ ହିଆର ପ୍ରୀତି-ଉପହାର
ଧର ହେ କରେ ।''
''ଦୀନ କବି ପାଇଁ ହେମାଙ୍କ ଆଦର
କିପାଇଁ ଏତେ ?
ପରିଚୟ ଖାଲି କ୍ଷଣ ପାଇଁ ସେହି
କାନନ-ପଥେ !

ଏତେକ ମାନର ଭାଜନ ନିକି ମୁଁ
ସତେ ହେ ଜେମା ?
ଢାଳୁଛ ଦୟା ଯେ କେତେ ଅତୀତର
ପ୍ରଣୟୀସମା ।
ଅକଳପିତ ଏ ଜେମାମଣି ଦୟା
କବିର ପରେ,
କେଉଁ ଦେବତାର ପରସାଦ ଏ ଯେ
ମୋ ପରେ ଝରେ !
ମାଳା ଦେଇ ଜେମା କହିଛନ୍ତି କିଛି
ତୁମରେ ଦୂତ ?"
"କହିଛନ୍ତି ଖାଲି ଘେନିବାକୁ ଗଳେ
ଭାରତୀ-ସୁତ ।"

[ ୭ ]

"ପଥର ଭିଖାରି ମୁହିଁ ଯେ କବି
ବିତ୍ତ-ହୀନ,
ବକ୍ଷେ ଥିବା ଏ ବୀଣାରେ ମୋର
ଜୀବନ ଲୀନ ।
ଚମତ୍କାର ! ଏ ଜେମାର ଦୟା
କବିର ପରେ,
କେଉଁ ଦେବତାର ପ୍ରସାଦ ଏ ଯେ
ତା'ପରେ ଝରେ !
କିପାଇଁ ପ୍ରଣୟ ଢାଳେ ସେ ରାଜ-
ବାଳା ହେ ଦୂତ ?"
"ତୁମ ସଂଗୀତେ ଆଜି ଯେ କବି
ଚିତ୍ତ ଲୁଟ ।
ତୁମ ଗାନ ଗାଏ ମୁଗ୍ଧ ପ୍ରେମୀ
ପ୍ରିୟାର କୋଳେ,
ତୁମ ଗାନ ଗାଏ କେଦାରେ ଚଷା
ଆମୋଦ-ଭୋଳେ ।
ପଥେ ପଥେ ଜୟ, ଗଗନେ ଉଡ଼େ
କୀର୍ତ୍ତି-କେତୁ,

ସବୁ ହିଆ ସାଥେ ତମ ଜୀବନର
ପାତିଛ ସେତୁ ।
ପ୍ରାସାଦ-କକ୍ଷେ ବାତାୟନ ଦେଇ
ତୁମରି ଗାନ,
ଦକ୍ଷିଣା-ବତାସ- ହିଲ୍ଲୋଳେ ଦିନେ
ପାଇଲା ଥାନ ।
ଗାନରସେ ଜେମା ଅତି ଉଭଳା
ସ୍ନେହାର୍ଥିନୀ,
ନିଜ ହାତ-ଗୁଁଥା ଦେଲେ ଏ ହାର
ବଂଧୁ ମଣି ।
କର ନା ନିରାଶ, ଏ'ହାର ନାରୀ
ତରଳ ହିଆ,
ପଠାଇ ଦେଇଛି କାତରେ କବି-
ମମତା-ନିଆ ।

[ ୮ ]

ମାଳା ପରେ ଦେଇଛଁତି ଭାଷା,
ଆଜି, ଜେମା, ସଖ୍ୟ କରି ଆଶା !
କି ରହସ୍ୟ !
ମୁଁ ବୟସ୍ୟ—
ହେବି ବୋଲି ଜେମା ଦେଲେ ଭାଷା !

ଅସମ୍ଭବ, ଅସମ୍ଭବ ଏ ଯେ,
ରାଜଜେମା, ଅଭିଜାତା ସେ ଯେ,
ମୁଁ ଯେ ଦୀନ
ଗୁଣହୀନ,—
ଏଥେ କେ କି ସ୍ନେହାଦର ହେବେ !

ଏଇ ତ !—ଜେମାର ହାତଲେଖା—
"କବି ମତେ ନ କର ଉପେକ୍ଷା,"
ଏ କି ସତ ?—,
ଅସଙ୍ଗତ !
ମାୟା ପରି ମତେ ଯାଏ ଦେଖା !

ମୋର କହ କି ଅଛି ହେ ଦୂତ,
ଯାହା ପାଇ ତୋମା ହେବେ ପୂତ,
କି ଜଞ୍ଜାଳ !
ଅସମ୍ଭାଳ
ତୋମା, ଲାଭେ ମୋହ ସ୍ନେହାମୃତ ?

ପତ୍ର-ବାହି, କି ଦେବି ଉତ୍ତର ?
ତୋମା ପାଶେ ଭାଷା !—ଗୁରୁତର
ବ୍ୟବସାୟ !
ମୋତେ ହାୟ !
ବଡ଼ଲୋକେ ଚିରକାଳ ଡର !

ରାଜକୁଳ ! ତୋମାଙ୍କ ମହତ !
ମୋର ବୁଦ୍ଧି ଖାଲି ପୋଥିଗତ !
କଥା ଭାଷା
ବେଶ, ଢାଁଶା,
କାହିଁ ମୋର ରାଜ-ଅନୁଗତ ?

ବଡ଼ ଲାଜ ଲାଗେ, ଫେର୍ ଆଜି,
ଭାଷା ଦାନେ, ମନ ନୁହେଁ ରାଜି
ଯାଅ ଦୂତ
ଅଦଭୁତ
ମୋ ଜୀବନେ ଏ ଘଟଣାରାଜି !

X X X

ଆଚ୍ଛା, ଆଚ୍ଛା, ରହ ରହ କ୍ଷଣେ;
ଅପରାଧୀ ସାଜି କି କାରଣେ !
ଏଡ଼େ ପ୍ରୀତି,
ଏ ବିନତି,
ଏଡ଼େ ଆଶା ଭାଙ୍ଗିବି କେସନେ !

[ ୯ ]

"ପୂଜନୀୟେ ତବ ଚରଣେ ପ୍ରଣମି
ଲେଖୁଛି ଭାଷା,

କବି-ସଖ୍ୟ ପାଇଁ କହିବ କି କିପାଁ
ଏତେକ ଆଶା ?
ଆପଣଙ୍କ ପତ୍ର ପାଇଛି,— ଶିରରେ
ନେଇଛି ତୋଳି,
ଆପଣଙ୍କ ହାର-ସୁମନ-ରଜକୁ
ହୋଇଛି ବୋଲି ।
ଭାବେ ଭାଗ୍ୟବାନ ମୋ ଭଳି ଆଉ କେ
ଅଛି କି ଦେଶେ,
ରାଜଜେମା ଯା'ରେ ବିତରେ ପ୍ରସାଦ
ଅନ୍ନଦାବେଶେ !
ଅନୁଗ୍ରହ ଦେବୀ, ଥାଉ ଚିରଦିନ
ଏ ଦୀନ କବି,
ଯାପୁଥିବ ଦିନ ଆନନ୍ଦେ, ତୁମର
ଚରଣେ ସ୍ତବି ।
ମୋଠାରୁ ପ୍ରଣୟ ?— ସେ କି କଥା ଜେମା,
ଦାସାନୁଦାସ,
ଏ କବି ତୁମର, ସେବକର ମାନ
ତାହାରି ଆଶ ।
ରାଜକନ୍ୟା ତମେ, ପଥ-ଭିକାରି ମୁଁ
ଜାଣ ତ ଦେବି,
କେଡ଼େ ଗଉରବ ହୁଅନ୍ତା ପାରିଲେ
ଚରଣ ସେବି !
ଏଡ଼େ କଥା ଜେମା, କହନ୍ତି କହନ୍ତି
ହସିବେ ଜନ,
ଦୀନ-ହୀନ ଏକ ପୁଣି ଜେମାଙ୍କର
ହୃଦୟ-ଧନ !
ବିଦୁଷୀ ତ ତମେ, କହିଲି ବହୁତ,
କରିବ କ୍ଷମା,
ମିନତି, ଏ ଶିରେ ଅଯଥା ଆଦର
ନ ଢାଳ ଜେମା !

[ ୧୦ ]

ଏ ଯାଏଁ ଯେ ନ ଫେରିଲା ଦୂତ !
ଗତ ସଂଧ୍ୟା ଥିଲି ଲେଖି
ଗଲାଣି ଦିନେ ଅପେକ୍ଷି
ଚାହିଁ ପଥ ଅବିରତ
ବିରକତ ମୁଁ ତ !

ନାହାନ୍ତି କି ପାଇ ରୂପ-ରାଣୀ !
ଅବିଶ୍ୱାସୀ ହୋଇ ଭାଷା
ଦୂତ, ଆନେ ଦେଲା,—ଆଶା—
ଶିରେ ମୋର, ତେବେ ଘୋର
କି ବିପଦ ଜାଣି ?

ଅବା, କ୍ଷେମା କଲେ ଅଭିମାନ ।
ରାଜ-ମାନ ହାନି ଭଳି
କିଛି କି ଲେଖିଛି ଛଳି ?
ନା ତ !—ଅବା ନାରୀ-ଗଭା
ନ ଘେନୁ ଯାଚନା ତାର
ନେଲା ଅପମାନ !

ହୋଇପାରେ ଆଉ କି କାରଣ ?
ହେ ଈଶ୍ୱର, କିପାଁ ମତେ
ଚଳାଅ ଏ ନୂଆ ପଥେ ।
ଶୁଭକରେ ବିପଦରେ
କର ହେ ବାରଣ !

ମିଥ୍ୟା ! ମିଥ୍ୟା ! ଆଶଙ୍କା ମୋହର,
ନାହିଁ କ୍ଷମା ଏଥି ପାପ,
ବିଧାତାର ଅଭିଶାପ,
ଏ ଜୀବନେ କି କାରଣେ
ପଡ଼ିବ ?— ଏ ସମ୍ବନ୍ଧ ତ
ପୁଣ୍ୟ ପ୍ରଣୟର !

ତେବେ, ତେବେ, ବିଳମ୍ବ କିପାଇଁ ?
କ୍ରୁଦ୍ଧ କ୍ଷେମା ? ଓଃ, କିଜାଣି !
କି ବିପଦ ନିଜେ ଆଣି !

X X X

ଆରେ, ଆରେ, ପଥ ଧାରେ
ଏ କିଏସେ ?– ସତେ, ସତେ
ଦୂତ ଆସେ ଧାଇଁ ?

[୧୧]

ପ୍ରଣାମ ଚରଣେ ତବ, କବିବର, ଏଇ ଶେଷ ଥର,
ଦୌତ୍ୟ ମୋର ଏଇତକ,—ଫଳ ଏଇ ପତ୍ରବହନର !
କି ଅନ୍ୟାୟ ! ମୁଁ ପୁଣି ହେ କାମେ ମୋର କରିଅଛି ହେଳା,
ତାଙ୍କ କଥା ଭଲରୂପେ ନ କହି ମୁଁ କରିଛି ବଖେଡ଼ା !
କେତେ ଯେ ତାଡ଼ନା ମତେ– ଆଜି ଯାଏ ନଥିଲି ମୁଁ ଶୁଣି,–
ବୋଲନ୍ତି ସେ– "ଦୂତ ତମେ ମୋହ ପାଶେ ଅବିଶ୍ୱାସୀ ପୁଣି !
"ମୋ କାମରେ ଅବହେଳା କର ତମେ,– ଏତେ ଶିଥିଳତା !
ବାବଦୂକ,– ଏତେବେଳେ ନ ଆସୁଛି ମୁଖେ ଦୁଇ କଥା !
ତା ନହେଲେ ସେ କିପାଇଁ କରୁଥାନ୍ତେ ଏତେ ଅନପେକ୍ଷା !
ମଣନ୍ତେ କିପାଇଁ ନିଜେ ଏତେ ନୀଚ, ହୀନ ମୋ ଅପେକ୍ଷା !
ବୁଝିଅଛି ମୁହିଁ ତାଙ୍କୁ ଭଲକରି– ବିଢ଼ିଛି ହୃଦୟ,
ଅଗାଧ, ପ୍ରଶାନ୍ତ ସେ ତ—ନିରବଧି ଅମୃତ-ଆଶୟ !
ତମେ ଦୂତ କହିନାହଁ ଭଲକରି ମୋ ମନ-ଯାଚନା,
ବକ୍ଷେ ମୋର ତାଙ୍କ ପାଇଁ କିବା ପୂଜା !– କରିଛ ଛଳନା ।"
ଏଇପରି ପୁଣି ପୁଣି– କେତେ କବି କହିବି ସେମାନ,
ବାରମ୍ବାର ବୋଲୁଛନ୍ତି– "କହିବ ତ ଦେଇ ମୋର ରାଣ,
ନିଜକୁ କେବେ ସେ ନୀଚ ନ ମଣିବେ ମୋ ପଦବୀଠାରୁ
ତାଙ୍କ ସଖ୍ୟ-ଶ୍ରଦ୍ଧା ଆମ ବହୁ ଭାଗ୍ୟ,—ସେ ଚରଣ ଚାରୁ
ପାରିଲେ ପୋଛି ମୁଁ କେବେ ନେତ୍ରଜଳେ, ହେବି ଭାଗ୍ୟବତୀ
ମୋର ଦାସ ହେବା ପାଇଁ କିପାଁ ତାଙ୍କ ବଳୁଅଛି ମତି ?"
ତୁମର ସେ ପତ୍ର କବି, ବକ୍ଷେ ଚାପି ଧରିଛନ୍ତି ସଦା
କରୁଛନ୍ତି ଅଶ୍ରୁସିକ୍ତ, ଚୁମୁଛନ୍ତି କେବେ ବା ପ୍ରମଦା !
ଏ ଚିଠି ଦେଲେକ ପୁଣି, ତିନି-ଚାରି-ଥର-ଚିରି ଲେଖା
କହିଛନ୍ତି,—ଉତ୍ତରକୁ କରିଛନ୍ତି ନିରତ ଅପେକ୍ଷା ।
ଆସୁଥାଏ– ଚାହିଁଥାନ୍ତି, ପଥେ ମୋର ବକ୍ଷେ ବାରି ଭରି,
କି ମାୟା ରଚିଲ କବି ! ପାଗଳିନୀ ସେ ଯେ ରାଜେଶ୍ୱରୀ ।"

[ ୧୨ ]

''ପୁଷ୍ପମାଳା ସହ କବି,
ପଠାଉଛି ସମଗ୍ର ହୃଦୟ,
ବକ୍ଷେ ତବ ହେଉ ସ୍ଥାନ,
ଏଇ ଅନୁରୋଧ, ସ୍ନେହାଶୟ ।
ତବ ସଖ୍ୟ ମାତ୍ର ଚାହେ
ଆଜି ମୁଁ ଯେ ଏ ତିନି ଭୁବନେ,
କବି ସିନା ପାରେ ବୁଝି
ସ୍ନେହ-କ୍ଷୁଧା ତରୁଣ ଜୀବନେ ?
କି ଭାଷାରେ ଜଣାଇବି
କି ବେଦନା, କି କ୍ରନ୍ଦନ ବାଜେ
ତମ ଲାଗି ଏ ବକ୍ଷରେ,
ନାରୀ ତାହା କି କହିବ ଲାଜେ ?
ଦିନମାନ ତମ ଛବି
ଆଖି ଆଗେ ଯାଉଅଛି ଭାସି
ଷୋଳଘଡ଼ି ଏ ମରମେ
ବାଜି ରହେ ତବ କଥାରାଶି ।
ଶୁଏ ଅବା, ପଢ଼େ ଅବା,
ବ୍ୟସ୍ତ ଅବା ଥାଏ ଆନ କାମେ,
ତମ ମୁଖ ଦିଶିଯାଏ,
ତମ କଥା ଶୁଭେ କାନେ କାନେ ।
ବସିବାର, ଚାଲିବାର,
କହିବାର ଯେତେ ତବ ଛବି,
ଗୋଟି ଗୋଟି ପ୍ରତିଫଳି-
ଯାଏ ମନେ ସ୍ପଷ୍ଟ ହୋଇ, କବି ।
ସେହିମାନ ଭାବି ଭାବି
ନିଶୀଥରେ ନିଦ୍ରା ନାହିଁ ମୋର,
ଦିନଯାକ ଆଖି ଭରି
ବହେ ଅଶ୍ରୁ, ଦେଇ ବକ୍ଷେ ଦୋଳ ।
ପ୍ରଥମ ଜୀବନ ମୋର,
ଏ ଯେ ମୋର ଆଦ୍ୟ ଆକର୍ଷଣ,

ଜାଣି ତ ନ ଥିଲି କବି,
ପ୍ରୀତି ହୁଏ ଏତେ କଦର୍ଥନ ।
ଅଗ୍ନି ନାହିଁ, ତେବେ ମଧ,
ଦେହ ମନ ପୋଡ଼ିଯାଏ ଜଳି,
ବକ୍ଷେ ବାଜେ ଗୁରୁବ୍ୟଥା
ଥରେ ଥରେ ଶେଲଘାତ ପରି ।
ଏ ନବ ବିକ୍ଷୋଭ କବି,
ନାହିଁ ପାରେ ବେଳେବେଳେ ସହି;
ଏ ଆମୟ,—ସଖ୍ୟ, ପ୍ରୀତି,
ଦେଇ କବି ନେଇଯାଅ ବହି ।
ନିଜକୁ କିପାଇଁ ଏଡ଼େ
ସାନ ବୋଲି ମଣ ଗୁଣଧର,
ସେ କଥା ଭାବିଲେ ଚକ୍ଷୁ
ହୁଏ ମୋର ଅଶ୍ରୁ-ଜରଜର ।
ବିଶାଳ ଜଗତେ କବି,
ତୁମକୁ କେ ନ ଦିଅନ୍ତୁ ପ୍ରୀତି,
କୋଟି କୋଟି ଲୋକ ମଧେ
ଜଣେ ହେଲେ ନ ଗାଉ ହେ ଗୀତି ।
ମୋର ଏ ଅନ୍ତରେ କିନ୍ତୁ
ତୁମେ କବି, ରାଜରାଜେଶ୍ୱର,
ତମେ ମୋର ଶ୍ରେଷ୍ଠ ଧନ
ସୁଖ, ଦୁଃଖ, ଦେବତା ଈଶ୍ୱର ।
ଏ ତରୁଣ ବକ୍ଷେ ମମ
ପାତିଅଛି ତୁମ ସିଂହାସନ,
ଚକ୍ରବର୍ତ୍ତୀ ହୁଅ ତହିଁ,
ଶୁଣ ମୋର ଗୂଢ଼ ନିବେଦନ ।
ତୁମଠାରୁ କେଉଁ ଗୁଣେ,
କହ ମୁହିଁ ବଡ଼ ହେ ଦେବତା,
ରାଜକୁଳ, ଧନ, ମାନ,—
ହାୟ, ସେ'ତ ଦୁଇଦିନ କଥା !
ତୁମର କବିତା କିନ୍ତୁ
ଗୀତ ହେବ ଯୁଗଯୁଗାନ୍ତର

ତୁମ ଲାଗି ହେବ କ୍ଷୁବ୍ଧ
ଲକ୍ଷ ଲକ୍ଷ ଲୋକର ଅନ୍ତର,
ଲକ୍ଷ ଲକ୍ଷ ବର୍ଷ ପରେ ।
ଏହାଠାରୁ ଅଧିକ ସମ୍ମାନ
ପାଇବେ କି ରାଜା, ଧନୀ,
କେଉଁ ମାନୀ ତୁମରି ସମାନ ?
ନିଅ ମତେ ସୁନିବିଡ଼େ,
ତବ ପ୍ରାଣେ ଦିଅ ହେ ମିଶାଇ,
ତୁମ ମୋହ ମଧ୍ୟେ ଯେତେ
ଭେଦାଭେଦ ଦିଅ ହେ ଲିଭାଇ ।
ତୁମର ଚରଣ ତଳେ
ଆଶ୍ରା ଯଦି ଲଭେ କେଉଁ ଦିନ,
କୃତାର୍ଥ ବୋଲିବି ନିଜେ
ରାଜକୁଳେ ଜନମ ଲଭିଣ ।
ଯେଉଁ ଦିନୁଁ ତମ ପରେ
ପଡ଼ିଛି ଏ ଦୃଷ୍ଟି ନୟନର
ସେହି ଦିନୁ ଫେରାଇଲି,
ଇଚ୍ଛାକରି ଗତି ଜୀବନର ।
ପ୍ରଥମ ସାକ୍ଷାତେ ମୁଁ ଯେ
ହେଲି ମୁଗ୍ଧ ରୂପର ଗୌରବେ,
ଆଜି କିନ୍ତୁ ଆକୁଳିତ
ହିୟା ତବ ସୁଯଶ ସୌରଭେ ।
ସେ ଦିନ ଥିଲ ହେ ତୁମେ
କଳପିତ ପ୍ରଣୟୀ ଜେମାର,
ଆଜି ତମେ ଗୁରୁ ମୋର,
ଦାତା ମୋର ସିଦ୍ଧି-ସାଧନାର ।
ତୁମେ ମୋ ଦେବତା ଆଜି,
ମୁଁ ହେ ତବ ଦୀନା ପୂଜାରିଣୀ,
ଅର୍ଘ୍ୟ ମୋର ଘେନ କବି,
ପୂତ ହେଉ ଏ ହତଭାଗିନୀ ।
ଜାତି, କୁଳେ କିବା ଅଛି ?
ସମସ୍ତଙ୍କ ହୃଦୟ ସମାନ

ସୁଖ, ଦୁଃଖ, ଅନୁଭୂତି,
ପ୍ରେମ, ପ୍ରୀତି, ସଂଭୋଗ,—ଏମାନ,
ପ୍ରାଣେ ପ୍ରାଣେ ବିଭେଦ କି
ଅଛି, କବି, ଏ ଧରଣୀ ପରେ ?
ତେବେ ଆଉ କି ପ୍ରଭେଦ
ରାଜଜେମା-କବିଙ୍କ ଭିତରେ ?
ବିଦ୍ୱାନ୍ ତୁମେ ତ କବି
ଶିଖାଇବ କିସ ଏ ଅବଳା
ମୋ ଯାଚନା ଘେନା ହେଉ,
ଆକର୍ଷଣ ହେଉ ମୋ ସଫଳା ।
ଆଜିଠାରୁ ଭାଙ୍ଗିଦିଅ
ରାଜଜେମା-କବିର ପ୍ରଭେଦ,
ପ୍ରଣୟହିଁ ହେବ ଆମ
ଏକୀଭୂତ ଜୀବନର ବେଦ ।
ଆଜିଠାରୁ ନୁହେଁ ମୁହିଁ
'ପୂଜନୀୟା', 'ଶ୍ରୀମତୀ' ବା 'ଦେବୀ'
କହ ଖାଲି 'ସଖୀ' ବୋଲି,
ସେଇ ବର ଶିରେ ବହିନେବି ।
ତୁମେ ମଧ ଆଜିଠାରୁ
ନୁହ ଆଉ 'କବି', 'କବିବର'
ତୁମେ ମୋ' ପରମଧନ,
'ସବୁ' ଏଇ କ୍ଷୁଦ୍ର ଜୀବନର ।
ବହୁଦୂର ଗଲି ବନ୍ଧୁ,—
କ୍ଷମାକର କ୍ଷମାକର ମତେ,
ଶ୍ରୀହସ୍ତର ଭାଷା ପାଇଁ
ଚାହିଁ ମୁଁ ଯେ ରହିଲି ନିରତେ ।''

[ ୧୩ ]

''ତୁମେ   କାହିଁକି ମୋ ଆଶେ ଚାହଁ ପ୍ରେୟସି,
ହୃଦୁ   ଏତେ କଥା ଖୋଲିଦିଅ ଭରସି ।
ପ୍ରାଣ   ଢାଳିଦିଅ ମୋ ଚରଣ ତଳରେ
ଅନୁ-   ରାଗ ଗୋ ଦେଖାଅ ଏତେ ଛଳରେ ।

ମମ ପଦ ଧରି କହ "ମତେ ନ ତେଜ,
ତବ ଚଳନ ପଥରେ ହେଉ ମୋ ଶେଯ,
ପଦ- ଧୂଳି ସହ ପାଉଥିବି ପରଶ
ପଦ- ଆଘାତରେ ଲଭୁଥିବି ହରଷ ।"
ଜାଣ କିଶୋରି, ମୁଁ ଅତି ହୀନୁ ହୀନ ଗୋ
ପଉ- ରୁଷ ମୋ କ୍ଷୀଣରୁ ଅତି କ୍ଷୀଣ ଗୋ,
କିଛି ଗଉରବ ନାହିଁ ମୋର ଭୁବନେ
କିଛି ସଉରଭ ନାହିଁ ମୋର ଜୀବନେ,
ମାଥେ ବିଜୟ-ମୁକୁଟ ନାହିଁ ଜଳେ ଗୋ
ସାଥେ ଜୈତ୍ର-କେତନ ନାହିଁ ଚଳେ ଗୋ,
ତୁମେ କାହିଁକି ମୋ ପାଶେ ଆସ ପ୍ରେୟସି,
ହୃଦୁ ଏତେ କଥା ଦିଅ ଖୋଲି ଭରସି ?
ଭ୍ରମ ବୁଝିନିଅ ବୁଝିନିଅ ପ୍ରେୟସି,
ହୃଦୁ ଏତେ କଥା ନ କହ ଗୋ ଭରସି ।
ନାହିଁ ଜାଣିଛ କଠିନ ଏଇ ଧରାରେ
ଧରା- ଜୀବନ ନିଠୁର, ହୃଦ-ଜ୍ୱାଳାରେ ।
ତମେ ବିକଚ ଅମଳ ରାଜ-ସୁମନ,
କୀଟ ହୋଇ କି ନାଶିବି ତାର ଜୀବନ ?
ତମ ପାଇଁକି ନୁହେଁ ଏ ପଂକ ପଥ ଗୋ
ବଢ଼- ଦାଣ୍ଡେ ଫେରାଅ ତମ ରଥ ଗୋ ।"

[ ୧୪ ]

ପତ୍ର ଦେଇ କବି ବସି ଭାବେ-
"ପ୍ରେମ କରେ କି ନିବିଡ଼ ଭାବେ,
ଏ ବାଳିକା,—ନିତାନ୍ତ କିଶୋରୀ,
ନ ଛାଡ଼ିଛି ଚପଳତା ଗୋରୀ ।
ପ୍ରଭାତରେ ସେଇ ଥରେ ଦେଖା
ତରତର ବିଜୁଳିର ରେଖା ।
ତେବେହେଁ ତା ଲାଗିଛି ନୟନେ
ଭାସିଯାଏ ସେ ରୂପ ଏ ମନେ ।
ପ୍ରାଣେ ଜାଗେ ଗଭୀର ପିପାସା,

ମିଶିବାକୁ, ଦେଖିବାକୁ ଆଶା,
ଚିରଦିନ ପାଖେ ପାଖେ ବସି
ହୃଦେ ହୃଦେ ପ୍ରଣୟ ବରଷି,
ଯାପିବାକୁ ବସି ନିଶି ଦିନ
ମୁଖେ ମୁଖେ କରି ନିରୀକ୍ଷଣ,
ପଢ଼ି ପଢ଼ି ନୟନେ ନୟନେ,
ପ୍ରାଣକଥା । ଶୟନେ ସପନେ
ପରସ୍ପରେ ଦେଇ ପ୍ରେମପ୍ରୀତି
କାଟୁଥାନ୍ତି କାଳ ଗାଇ ଗୀତି !
ସରଳା ସେ, ହାୟ, ନ ଭାବିଛି
କ୍ଷଣେ ହେଲେ, କି ବିପଦ ଅଛି
ଏ ନୂତନ ପ୍ରଣୟର ପଥେ !
ଅଭିଶାପ ଦେଉଥିବ ମତେ,
କହୁଥିବ ଅବା ମୁଁ ଦାରୁଣ
ସ୍ନେହହୀନ, ରୁକ୍ଷ, ଅକରୁଣ,
କରେ ଯା ତା' ଉତ୍ସାହେ ବାରଣ,
ଅଗ୍ରେ ଦେଖି ଭୟର କାରଣ ।
ଦେଇ ହୃଦୁଁ ପ୍ରଣୟର ଧାର
ଢାଳି ଦେଇ ଯାହା କିଛି ତା'ର
କିପାଇଁ ସେ ସରଳା କିଶୋରୀ
ଯାତନାରେ ହେବ ଏତେ ଘୋରି ?
ଅପରାଧ କରିଛି ମୁଁ ସତେ
ଅନପେକ୍ଷା ଦେଇ ପତ୍ରଗତେ,
ସତେ କେଡ଼େ ଅପକର୍ମ କଲି
ସୁକୁମାର ଫୁଲେ ଦେଲି ଦଳି
ରୁକ୍ଷ ନଖେ ।
ନା, ନା, ଏଇ ଥର
ଖୋଲି ଦେବି ଏ ଦୀନ ଅନ୍ତର ।
ଯେ ବିପଦ ଆସୁ, ଯଦି ଆସେ,
ତୋମାରେ ମୁଁ ନେବି ବକ୍ଷପାଶେ ।

[ ୧୫ ]

''ବେଶୀ ମୁଁ କହିବି କିସ ଜୀବ-ଜୀବନ''
—କହେ ଜେମା ତା ଉତ୍ତରେ— ''ସବୁ ଦେଲି ପଦତଳେ
ବିଚାରି କର ହେ ଯାହା ଦିଶେ ଶୋଭନ ।
ଅପବାଦ ଭୟ ମତେ ଦେଖାଅ ସଖା,
ତୁମର ଚରଣତଳେ ସ୍ଥାନ ଯଦି ପାଏ କାଳେ
କୋଟି ଅପବାଦ ଆଣିପାରେ କି ଦକା ?
ତୁମର ପ୍ରଣୟ ପାଇଁ ଦେଲି ଜୀବନ,
ନିଅ ବା ନ ନିଅ ମତେ ବଞ୍ଚିଥିବି ଏ ଜଗତେ
ତୁମ ଛବି କରି ସଖା ଅବଲମ୍ବନ ।''

[ ୧୬ ]

''ଦୈନ୍ୟେ ଦହନା ହୃଦୟ କିଶୋରି,
ଆଉ ଗୋ ମୋହରି ପାଇଁ,
ଅର୍ଘ୍ୟ ତୁମର ଅତି ମହାର୍ଘ୍ୟ,
ଭାଗ୍ୟବାନ ମୁଁ ପାଇ ।
ଅଞ୍ଜଳି ପାତି ନେଲି ସୁନ୍ଦରି,
ତୁମର ପ୍ରଣୟ-ଅନ୍ନ
ଭୁଞ୍ଜିବି ବସି ତମ ସଂଗତେ
ପରମାମୋଦମଗ୍ନ ।
ମାଧବ ଜ୍ୟୋତ୍ସ୍ନା ପରି ହସି ହସି
ଆସ ଗୋ ମୋହର କୁଞ୍ଜେ,
ବିକଶ ମୋ ପୁରେ, ବିକଶେ ଯେସନେ
ଶଶି ନକ୍ଷତ୍ର-ପୁଞ୍ଜେ ।
ଆସ ପ୍ରେମଶୀଳେ, ମୁଛ ଲୋତକ
ପାଶୋର ଦୈନ୍ୟ ଦୁଃଖ,
ସକଳ ବିପଦ ସୁଖ ହେବ ମୋର
ନିରେଖି ତୁମର ମୁଖ ।''

———

# ଶୁଭ-ଦୃଷ୍ଟି

[ ୧ ]

ପମ୍ପା ସର ନୀଳ ନୀରେ ବିକଚ-ଯୌବନା
ଉଲୂପୀ ନାଗେଶକନ୍ୟା କରେ ଜଳକ୍ରୀଡ଼ା ।
ସଙ୍ଗେଛନ୍ତି  ସହଚରୀ ରୁଚିର-ହାସିନୀ
ଉପହାସ-ପରିହାସ-ବିଳାସ-କୁଶଳା,
ନବୀନ-ବୟସୀ ସର୍ବେ; ସ୍ୱର୍ଣ୍ଣ-ଦେହ-ଲତା
ଅଳସେ ମେଲାଇଦେଇ ତରଙ୍ଗିତ ଜଳେ
ତିଳପୁଷ୍ପ-ନାସାପୁଟ ଫୁଲାଇ ସବେଗେ
ସୌଗନ୍ଧିକ ଗନ୍ଧସୁଧା କରୁଛନ୍ତି ପାନ ।
ନାଗେନ୍ଦ୍ର ନନ୍ଦିନୀ ଉଭା ଆକଣ୍ଠ ସଲିଳେ ,
ବିଭାବରୀ ଛାୟା ଭେଦି ଉଷା-ବିଭା ସମ
ଅଥବା ଶ୍ୟାମଳ ବୃନ୍ତ -ଆବରଣ ଠେଲି
ଉଠୁଛି ସ୍ଫୁଟନୋନ୍ମୁଖୀ କୁସୁମ କଳିକା ।
ଚଉପାଶେ ଘେରିଛନ୍ତି ସହଚରୀବାର,
ପ୍ରବାଳ ପରିଧି ମଧ୍ୟେ ମାଣିକ୍ୟ ସେ କିବା ?
ଅଥବା ବିକଚ ଶତ କୋକନଦ ଦଳେ
ଆଶ୍ୱିନ ପ୍ରଭାତ ସ୍ଫୁଟ ସରସିଜ ସେ କି ?
ଉଭିନ୍ନଯୌବନା ତନ୍ୱୀ ନାଗେଶକୁମାରୀ,
ଯା'ର ତନୁଶୋଭା ଦେଖି ଅତନୁ ଦେବତା
ହରକୋପେ ଭସ୍ମ ପରେ ଖଞ୍ଜିଛି ପ୍ରଥମେ
ମନ ଜାଣି ଜନ-ହୃଦେ ତା ବିଷମ ଶର ।
ପ୍ରଲମ୍ବ ଚିକୁର ତାର ଲମ୍ବି ଭାସେ ଜଳେ
—କୁଞ୍ଚିତ, ଚିକ୍‌କଣ, ଘନ, ଶୈବାଳ କୋମଳ—
ପ୍ରସାଧନ ଗନ୍ଧବାସେ ଆକୁଳି ସଲିଳ,
ଧୀର ଊର୍ମି ସହ ରଚି ଦୋଳାୟିତ ଲୀଳା ।

କମଳେ ଶୈବାଳ ସମ ସ୍ୱର୍ଣ୍ଣ-ଭାଲପଟେ
କୁଞ୍ଚିତ ଚିକୁରରାଶି ଝୁଲଇ ଶିଥିଳେ
ନୀରବିନ୍ଦୁ ଝରେ ତହୁଁ , ଖସେ ଯଥା ନୀର
ଶ୍ରାବଣ ଆସାର ଶେଷେ ଶ୍ୟାମ ଧାନ୍ୟଦେହୁଁ ।
କ୍ରୀଡ଼ାରଙ୍ଗେ ରାଜହେମା ବୁଡ଼ଇ ଉଠଇ,
ଢଳିପଡ଼େ ଚନ୍ଦ୍ରମୁଖ ଏଣେତେଣେ ନୀରେ,
ଦୋଳଇ ଶରୀରଯଷ୍ଟି ଲଜ୍ଜା ଦେଇ ସେହି—
ପଦ୍ମା-ସର-ଶତ-ଫୁଲ୍ଲ-ଲୀଳା-ସରସିଜେ ।
ଥରେ ଥରେ କୁତୁକିନୀ ମୁଖେ ନୀର ଭରି
ଫୁତ୍କାରି ବର୍ଷଇ ତାହା ସଖୀବାର ପରେ,
ଯୂଥିକା କୁସୁମ ସମ ପଡ଼େ ନୀରକଣା
ଇନ୍ଦ୍ରଧନୁ ବର୍ଣ୍ଣବିଭା ଦେଖାଇ କ୍ଷଣକେ ।
ଅଧରମର୍ଦ୍ଦିତ ସେହି ଶୀକର ଆସାର
ହାସ୍ୟମୁଖେ ବରିନେଇ ସହଚରୀବାର
ଭାଷୁଥାନ୍ତି ପରିହାସେ,''ଏ କି ହେମାମଣି ?
ପ୍ରଥମ-ପ୍ରଣୟ-ପ୍ରୀତା କରିଣୀର ସମ
ଅବେଳେ ପ୍ରଗଲଭା ସମ ଏ କି ବ୍ୟବହାର ?''
ଲଜ୍ଜା ଲଭି ସପ୍ତଦଶୀ ହସି କରକର
କହେ, ''ରଖ ପରିହାସ ପୋଡ଼ାମୁହାଁ ସବୁ,
କା' ସାଥେ ଦେଖିଲ ମୋର ପ୍ରେମ, ଚୁଲିପଶି ?''

ଭାଷିଲା କୂଳରୁ ଏକ ବହୁବୟସିନୀ,
''ଆଲୋ ସର୍ବେ ସୁନ୍ଦରୀଏ, ଜଳକେଳି ଘେନି
ମାତି ଯେ ରହିଲ ସୁଖେ, ଚାହଁ ନା ଆକାଶେ
ପଦ୍ମିନୀବଲ୍ଲଭ-ରଥ ଉଠିଲାଣି କାହିଁ ?
ନଦୀ ଆର ତୀରେ ଦେଖ ଶବର କୁଟୀରୁଁ
ରନ୍ଧନ ଇନ୍ଧନ ଧୂମ ଉଠଇ କୁଞ୍ଚିତେ,
ଲତା ପତ୍ର ପୁଷ୍ପ ଦେହୁଁ ଉଷାର ଶିଶିର
ଖର ରବିତାପେ ଦେଖ ଗଲାଣି ଉଭାଇ !
ଦୂର ଶ୍ୟାମ ଶୈଳଦେହେ ତପନକିରଣ
ସ୍ୱର୍ଣ୍ଣ କାଢ଼ି ନେଇ ଦେଖ ଦେଲାଣି ଘୋଡ଼ାଇ

ରୂପାର ଉତ୍ତରୀ ଗୋଟି; ତୀର ବନସ୍ପତି
ଶୂନ୍ୟ ଏବେ, ବୃକ୍ଷବାସୀ ବିହଗ-ବିହଗୀ
ଅନ୍ନ ଅନ୍ୱେଷଣେ ଉଡ଼ିଗଲେଣି ଆକାଶେ;
ଉଠ ବେଗେ ଗୃହେ ଯିବା, ସାର ତ୍ୱରା ଏବେ
ମଦନ ଦେବତାପୂଜା ।''

ସହସା ଉଠିଲା
'ସତେ ଲୋ', 'ସତେ ଲୋ' ବୋଲି ଆକୁଳ ଭାଷଣ ।
''ଆସ ରମା, ନାନ୍ଦିମୁଖୀ, କୁଞ୍ଜରିକା ସଖି,
ଆସ ଲୋ ଉର୍ବଶୀ, ତୋଳ କୁମୁଦ, କହ୍ଲାର,
ସାରି ବେଗେ ଦେବପୂଜା ଗୃହେ ଯିବା ଫେରି,
କେଜାଣି ରାଣୀମା' ଆଜି ବୋଲିବେ ବା କିସ,
ଆସ ବେଗେ''—ବୋଲି ସର୍ବ ସୁନ୍ଦରୀ ଷୋଡ଼ଶୀ
ସନ୍ତରି କରିଲେ ବେଗେ କୁସୁମ ଚୟନ ।
ସହସା ଉଠିଲା ନୀରେ କୋମଳ କଲ୍ଲୋଳ
ଷୋଡ଼ଶୀ ମୃଣାଳ ବାହୁ—ମୃଦୁଳ ଆଘାତେ,
ନୀଳ ନୀର ଫାଟି ଉର୍ଦ୍ଧ୍ୱେ ଉଠଇ ମନୋଜ୍ଞେ
ହୀରକର ଚୂର୍ଣ୍ଣସମ ସଲିଳ ଛିଟିକା;
ଯୁବତୀ ଚଟୁଳ ଗଣ୍ଡ ପୁଷ୍ପରେଣୁରାଗେ
ଶବଳିତ ହେଲା କ୍ଷଣେ, ପୁଷ୍ପଶାୟୀ ଭୃଙ୍ଗ
ପୁଷ୍ପ ତେଜି ପଦ୍ମମୁଖୀ ପଦ୍ମଗନ୍ଧଭୋଳେ
ଉଠିଲେ ଗୁଞ୍ଜରି ଧୀରେ ନଭେ ଦଳେ ଦଳେ ।
ସୁବର୍ଣ୍ଣ ବ୍ରତତୀ ସମ ଢାଳି ଦେହଯଷ୍ଟି
ସ୍ୱର୍ଣ୍ଣ ଭୁଜଦଣ୍ଡେ ଧୀରେ ନୀର ଆହୁଲାଇ,
ସନ୍ତରିଲେ ବାଳାକୁଳ । ଏକ ବାହୁଲତା
ଆନର ଚିକୁରପାଶେ ଛନ୍ଦି ହୁଏ ବନ୍ଦୀ,
ଉଠେ ହାସ୍ୟରୋଳ ତେଣୁ । ଏକ କରତଳ
ଅଜ୍ଞାତେ ବାଜଇ ଆନ ପୀବର ଉରଜେ,
ଉଠେ ହାସ୍ୟରୋଳ ତେଣୁ । ଏକ ହସ୍ତ ବାଜି
ଅନ୍ୟର ଜଘନ-ବାସ ଖସଇ ସଲିଳେ,
ଉଠେ ହାସ୍ୟରୋଳ ତେଣୁ । ପରସ୍ପର କର-

ଆଘାତେ ସଲିଳଛିଟା ସକଳର ମୁଖେ
ଅତର୍କିତେ ପଡ଼ି ଦିଏ ନୟନେ ଚମକ,
ଉଠେ ହାସ୍ୟରୋଳ ତେଣୁ । ଏହିପରି କେତେ
କ୍ରୀଡ଼ାରଙ୍ଗେ ହାସ୍ୟରସେ ମାତି କୁତୁକିନୀ
ତୋଳିଲେ ସଲିଳୁ ପୁଷ୍ପ ।

କୁସୁମ ଚୟନେ,
କୁସୁମୁଁ କୋମଳତର ସୁନ୍ଦରୀ-ଶ୍ରୀକର-
ସ୍ପର୍ଶ ଲଭି, କୁସୁମ କି, ଭାବେ କବି ମନେ,
ନ ଭାବିଲା ଧନ୍ୟ ବୋଲି ମରଣରେ ତାର ?
ଯେ ବାହୁ-ଆଶ୍ଳେଷ-ପାଶ-ଲାଳସେ ତରୁଣ
ଦାରୁଣ ମରଣ ଆଣେ ସ୍ୱଇଚ୍ଛାରେ ବରି,
ହେଲେ ଲଭି ସେ ସରସ ପରଶ ମଧୁର
ମୃଣାଳ କି ନ ଭାବିଲା କୃତାର୍ଥ ନିଜରେ ?
କାଦମ୍ବରୀପୂର୍ଣ୍ଣ ସେହି ଅଧର ରକ୍ତିମ,
ତରୁଣ, ଯେ ପାନପାତ୍ର ନିତ୍ୟ ମୁଖେ ଧରି
ପିଇବାରେ କରେ ଇଚ୍ଛା, ପୁଷ୍ପଦଳ ତା'ର
ନିବିଡ଼ ପରଶ ଲଭି ଭାବିଲା କି କ୍ଷଣେ
ନିଜ ମଧୁ ସେ ମଧୁରୁ କେଡ଼େ ରସହୀନ ?
କୁସୁମଜୀବନ ହାୟ ଲଭିଥିଲେ କବି
ସେ ଦିନ ସେ ପମ୍ପା-ସରେ, ବୁଝିଥାନ୍ତା ସିନା
କିଛି ହେଲେ ତତ୍ତ୍ୱ ଏଥି ।

କୁସୁମ ଚୟନେ
କେ ଚତୁରୀ ବୋଲେ,''ଆହା ମୂଢ଼ ଆମ୍ଭେ ସିନା;
ଥାଉଁ ଥାଉଁ ଢେମାମଣି-ନେତ୍ର-ଇନ୍ଦିବର—
ତରଳ ନୀଳିମ-ଆଭା, ଚଞ୍ଚଳ ଉଜ୍ଜ୍ୱଳ,
କିପାଇଁ ଏ ନୀଳୋତ୍ପଳ-ଚୟନ ଲୋ ସଖି ?''
ଆଉ ଏକ ବୋଲେ, ''ସତେ ଢେମାମଣି କର-
କୋକନଦ ଥାଉଁ କିପାଁ ତୋଳେ ଏ କହ୍ଲାର ?
କିପାଇଁ ବା ଥାଉଁ ଓଠେ ଚିର-ସ୍ମିତ-ରେଖା
ତୋଳି ଏତେ ଶ୍ରମେ କହ ଧବଳ-ଉତ୍ପଳ ?''

ଶୁଣିଲା ତା ହେମାମଣି, ନ କହିଲା କିଛି,
ସରମେ ନଇଁଣ ଖାଲି ହସିଲା ଲଳିତ ।
ଆଉ କେ ଚତୁରୀ ତହୁଁ କହୁଛି ଶୁଣାଇ,
" କି ଫଳ ପାଇଲା କହ ରାଜହେମା ସତେ
ଏତେ ଦିନ ଅଙ୍ଗ-ହୀନ-ଦେବତାରେ ପୂଜି ?
ଆଜି ଯଦି ଆସନ୍ତା କେ ଜୀବନ୍ତ-ଦେବତା !"
କହେ ଆନ ସଖୀ ତହୁଁ, "ଜୀବନ୍ତ-ଦେବତା
ଆସିବେ କି ସେବା ବିନା ? ମିଳନ୍ତି ସେ ସିନା
କୁମାରୀ-ଅନଙ୍ଗ-ପୂଜା-ପ୍ରସାଦ ସ୍ୱରୂପ ?
ବଡ଼ହିଁ ସାଧନା ସତେ କଲେଣି କୁମାରୀ !
ନିତ୍ୟ ଅବଗାହ ଶେଷେ କର-କୋକନଦେ
କନକ-ନିଟିଳ, ଆଉ ବଳି-ପୂତ ଭୂମି
ପରଶି, ନୟନ ବୁଜି କେତେ ସେ ପ୍ରାର୍ଥନା
ନ କରନ୍ତି ପୁଷ୍ପଶରେ ! ଦେହ ଥିଲେ ସିନା
ବୁଝନ୍ତେ କି କଷ୍ଟ ଦିଏ ବିଫଳ କାମନା
ବିଦେହ-ଦେବତା ପରା, ବୁଝିବେ ସେ କାହୁଁ ?
ହେଲେ ସଖି, ମତେ କିପାଁ ଦିଶେ ଜଳଜଳ
ହେମା ତପସ୍ୟାରେ ସେହି ଅନଙ୍ଗ-ଦେବତା
ଅଙ୍ଗ ଧରି ଏଇ କେବେ ଦେଇଯିବେ ବର ।"

ଶୁଣିଲା ଏ ଶ୍ଳେଷଭାଷା ଉଲୂପୀ କୁମାରୀ,
ଛଦ୍ମ କ୍ରୋଧେ ଦୂରେ ଥାଇ ଭାଷିଲା ବଚନ,
"କେ ତୁମ୍ଭରେ, ପୋଡ଼ାମୁହିଁ, ଦେଲା ଅଧିକାର
ମୋ ପୂଜାର ଫଳାଫଳ କରିବା ବିଚାର ?
ସଂଯତ କର ଲୋ ଜିହ୍ୱା"–
ବୋଲୁଁ, ସଖୀବାର
ପରିହାସେ ହସି ଏହା ଭାଷିଲେ, "ହେମା ଗୋ,
ଏତେ କ୍ରୋଧ ଆଜି କିପାଁ ସାମାନ୍ୟ କଥାରେ ?
ଜୀବନ୍ତ-ଦେବତା କି ଗୋ, ନାହିଁ ଭିକ୍ଷା ତବ ?
ଅନଙ୍ଗେ କି ଏତେ ଦିନ କରୁଥାଅ ପୂଜା
ସନ୍ନ୍ୟାସିନୀ ହେବା ପାଇଁ ଗୃହସୁଖ ତେଜି ?"

ଅଭିମାନେ ତପ୍ତ ବାଳା ଅଧର କମ୍ପାଇ
କହିଲା, "ତା ଜାଣି, ଶୁଣେ, କି ଲାଭ ତୁମ୍ଭର,
କିପାଁ ଏହି ଅପମାନ, ଏତେ ପରିହାସ ?
ସକଳେ ନିଜରେ ଭାବ ନିର୍ମ୍ମଳା ତୁଳସୀ
ମୋହରି ଭିକ୍ଷାରେ ଏକା ଲାଗିଅଛି କଥା ।
ହେଉ ମୋ ଅନଙ୍ଗପୂଜା ଶେଷ ଆଜିଠାରୁ,
ଫିଙ୍ଗିଲି ଏ ପୁଷ୍ପରାଶି ରହ ତୁମ୍ଭେ ଏଥି,
ଯାଏ ମୁହିଁ ଗୃହେ; ମୋର ଭିକ୍ଷା କିଛି ନାହିଁ ।"

ଭିକ୍ଷା କିଛି ନାହିଁ ବୋଲି ଫେରାଇଲା ମୁଖ
ଫେରିବାରେ ତୀରଦେଶେ,—ସହସା ପଡ଼ିଲା
ନୟନେ ଯେ ବୀର ତନୁ ଉଭା ହ୍ରଦତୀରେ
ଭାବିଲା ଉଲୂପୀ ତା'ରେ ଆସିଅଛି ଯେହ୍ନେ
ଯୁଗ-ଯୁଗ ଯାଚନାର ଜୀବନ୍ତ ପ୍ରସାଦ !
ହୃତ୍‌ପିଣ୍ଡ କମ୍ପିଲା ତାର, ନଇଁଲା ନୟନ,
ଚମକି ଆକଣ୍ଠ ନୀରେ ରହିଲା ଥମକି
ଫେରିବ କି ସଖୀଦଳେ, ଯିବ ଅବା ତୀରେ
ଏ ଲାଗି ହୃଦୟେ ତା'ର ଆରମ୍ଭିଲା ଦ୍ୱନ୍ଦ୍ୱ ।
ସଖୀଏ ଚାହିଁଲେ ଫେରି ପରିହାସ ତେଜି,
ଦେଖିଲେ ତୀରସ୍ଥ ଯୁବା ରହିଛନ୍ତି ଚାହିଁ
ଢେମାର ଆନତ ମୁଖେ । ଏ ସଂକଟ କାଳେ
ଘାଟେ ଥାଇ ଡାକଦେଲା ସେ ବହୁବୟସୀ—
"ଆସ ଗୋ, ଆସ ଲୋ, ତୀରେ, ବନ୍ଦ ଏ ବୀରରେ
ଏହି ସେ ଭୁବନଜୟୀ ଶୂରେନ୍ଦ୍ର ଫାଲ୍‌ଗୁନି,
ଯଶେ ଯା'ର ଭାରାକ୍ରାନ୍ତ ଜନମୁଖ ସଦା,
ଶୌର୍ଯ୍ୟ ଯା'ର ପହଞ୍ଚିଛି ସୁରସଭାତଳେ,
ଭ୍ରାତୃଆଜ୍ଞା ଘେନି ଏହି ବୀର-ଚୂଡ଼ାମଣି
ବନବାସ ବରିନେଇ ଭ୍ରମୁଛନ୍ତି ଦେଶେ,
ଧନ୍ୟ ହେଲା ନାଗଦେଶ ପଦଧୂଳି ଲଭି ।
ଆସ ବେଗେ; ଗୃହେ ଯାଇ ନୃପତିରେ କହି
ବରାଇଣ ନେବା ବୀରେ ଉଚିତ ବେଭାରେ ।"

ଫାଲଗୁନିର ନାମ ଶୁଣି ଉଲୂପୀ କୁମାରୀ
ଆହୁରି ଗଭୀରତର ନୁଆଁଇଲା ମଥା ।
ରହିଲେ ସଙ୍ଗିନୀବୃନ୍ଦ ଥିଲେ ଯହିଁ ତହିଁ,
ନ ଘୁଞ୍ଚିଲା ପଦ କା'ର । ବହୁବୟସିନୀ
ଚେଟୀ ସେ ସଙ୍ଗିନୀବୃନ୍ଦ-ଲଜ୍ଜାଲୀଳା ଦେଖି
ଇଙ୍ଗିତେ ଚାହିଁଲା ହସି ମଧ୍ୟମପାଣ୍ଡବେ;
ସସ୍ମିତେ ଚଳିଲେ ବୀର ବନ ଅନ୍ତରାଳେ ।

[ ୨ ]

''କାହିଁ ଗଲେ ?
କାହିଁ ଗଲେ ସେ ଲୋ ସଖି, ଛାଡ଼ିଦେଇ ମତେ
ଏତେ ଦିନ ଏକାକିନୀ ଏ ବିଶାଳ ପୁରେ ?
ନିଷ୍ଠୁର ପୁରୁଷ ହିଆ, ନିଷ୍ଠୁର ପୁରୁଷ
କି ଜାଣିବେ ସେ ଲୋ ସଖି, ରମଣୀ-ହୃଦୟ ?
କି ଜାଣିବେ ସେ ଲୋ, ନାରୀ ଅନ୍ତରାଳେ ରହି
କେମନ୍ତେ ମୁଞ୍ଚଇ ଅଶ୍ରୁ ବିରହେ ତାଙ୍କର ।
କହି କି ନ ଯା'ନ୍ତେ ମତେ ? କହୁଥିଲୁ କିସ ?—
କାହିଁ ଯାଇଛନ୍ତି ବୀର ? ଆଉ ଥରେ କହ,
ଭୁଲି ମୁଁ ଯାଉଛି ସଖି, ବେଦନା ରଭସେ;
ବୁକୁ ମୋର ଯାଏ ଫାଟି—ମନେ ହୁଏ ଯେହ୍ନେ
ଅପରାଧେ କିଛି ମୋର ପ୍ରାଣ-ପ୍ରିୟତମ
ଚିରକାଳ ଲାଗି ଅବା ତ୍ୟକ୍ତ କଲେ ମତେ !
କି ଅପରାଧିନୀ ମୁହିଁ ? ପ୍ରାଣର ସର୍ବସ୍ୱ
ସମର୍ପି ଯାହାରେ କରେ ନିତ୍ୟ ଆରାଧନା
କେବେ ତା' ଚରଣେ ହେଲା ପୂଜା ବ୍ୟତିକ୍ରମ ?
କହିଛନ୍ତି କା'ରେ କିଛି ? କହ ଥରେ ଆଉ
କେବେ ଲୋ ଆସିବେ ଫେରି ।''

କୁଞ୍ଚରିକା ସଖୀ,
ଉତ୍ତରିଲା ମୁଖ ପୋତି—''କିପାଁ ଜେମାମଣି,
ଅକାରଣ ହୁଅ ଏତେ ଉଚ୍ଛନ୍ନ-ଆକୁଳ ?
କହିଲିଣି କେତେ ବାର ଅର୍ଜୁନ ଶୂରେନ୍ଦ୍ର

କରିଛନ୍ତି ବିଜେ ପରା ପାରିଧିଗହଣେ
ଦୂର ଗୋଦାବରୀ ବନେ—ଫେରିବେ ତ ପୁଣି,
ଉଚ୍ଛନ୍ନ କିପାଇଁ ?''
ଉତ୍ତରେ ନାଗେନ୍ଦ୍ରଜେମା ଥରାଇ ଅଧର
''ଉଚ୍ଛନ୍ନ କିପାଇଁ କହୁ ? ପଚାର କାହାରେ,
ଏକ ପ୍ରାଣ ଆନ ପ୍ରାଣେ ଟାଣଇ କାହିଁକି,
ନିର୍ଲଜ୍ଜ ଦିଅଇ ଢାଳି କିପାଁ ଏକ ହିଆ
ଆପଣାର ଶ୍ରେଷ୍ଠ ଅର୍ଘ୍ୟ ଆନ ପଦତଳେ !
କିପାଇଁ ତରୁଣେ ଦେଖି ତରୁଣୀ ହୃଦୟେ
ଶୋଣିତ ଉଠଇ ଫୁଟି,—ହୁଏ ଅଭିଳାଷ
ଦୁହିଁଙ୍କର ଅଙ୍ଗେ ଅଙ୍ଗ ମିଶାଇ ନିବିଡ଼େ
ଅଧରେ ଅଧର ରଖି ଭୁଲିଯିବେ ଯେତେ
ଜଗତ୍‌ର ଦୁଃଖ, ଶୋକ, ମାନ, ଅପବାଦ ?
କିପାଇଁ, ପଚାର ଯାଇ, ରାଧା କୁଳବଧୂ
ବହି ମାଥେ ପଦେ ପଦେ ଲୋକ-ଅପବାଦ
ଗଞ୍ଜନା, ଲାଞ୍ଛନା, ଲଜ୍ଜା, ଘୃଣା, ଅବହେଳା
ଗୃହ ତେଜି ଅନ୍ଧକାରେ ଗଲା ନୀପବନେ ?
କିପାଇଁ ବସନ୍ତରାତେ ମଳୟ ପରଶେ
ଅଜ୍ଞାତେ ରୋମାଞ୍ଚ ଆସେ ତରୁଣୀର ଦେହେ
ଅଲକ୍ଷ୍ୟେ ମାଗଇ ଚିର-ପରଶ କାହାର !

ପଚାର ନିଜରେ ତୁହି, ନିଶା ଆଗମନେ
ରଥାଙ୍ଗ କିପାଇଁ ରଚେ ଆକୁଳ କାରୁଣ୍ୟ,
କିପାଇଁ ଉଦ୍ୟାନ-ସରେ ପଙ୍କଜ-କଳିକା
ଫୁଟିଉଠେ ପ୍ରଭାତରେ ରବିକର ଲଭି
ଧୀରେ ଧୀରେ ସ୍ୱର୍ଣ୍ଣଦଳ ଖୋଲି ଗୋଟି ଗୋଟି
ସଲଜ୍ଜ ନବୀନା ବଧୂ ଆଦ୍ୟବାଣୀ ସମ ।
କିପାଁ ବା ସୌରଭ-ଲୋଭୀ ରସିକ ଭ୍ରମର
କାହୁଁ ଦୂର ବନାନ୍ତରୁ ଗନ୍ଧ ଲଭି ତା'ର
ଉଡ଼ିଆସେ ଚୁମ୍ବିବାକୁ ନବ-ସ୍ଫୁଟିତାରେ !

ପଚାରୁ ଉଛନ୍ନ କିପାଁ ? ଅବୋଧ ବାଳିକା,
ପାଅ ମୋ ଉତ୍ତର ତହିଁ, ଉଛନ୍ନ ମୁଁ କିପାଁ !

ଦେଖି ଏ ଚାନ୍ଦିନୀ ରାତି, ବସନ୍ତ ସମୟ
ଶୀକରିତ, ସୁରଭିତ ସ୍ପର୍ଶ ମଳୟର
କାହିଁ ସେ ତରୁଣୀ ଯା'ର ଶରୀରେ, ବାଳିକା
ନ ଆସେ ରୋମାଞ୍ଚ ଫୁଟି ନୀପପୁଷ୍ପ ସମ ?
ଉଛନ୍ନ କିପାଇଁ କହୁ ? ଜାଣୁ କି ଲୋ ସଖି,
ବକ୍ଷର ବେଦନା କିଛି ?—କେମନ୍ତେ ବିରହ
ତରୁଣୀର ବକ୍ଷେ ପଶି ଆତତାୟୀ ସମ
କରତର ତୀକ୍ଷଣ୍ ଦନ୍ତେ କାଟଇ ନିର୍ମମେ
ତିଳ ତିଳ କରି ମାଂସ ? ସାରା ବକ୍ଷ ଧରି
ଜ୍ୱଳନ୍ତ ଅଙ୍ଗାରରାଶି କେହ୍ନେ କୁହୁଳଇ
ସାରାଦିନ, ଅନ୍ତର୍ଦାହେ ପୋଡ଼ାଇ ଜୀବନ ।
ଅନୁଭବୀ ଜାଣେ ସିନା, ତୁ କାହୁଁ ବୁଝିବୁ ।
ଉଛନ୍ନ କିପାଇଁ ଏତେ ନାଗେଶନନ୍ଦିନୀ ।

ହାୟ ସେ ପ୍ରଥମ ଦୃଷ୍ଟି ! କ୍ଷୀରୋଦ-ଉତ୍‌ଥିତ
କଳ୍ପତରୁ ସମ ଯେବେ ସୁନ୍ଦର ଫାଲ୍‌ଗୁନି
ହ୍ରଦତୀରେ ହେଲେ ଉଭା, ମିଳିଲା ନୟନ ।
ଗୋଟିଏ ମୁହୂର୍ତ୍ତ ସଖି—ମୁହୂର୍ତ୍ତର ଅବା
ଶତାଂଶର ଏକ ଅଂଶ—ନୟନର ପତା
ଉଠି ଥରେ ଆପେ ଆପେ ଆସିଲା ଓହ୍ଲାଇ,
ଗଭୀର ଲଜ୍ଜାରେ ମୁଖ ହୋଇଗଲା ପୋତି
ନୀଳ ଜଳେ ଚାହିଁ ଖାଲି ଗଣିଲି ପ୍ରମାଦ !
ସମସ୍ତ ହୃଦୟ ମୋର ନୟନର ଦ୍ୱାରେ
ବାର ବାର ଦେଲା ଧକ୍‌କା—ସେ ଶ୍ରୀକାନ୍ତ ମୁଖ
ଭଲକରି ଆଉ ଥରେ ନେବାକୁ ପରଖି,
ନ ଉଠିଲା କିନ୍ତୁ ନେତ୍ର ସରମ-ମନ୍ଥର ।

ମୁହୂର୍ତ୍ତକ ଦେଖା !
ମୁହୂର୍ତ୍ତକେ ହେଲା ମୋର ଜନ୍ମାନ୍ତର ସଖି !
ଗୃହେ ଫେରି ଦେଖିଲି ମୁଁ ତରଳ ବୟସୀ

ଉଲୂପୀ ନାହିଁଛି ଆଉ, ଯାଇଛି ସେ ଚାଲି !
ସ୍ଥାନେ ତା'ର ଆସିଅଛି ମନ୍ମଥ-ଲାଂଛିତା
ବିଦୀର୍ଣ୍ଣ-ହୃଦୟା ନିତ୍ୟ-ପିପାସୀ ତରୁଣୀ !
ହାୟ, ସେ ପିପାସା ସଖି; ଶାନ୍ତି କାହିଁ ତା'ର ?
ମନେହୁଏ ଯେହ୍ନେ ମୋର ପ୍ରାଣ-ପ୍ରିୟତମେ,
ନିବିଡ଼ ଆଶ୍ଳେଷେ ଧରି ଉଡ଼ିଯାନ୍ତି କାହିଁ
ଅନନ୍ତ ବାରିଧିପାରେ ଜନହୀନ ଦ୍ୱୀପେ—
ଶୋଇ ତହିଁ କେଉଁ ଏକ ତରଙ୍ଗିଣୀ କୂଳ-
ଶୈବାଳ-କୋମଳ ଶେଯେ, କୁଞ୍ଜଛାୟାତଳେ,
ଅଧରେ ଅଧର ରଖି, ଯୁଗ-ଯୁଗାନ୍ତର
କଟାନ୍ତି ଅବାଧ ସୁଖେ,—ତେବେ ବା ସଜନି,
ମେଣ୍ଟନ୍ତା ପ୍ରାଣର ଏଇ ନିବିଡ଼ ପିପାସା !
କୋଳାହଳମୟ ଏହି ମହାରାଜପୁରୀ,
ଶତ ଶତ ଦାସଦାସୀ କୁତୂହଳୀ ଦୃଷ୍ଟି
ପଛେ ପଛେ ଅଛି ଲାଗି,—କି ବୁଝନ୍ତି ସେ ଲୋ
ପରାଣେ ପ୍ରଣୟ ମୂଲ୍ୟ ? ଅସଂଖ୍ୟ ଜଞ୍ଜାଳେ
କେତେ ଦଣ୍ଡ ହୁଏ ଦେଖା ପ୍ରିୟ ସଙ୍ଗେ ମୋର ?
ଏଥେ କି ଉଚ୍ଛନ୍ନ ହେବା ମଣୁ ଆଚମ୍ବିତ ?
ନୂତନ ପ୍ରଣୟେ ସଖି ମଦନଦେବତା
ମନୋରଥୁଁ ଖରବେଗେ ବାଣ ଛାଡ଼େ ତା'ର ।
ସେ କାଳେ ପ୍ରିୟ ଲୋ ଯଦି ନାହିଁ ଥାଏ ପାଶେ,
ତା'ର ଦୃଢ଼ ଭୁଜଦଣ୍ଡେ ଆଶ୍ଳେଷି ଏ ଗ୍ରୀବା
ମୁହୂର୍ତ୍ତକ ହୁଏ ଭାରୀ କଳ୍ପଯୁଗ ସମ,
ଅଗ୍ନିଗିରି ସମ ବୁକୁ ବେଦନା ରଭସେ
ଇଚ୍ଛଇ ପଞ୍ଜର ଫାଟି ଆସିବ ବାହାରି !
ସେଇ ଦୃଷ୍ଟିଲାଭ ଦିନୁଁ କେତେ ଦିନ ଆହା
ଭୋଗୁଛି ଉଲୂପୀ ଏଇ ଅବ୍ୟକ୍ତ ବେଦନା,
କି ଜାଣିବୁ ତୁହି ସଖି, ଅନ୍ତରହିଁ ଜାଣେ ।

ମନେଅଛି ମୋର ସେହି ମଧୁର ପ୍ରଭାତ,
ପିତ୍ରାଦେଶେ ଗଲି ଯେବେ ଫାଲ୍‌ଗୁନି ମନ୍ଦିରେ,

ଏକାକିନୀ ବୀଣା ସହ ଗାଇବାକୁ ଗୀତ ।
ସରମ-ମନ୍ଥର ପଦେ ମନ୍ଦିରେ ପ୍ରବେଶୁଁ,
ପ୍ରତେ ହେଲା ଯେହ୍ନେ ସଖି, ହୋମ-ଅଗ୍ନି-ଶିଖା
ଜଳୁଛି ନିର୍ଧୂମ୍ ତେଜେ, –ହେମ-ଗୌର ବପୁ
ବସିଛନ୍ତି ମଣିପୀଠେ ମଧ୍ୟମପାଣ୍ଡବ,
କନକ ଜଳଦପରେ ରବି-ବିମ୍ବ ସେ କି !
କେଶରୀ ବିକ୍ରମ ଠାଣି,–ସେ ପେଶୀ-ପେଶଳ
ଭୁଜଦଣ୍ଡ ଦୁଇ ଲମ୍ବି ଚୁମ୍ବିଛି ଭୂତଳ,
କୁଞ୍ଚିତ-ଚିକ୍‌କଣ-କୃଷ୍ଣ ଘନ କେଶରାଜି
ପଡ଼ିଛି କନକ ସ୍କନ୍ଧେ–ସାୟନ୍ତନ ନଭେ,
ସମାବେଶ ସେ କି ଅବା କୃଷ୍ଣ ଜଳଦର ।
ସୁଗୋଲ ସୁନ୍ଦର ମୁଖ, ଉନ୍ନତ ଲଲାଟ
ଉନ୍ନତ ସୁଠାମ ନାସା, ପୃଥୁଳ ଅଧର
ସୁଦୃଢ଼ ଚିବୁକଖଣ୍ଡ, ସୁବଳିତ ଗ୍ରୀବା,
ହେମ ଘନ ସମ ବକ୍ଷେ ଚନ୍ଦନ ପ୍ରଲେପ,
–ଶୁଭ୍ର ଶିବଭାଲେ ସେ କି ଚନ୍ଦ୍ରିକାର ଛଟା–
ଆକୁଳ ମନ୍ଦିର ତାଙ୍କ ଶରୀର ସୁବାସେ !

ପ୍ରଣମି ଆନତ ମୁଖେ ଚରଣେ ତାଙ୍କର,
ଘୁଞ୍ଚି ଦୂରେ ଲଜ୍ଜାଭରେ, ସ୍ଫଟିକ ଚଟାଣେ
ପଦ ନଖ ଘଷି ଧୀରେ, ମୌନେ ହେଉଁ ଠିଆ
ଭାଷିଲେ ସସ୍ମିତେ ବୀର–'ଠିଆ ଯେ ରହିଲ !
ଅଲଂକୃତ କର ଏଇ ପଦ୍ମରାଗ ପୀଠେ
ଆପଣାର ଦେହପୁଷ୍ପେ; ରଖ ବୀଣା ସେଥି,
ଗାଅ ଯଦି ହୁଏ ଇଚ୍ଛା, ଇଚ୍ଛା ନାହିଁ ଯଦି
କ୍ଷତି ନାହିଁ କିଛି ଜେମା ! ବିପଞ୍ଚିର ତାର
କୋମଳ ଅଙ୍ଗୁଳି-ଘାତ-ସୁଖ ନାହିଁ ପାଇ
ମରୁ ଆଜି ମୌନ ଦୁଃଖେ; ସରମ-ଶଂକିତ-
ଚରଣ-ବଳୟ ନାଦେ ପାଉଛି ସୁନ୍ଦରି,
ତୁମ୍ଭର ସଙ୍ଗୀତ ସ୍ୱାଦ !'–
ମରଣରୁ ବଳି

ଲାଗିଲା ସେ କାଳ ମତେ ସରମ-ବ୍ୟଥିତ,
ପ୍ରଶଂସାର ଗୁରୁ ଲଜ୍ଜା ମସ୍ତକରେ ଥୋଇ
ଚଳି ମୁଁ ନ ପାରି ତିଳେ, ପଡ଼ି ମୁଁ ବସିଲି
ସେଇ ସ୍ଥାନେ, ବୀଣାଖଣ୍ଡି ଥୋଇ କୋଳେ ମୋର
ନୟନ ରଖି ଗୋ ସେଇ ସ୍ଫଟିକିତ ଭୂମେ !
ତାଙ୍କ ଗୁରୁ ଅନୁରୋଧେ ବସିଲି ମୁଁ ଥରେ
ଗାଇବାକୁ କଣ୍ଠ ଟେକି, ବାଇବାକୁ ବୀଣା—
ନ ଫିଟିଲା କଣ୍ଠସ୍ୱର, ବୀଣାଦଣ୍ଡ ସଖି,
କରର ଆୟତ୍ତ ନାହିଁ ମାନିଲା ସେଦିନ ।
ଆହୁରି ସରମେ ମୋର ମୁଖ ହେଲା ପୋତି
ପଳାୟନ ଅବସର ଖୋଜିଲି ଆକୁଳେ !

ସେ ହେଲା ପ୍ରଥମ ଦେଖା, ପ୍ରାରମ୍ଭ ଆଳାପ ।
ଜାଣି କି ଥିଲି ମୁଁ ସ୍ୱଖି, ସରମ-କୁଣ୍ଠିତ
ବ୍ୟବହାର ସେହି ହେବ ଦିନେ ପରିଣତ
ପରିହାସ-ରାସ-ହାସ-ମୁଖର ପ୍ରଣୟେ ?
ଆଖି ଆଖି ମେଳେ ସଖି ପ୍ରଣୟର ବୀଜ,
ଉପ୍ତ କରି ମନୋଭବ, ଘନ ଶରାଘାତେ
ଫୁଟାଇଲା ସେହି ଦଣ୍ଡେ ଅଙ୍କୁର ତାହାର,
ମୁଗ୍ଧ ସହବାସ-ଜଳ-ସେକେ ସେ ଅଙ୍କୁର
ପରିଣତ ଆଜି ସଖି ଘନ କୁଞ୍ଜଗୃହେ
ଯା'ର ମଧୁଛାୟା ତଳେ ଆଜି ମୁଁ ସଜନି,
ଇଚ୍ଛଇ ଯାପିବି ମୋର ଜନ୍ମ-ଜନ୍ମାନ୍ତର
ଏହି ପ୍ରିୟ କଣ୍ଠ ଧରି; ଲୋଡ଼ା ନାହିଁ ମମ
ଆଉ କିଛି, ଯାହା ଲାଗି ବ୍ୟାକୁଳ ଜନତା ।

କିବା ଲୋ ମଧୁର ପ୍ରେମ ! ପ୍ରଥମେ ଯେ ଦିନ
ଚୁମ୍ବିଲେ ପ୍ରିୟ ମୋ' ଗଣ୍ଡ, ପ୍ରଶଂସି ମୋହରେ
ଜାଣିଲି ପ୍ରଥମେ ମୁହିଁ, କିବା ସୁଖ ଅଛି
ଏ ଦେହର ରନ୍ଧ୍ରେ ରନ୍ଧ୍ରେ, ଶୋଣିତେ ଶୋଣିତେ !
ଥରିଲା ସର୍ବାଙ୍ଗ ମୋର, ନୂଆ ରସପାନେ
ରୋମାଞ୍ଚେ ପୂରିଲା ତନୁ, ନୟନର ପତା

ସେ ଗଭୀର ସୁଖ-ଭାରେ ଆସିଲା ଆନମି ।
ତା'ପରେ ଲୋ, ଦିନୁ ଦିନ ବର୍ଦ୍ଧିଷ୍ଣୁ ପ୍ରଣୟ,
ରସୋଚ୍ଛଳ ଆକର୍ଷଣ ଆନ ଆନ ଲାଗି,
ନିତ୍ୟ ଚେଷ୍ଟା ତୋଷିବାରେ ଦୁହେଁ ଦୁହିଁକରେ,
ଅବାରିତ ଯତ୍ନ, କିଏ ବଳିବ ଦେବାରେ
ଆପଣାର ଶ୍ରେଷ୍ଠ ଯାହା ଆନ ପଦତଳେ,
ବିରହେ ଅବ୍ୟକ୍ତ ବ୍ୟଥା, ଅବ୍ୟକ୍ତ ଆନନ୍ଦ—
ମିଳନେ, ସମର୍ପିବାର ନିଖିଳ ହୃଦୟ
ଗୋଟିଏ ଚୁମ୍ବନେ,—ତାହା ବର୍ଣ୍ଣିବି କେମନ୍ତେ,
ପରାଜିତ ଭାଷା ତହିଁ !

ସେ ଦିନୁ ଜୀବନେ ମୋର ନୂତନ ସଂସାର,
ସେ ପର ପୁରୁଷ ଏବେ ପ୍ରିୟତମ ମମ—
ପିତାମାତା, ଜ୍ଞାତିବନ୍ଧୁ କାହାରେ ଏ ପ୍ରାଣେ
ଦେଇନି ଏମନ୍ତ ସ୍ନେହ, ନିବିଡ଼, ଗଭୀର ।
ତରୁଣୀ ତରଳ ମନ ଇଚ୍ଛେ ହାତ ଧରି—
ରଚିବ କନ୍ଦୁକ କ୍ରୀଡ଼ା ପରାଣ ତାଙ୍କର
ନିଶିଦିନ, ଇଚ୍ଛା ହୁଏ ପୁଷ୍ପ ସମ ପୁଣି
ଧରି ତାଙ୍କୁ ନାସା ପାଶେ ଆଘ୍ରାଣିବି ବସି
ସମୟର ଶେଷ ଯାଏ, କେବେ ବା ଇଚ୍ଛଇ,
ପ୍ରାଣ ମୋର ଦେଇ ତା'ର ଶ୍ରେଷ୍ଠ ଉପହାର,
ପୂଜିବ ସେ ଦେବତାଙ୍କ ଚରଣ-କମଳ ।
ଭାବଇ ଯେବେ ଲୋ ସଖି, ବିରହର କଥା—
ବର୍ଷ ଅନ୍ତେ ଆର୍ଯ୍ୟପୁତ୍ର ଫେରିବା ସ୍ୱପଥେ,
ପ୍ରାଣ ମୋର ଥରିଆସେ, ନ ପାରଇ ଭାବି
କେମନ୍ତେ ବଞ୍ଚିବି କାଳ ବିରହ-ବିଧୂର !

ଏବେ ତ ସଜନି ଖାଲି ଧାୟି ତାଙ୍କୁ ମନେ,
କଟେ ମୋର ନିଶିଦିବା,—ଦଣ୍ଡେ କ୍ଷଣେ ହେଲେ,
ମନରୁ ଅନ୍ତର ନାହିଁ ହେଉଛି ସେ ରୂପ ।
ଯହିଁ ଯାଏ, ଯହିଁ ବସେ, ମନେହୁଏ ପରା—
ଆସିଲେ ମୋ ପ୍ରିୟ ପାଶେ, ଧରିଲେ ମୋ କର,

ଡାକିଲେ ମୋ ନାମ ଧୀରେ ଗଣ୍ଡେ ଓଷ୍ଠ ଦେଇ—
ରୋମାଞ୍ଚେ ମୁଁ ଉଠେ ଥରି, ଚମକି ମୁଁ ଦେଖେ,
ସେ ଖାଲି ଜାଗ୍ରତ-ସ୍ୱପ୍ନ, ପ୍ରଣୟ-ବିକାର ।
ବିଚ୍ଛେଦ ହୁଏ ଯା' କେତେ ଦଣ୍ଡ ଦିବସରେ,
ଯୁଗ ସମ ଲାଗେ ଭାରୀ, ଧାଏଁ ମନୋରଥ
ଦେଖିବାକୁ ପ୍ରିୟ ମୁଖ ଆକୁଳ ଆଗ୍ରହେ ।
ଏମନ୍ତ ପ୍ରଣୟ କହ ସଖି କୁଞ୍ଜରିକା,
କେମନ୍ତେ ବିଚ୍ଛେଦ-ବ୍ୟଥା ସହିବ ଜୀବନେ !

ଏ ନିବିଡ଼ ପ୍ରେମେ ସଖି ଉଠେ ଥରେ ଥରେ,
ଆଶଙ୍କାର କୃଷ୍ଣଛାୟା,—ଭାବେ ମନେ ମନେ
କିପାଇଁ ସଲିଳ ବୋଲି ମରୀଚିକା ପଛେ
ଧାଇଁଛି ବାଳିକା ମୁହିଁ !—ବିରାଟ ଅର୍ଜୁନ
ଦିଅନ୍ତି କି ସତେ ମତେ ପ୍ରାଣର ପ୍ରଣୟ ?
ଶୁଣିଛି ପୁରୁଷଜାତି,—

ଆଲୋ କୁଞ୍ଜରିକା,
ଏ କିଏସେ ? ଯାଅ, ଯାଅ, ଯାଅ ଅପସରି
ଫେରି ଯେ ଆସିଲେ ମୋର ପ୍ରାଣ ପ୍ରିୟତମ
କହୁ କହୁ ତାଙ୍କ କଥା ।''

ବୋଲୁଁ କୁଞ୍ଜରିକା
ଅପସରିଗଲା ଧୀରେ ଏକ ଦ୍ୱାର ପଥେ,
ଆନ ପଥେ ପ୍ରବେଶିଲେ ଶୂରେନ୍ଦ୍ର ଗାଣ୍ଡିବୀ ।
ପ୍ରବେଶି ଭାଷିଲେ ବୀର—''କ୍ଷମ ଜେମାମଣି,
ଦୋଷ ମୋର, ନ କହି ଯା' ଗଲି ମୁଁ ପ୍ରଭାତେ ।
ସେଇ ଅପରାଧେ ଆଜି କ୍ଷୁଣ୍ଣ ଦିନମାନ
ଚିତ୍ତ ମୋର, ପାରିଧିରେ ନ ଲାଗିଲା ମନ,
ଅଭିମାନ-ଅଭିରାମ ନେତ୍ର କୋକନଦ
ଚିତ୍ତେ ଉଠି କରାଇଲା ଲକ୍ଷ୍ୟଭ୍ରଷ୍ଟ ମତେ !''
—ବୋଲି, ଯାଇ ଜେମାପାଶେ କଣ୍ଠ ତା'ର ଭିଡ଼ି
ଆପଣାର ଦୃଢ଼ ଦୀର୍ଘ ପୃଥୁ ଭୁଜଦଣ୍ଡେ
ଓଠ ତା'ର କରେ ଟେକି ଚୁମ୍ବିଲେ ନିବିଡ଼େ ।

ଦ୍ୱିତୀୟ ତ ନାହିଁ କେହି, ଇନ୍ଦ୍ର ପୁଣି ପଶେ
ବିପଦ ପଡ଼ିଲେ ତାଙ୍କ ଧନୁର ଶରଣ;
ତଥାପି ବିନୟେ ବୀର ଅବନତ ସଦା,
ବକୁଳିତ ଚୂତ ସମ । ହସ-ହସ ବାଣୀ
ଶୁଣିଲେ ପରାଣ ହୁଏ, ସ୍ନେହେ-କିଣା ଜନ ।
କି ସୁନ୍ଦର ସୌମ୍ୟ ତନୁ ! ଆର୍ଯ୍ୟପୁତ୍ରେ ଦେଖି,
ପ୍ରଥମେ ଜାଣିଲି, ବୋଲି ସୁନ୍ଦର କାହାରେ ।
ଥିଲେ ଯେତେ ଦିନ ଏଥି, ଏ କ୍ଷୁଦ୍ର ନଗର
ଉଠୁଥିଲା ନିତ୍ୟ ପୂରି ତାଙ୍କ ଯଶୋଗାନେ,
ଚାହିଁରହୁଥିଲେ ଗୃହେ ପୁର-ନାରୀ ନିତି
ପାରିଧି-ବାହୁଡ଼ା ତାଙ୍କ ଦରଶନ ପାଇଁ ।
ଯିବେ ଚାଲି, ଅନ୍ଧକାର ହେବ ନାଗଦେଶ,
ଆଶା ଗତେ ଚିତ୍ତ ସମ । ନିଜେ ଢେମାମଣି
କହନା ରହିବେ ତାଙ୍କୁ—''
ତଥାପି ଉଲୂପୀ
ନ କହିଣ କଥା କିଛି, କେଶେ ଆପଣାର
ବୁଲାଇଲା କରାଙ୍ଗୁଳି,—ଚାରୁ ପଦ-ନଖେ
ଅକାରଣେ ଭୂମିପରେ କାଟୁଥାଇ ରେଖା ।
ଶଙ୍କିତା ସେ କୁଞ୍ଜରିକା ଢେମା ଆଚରଣେ
ଉଲୂପୀର ମୁଖେ ଖାଲି ଚାହିଁଲା ଉଦାସେ,
କହିବାକୁ ଆଉ କିଛି ନ ହେଲା ସାହସ ।
ବହୁ କ୍ଷଣ ପରେ କିବା ଚିତ୍ତେ ଭାବି ଢେମା
କହିଲା ସେ ସଖୀ ମୁଖେ ଅନାଇ ଉଦାସେ—
''କୁଞ୍ଜରିକା, ମନେ କିଛି ନ ଧରିବୁ ସଖି !
ଯାଅ ତୁହି ଅନ୍ୟ କାର୍ଯ୍ୟେ ଛାଡ଼ି ମୋତେ ଏଥି,
ମନେ ମୋର ସୁଖ ନାହିଁ—ଦେହ ଲାଗେ ଭାରୀ,
ନିଦ୍ରା ଯାଏ କିଛି କ୍ଷଣ—''
''କହୁନା ସେ କଥା
ବାର ବାର ଜିଜ୍ଞାସା କରି ଅଲକ୍ଷଣୀ
ବ୍ୟଥିତ କରିଲି କିଆଁ । କର ଗୋ ଶୟନ
ଶ୍ରୀଅଙ୍ଗ କୁଶଳ ହେଉ, ଯାଏ ମୁହିଁ ଚଳି''—

ବୋଲି କୁଞ୍ଜରିକା ଧୀରେ ବାହାରିଲା ଗୃହୁଁ ।
ସରଳା କିଶୋରୀ ସେ ଯେ, ଜାଣିବ ସେ କିପାଁ
ହୃଦୟେ କି ବ୍ୟଥା ଲାଗେ, ଉଚ୍ଛନ୍ନ ପ୍ରଣୟ
ସହସା ପାଇଲେ ବାଧା, ଧମନୀ-ଶୋଣିତ
କେମନ୍ତେ ବନାଗ୍ନି ସମ ଆପେ ଜଳିଉଠି
ଆପଣାରେ କରେ ଭସ୍ମ, ପ୍ରଣୟ-ମନ୍ଦିରେ
ଆକୁଳିତ ଅଶ୍ରୁ ତେଜି କେମ୍ନେ ପ୍ରାଣବଧୂ
ମରୁଚାରୀ ପାନ୍ଥସମ କରେ ହାହାକାର ।

କୁଞ୍ଜରିକା ଗଲା ଚାଲି, ସେ ନାଗନନ୍ଦିନୀ
କର-କୋକନଦେ ରଖି ବଦନ-କମଳ
ବିଚ୍ଛୁରିତ କଲା ଧୀରେ ବଦନ ଚାହାଣି
ବାତାୟନ ଭେଦି ଦୂର ବିନ୍ଧ୍ୟ ବନାନୀରେ ।
ଶୀତଳ ହେମନ୍ତ ସନ୍ଧ୍ୟା ଆସୁଥିଲା ମାଡ଼ି
ଧୀରେ ଧୀରେ ଜଳସ୍ଥଳେ, ଅସ୍ତରବି-ରାଗ
ଖସୁଥିଲା ପୂର୍ବେଁ ଧୀରେ ଦେଖାଇ କ୍ରମଶଃ
କ୍ରମ ନୀଳିଭୂତ ଦେହ ପ୍ରାଚୀ ଦିଗ୍‌ଗଜର ।
ବନସ୍ପତି ପ୍ରତି ପତ୍ରେ ଆଲୋକ ଅନ୍ଧାର
ଦୁଇ ପାଶୁ ଆଣି ମୁଖ ପତ୍ର ଧାରେ ଧାରେ
ଦେଉଥିଲେ ପରସ୍ପରେ ବିଦାୟ-ଚୁମ୍ବନ ।

କମ୍ପିତ ବସନାଞ୍ଚଳ ସମ ପ୍ରଦୋଷର
ହେମ-କାନ୍ତ ପକ୍ୱଶାଳି କେଦାରେ କେଦାରେ
କମ୍ପୁଥିଲା ମନ୍ଦ ମନ୍ଦ, ପ୍ରଦୋଷ ବିହଗ
ସ୍ୱର୍ଣ୍ଣ-କରେ ରଞ୍ଜି ପକ୍ଷ, ଯାଉଥିଲେ ଉଡ଼ି
ଆକୁଳେ କୁଳାୟମୁଖେ । ବିଷଣ୍ଣ ଉଲୂପୀ
କହିଲା ଉଦାସେ ଚାହିଁ—''ଏହି ସନ୍ଧ୍ୟା ସମ,
ଏହି ସନ୍ଧ୍ୟା ସମ କେତେ ସନ୍ଧ୍ୟା ଅଛି ଯାଇ,''—
ଆଉ ସେ ପାରିଲା ନାହିଁ । ସ୍ୱର୍ଣ୍ଣନାସାପୁଟ
ଥରିଲା ନିଃଶ୍ୱାସ-ବେଗେ, କନକକପୋଳ
ପାଟଳ ହୋଇଲା ଦୁଃଖେ,—ବନ୍ଧୁର ଉରଜ
ସହସା ପୀବର ହେଲା ତିକ୍ତ ତପ୍ତଶ୍ୱାସେ ।

ଏକାଳେ ଦେଖିଲା କ୍ଷେମା ଶାନ୍ତ ନଭ ବାହି
ଯାଉଥିଲେ ଉଡ଼ି ଏକ ବିହଗଦମ୍ପତି
ସୁଦୂର ବନାନୀ ଦିଗେ,—ତାଙ୍କ କଳରବେ
ମୁଖରିତ ହେଉଥିଲା ଗଗନ-ସରଣୀ ।
ଏକ ଯଦି ପଛେ ରହେ, ଆନ ତାକୁ ଆଗୁ
ଡାକଇ ଲଳିତ କଣ୍ଠେ; ସମଗତି ହେଲେ
ପରସ୍ପର ପକ୍ଷ ବାଜେ ଅଙ୍ଗେ ଅନ୍ୟୋନ୍ୟର,
ଊର୍ଦ୍ଧ୍ୱ-ଅଧଃ, ଆଗ-ପଛ, ବାମ-ବାମେତରେ
ଭାଙ୍ଗି ଗତି ନାନାଭାଗେ, ଯୁଗଳ ପ୍ରଣୟୀ
ଧୀରେ ଧୀରେ ଲୀନ ହେଲେ ଦୁଇ ବିନ୍ଦୁସମ
ଅନନ୍ତ ଆକାଶ ତଳେ । ତାଙ୍କୁ ଚାହିଁ କ୍ଷେମା,
ଆସନ୍ନ ବିରହ ସ୍ମରି, ନେତ୍ର-ନୀଳୋତ୍ପଳ
ବିସ୍ତାରିତ କଲା ଦଣ୍ଡେ, ଦୁଇ ନେତ୍ର-କୋଣେ
ଦୁଇ ବିନ୍ଦୁ ନୀରକଣା ଘନ ପ୍ଲକ୍ଷ୍ମ ପରେ
ସହସା ଲଭିଲା ଜନ୍ମ ଶ୍ୟାମଦୂର୍ବାପରେ
ନିଶାନ୍ତ ଶିଶିରସମ । ଦୁଇ ବିନ୍ଦୁ କ୍ରମେ
ବହୁ ବିନ୍ଦୁ ହେଲା ଧୀରେ ତରଳହୀରକ
ପରି ସେ ଲୋତକ-ରେଖା, ଦୁଇଗଣ୍ଡ ବାହି
ସିକ୍ତ କଲା କର ଦୁଇ, ସ୍ଫୁରିଲା ଅଧର ।
କର-ପତ୍ରେ ମୁଛିନେଇ ଲୋତକ-ମୁକୁତା,
କହିଲା ସେ ତପ୍ତଶ୍ୱାସେ—''ସମ୍ବର ହୃଦୟ,
ସମ୍ବର ଏ ଅଶ୍ରୁରାଶି । ଦୀର୍ଘ ତ ଜୀବନ ।
ସମ୍ମୁଖେ ରହିଛି ପଡ଼ି, ଅଗଣ ନିଶୀଥ
ସିକ୍ତ ହେବ ମୋ ଲୋତକେ । ଆଜୁଁ ଏ ବ୍ୟଥିତ
କି ଲାଭ ଆଣିବ ମତେ ? ବିରହ-ବ୍ୟାକୁଳ
ଅଜ୍ଞାତ ଅନ୍ଧାର ପଥେ ଦୁର୍ବଳ ବାଳିକା
ପଦ ଚାଳୁଁ, ବାରମ୍ବାର ତିକ୍ତ ରିକ୍ତତାରେ
ବୁକୁ ତା ଫାଟି କି ଝଡ଼ି ନ ପଡ଼ିବ ଭୂମେ
ବିଞ୍ଚି ଦେଇ ଅସମ୍ଭାଳେ ପ୍ରଣୟ-ମୁକୁତା
ସଞ୍ଚିତ ଯା ହୃଦ-ପୁଟେ ? କିଏ ସେ ସେକାଳେ
ପାଶେ ହୋଇ ଠିଆ ସ୍ନେହେ, ପୋଛି ନେତ୍ର-ନୀର

ବକ୍ଷେ ଭିଡ଼ି ବାହୁଯୁଗେ ଚୁମ୍ବି ନେବ ଶୋକ ?
ଯେ ଦୁଃଖ ଏ ଜୀବନରେ ନୁହେ ଶମିବାର,
ଉଚିତ ନୁହଇ ତାକୁ ଦେବାର ଇନ୍ଧନ
ବାରବାର ଅଶ୍ରୁ ଢାଳି । ଅନ୍ତର-ମନ୍ଦିରେ
ରହୁ ସେ ଗୋ, ଦଗ୍ଧ କରି ଆପଣାରେ ଆପେ
ଅବଶେଷ ରଖି ମାତ୍ର ଭସ୍ମ ଆପଣାର ।

ତଥାପି କେମନ୍ତେ ମୁହିଁ ନବଯଉବନୀ
ଅଙ୍ଗେ ଅଙ୍ଗେ ଧରି ଏହି ରସାଳ ବୟସ,
ହୃଦୟେ ଧରି ଏ କ୍ଷୁଧା, ଆତ୍ମାରେ ପିପାସା,
ମନରେ ପ୍ରଣୟ-ସ୍ୱପ୍ନ, ଶୋଣିତେ କ୍ରନ୍ଦନ
ସହିବି ଜୀବନ ଲାଗି ବିଚ୍ଛେଦ ପ୍ରିୟର ?
ଫାଲ୍‌ଗୁନି ଚଳିବେ ଏଥୁଁ—ସ୍ମରିଲେ ଏ କଥା
ବଜ୍ରସମ ହାଣି ହୁଏ ଅବଳାର ବୁକେ ।
କେମନ୍ତେ ଭୁଲିବି ଯେଉଁ ପ୍ରଣୟ ବାସର
ଯାପିଲି ଏ ପ୍ରାସାଦରେ ପ୍ରଣୟୀ ସଙ୍ଗତେ
ରସୋଚ୍ଛଳ କରି ପ୍ରତି ମୁହୂର୍ତ୍ତ ଦିନର
ତୀବ୍ର ପ୍ରେମମଦ ସେକେ ? କେମନ୍ତେ ଭୁଲିବି
ଏମନ୍ତ ହେମନ୍ତ ସନ୍ଧ୍ୟା,—ଯେବେ ପ୍ରିୟ ମୋର
ପାରିଧିରୁ ଫେରି ମୋତେ ଚମକିବା ଲାଗି
ଧୀରେ ଧୀରେ ଆସି ପଛୁଁ ପଶନ୍ତି ମନ୍ଦିରେ
—ଜାଣି ମୁଁ ନ ଜାଣି ରହେ ଅନାଇ ସୁଦୂରେ—
ପ୍ରିୟ ମୋର ଚକ୍ଷୁ ବୁଜି ପଚାରନ୍ତି—'କିଏ'— !

କେମନ୍ତେ ଜ୍ୟୋଛନାରାତ୍ରେ ତୁଙ୍ଗ ବଡ଼ଭୀରେ
ପାରି ମୁଁ ବାସକ-ଶଯ୍ୟା କପଟରେ ଶୋଇ
ଚେଇଁଥାଏ ପ୍ରିୟ ଲାଗି,—ପ୍ରିୟ ଆସି ପାଶେ
ନିଦ୍ରିତ ଜାଣିଣ ମତେ ଚୁମ୍ବନ୍ତି କପୋଳେ,
ଉଠି ମୁଁ କପଟକ୍ରୋଧେ କରେ ତିରସ୍କାର ।

କେମନ୍ତେ ବୈଶାଖତପ୍ତ ମଧ୍ୟାହ୍ନେ ସେ ପ୍ରିୟ,
ଖୋଜି ଖୋଜି ଗୃହେ ଗୃହେ ମତେ ଅନୁସରି
ଆସନ୍ତି ଯହିଁ ମୁଁ ଥାଏଁ ସଖୀଜନମେଳେ—

ସଖୀଜନେ ଯା'ନ୍ତି ଚାଲି । ପଚାରିଲେ କେବେ
'କେମନ୍ତେ ଆସିଲ ଏଥି'—କହନ୍ତି ରସିକ
'ଫୁଟୁ ପଛେ ପୁଷ୍ପ କେଉଁ ବନ-ବନାନ୍ତରେ
ତା କି ନାହିଁ ଜାଣିପାରେ ବୁଭୁକ୍ଷୁ ଭ୍ରମର ?'—
ତା'ପରେ ବସିବେ ଧୀରେ ଶଯ୍ୟା ପ୍ରାନ୍ତ ଧରି
ସାଉଁଳିବେ ଅକାରଣ ବାରଣ ନ ମାନି
ମୋର ତାପକ୍ଲାନ୍ତ ଦେହ; ପୋଛିଦେବେ ହାତେ
ବାରବାର ସ୍ୱେଦ-ସ୍ରୋତ ବକ୍ଷରୁ ସେନେହେ,
ବିଞ୍ଚିଦେବେ ତାଳବୃନ୍ତେ କରୁ କରୁ ମନା—
ଏ କି ଗୋ ପାସୋରଯାଏ ? ବୀର ଅଙ୍ଗୁ ସିନା
ଶରାଘାତ ଶମେ କାଳେ, ରହଇ ତ ବ୍ରଣ ?
ପ୍ରଣୟର ସ୍ମୃତି ପ୍ରାଣେ ରହି ସେହିପରି
ନିଃସଙ୍ଗ ନିଶୀଥେ ମମ କୋମଳ ଶୟନ
ନାହିଁ କି କରିବ ବାରବାର କଣ୍ଟକିତ ?
ଏହି ଗୃହ, ଏହି ବନ, ଏହି ହ୍ରଦ-ତଟ
ପରିଚିତ ଏହି ସ୍ଥଳୀ,—ପ୍ରିୟ ସଙ୍ଗ ହେତୁ
ନବ ଅର୍ଥ, ନବ ରୂପ ଘେନିଲେ ମୋ ଲାଗି—
ପ୍ରିୟ-ହୀନ ଜୀବନର ଦିବସ-ରଜନୀ
କେମନ୍ତେ କାଟିବି ପୁଣି, ଦେଖି ଏଇମାନ ?
ପ୍ରତି ପଦେ ଯହିଁ ତହିଁ ନେତ୍ର ମୋ ପଡ଼ିବ
ଫାଲ୍‌ଗୁନି ଉଠିବେ ନାଚି,—ପ୍ରାଚୀନ ପ୍ରଣୟ
ମୂର୍ତ୍ତି ହୋଇ କରତିବ ଅସହାୟ ମତେ ।
କେମନ୍ତେ ଚଞ୍ଚଳ ସେ ଯେ ! ପୁରୁଷ ନିଷ୍ଠୁର
ବୋଲି ଶୁଣିଥିଲି ଯାହା; ଦେଖିବାକୁ ହେଲା
ନିଜ ଅନୁଭବେ ମତେ । ମୋର ଏ ବେଦନା
ବୁଝନ୍ତିନି ସେ କି ପ୍ରାଣେ ? ବିରହ-ବିଚ୍ଛେଦ
ଆଣୁଛି କି ତାଙ୍କ ଚିତ୍ତେ ବିପ୍ଳବ ମୋ ପରି ?

ଭାବନ୍ତି କି ପାର୍ଥ, ତାଙ୍କ ବିରହରେ ଏଥି
ଧରଣୀର ଏକ କୋଣେ, କେ ଏକ ବାଳିକା
ଲୋଟିବ ଧରଣୀତଳେ, ଡାକି ଡାକି ବୁକେ

ବାରମ୍ବାର ତାଙ୍କ ନାମ ? ପାଷାଣ-ପୁରୁଷ
ଶୁଣି କି ପାରିବେ ସେହି ବାଳିକା-ବିଳାପ,
ଦୂରେ ରହି ଗୌରବର ଉନ୍ନତ ଶିଖରେ
ଧନ୍ୟ ହୋଇ ଜନତାର ମୁଗ୍ଧ ବନ୍ଦାପନେ ?
କି ଭ୍ରମ କଲି ମୁଁ ସତେ ! କାହିଁକି ବିକିଲି
ଏ ପ୍ରାଣ ଏପରି ଏକ ନିଷ୍ଠୁର ପୁରୁଷେ !''

ନୀରବିଲା ତହୁଁ ଦଣ୍ଡେ ବିରହ-ବ୍ୟଥିତା
ତେଜି ଖର ଦୀର୍ଘଶ୍ୱାସ, ଭାବିଲା ସେ କିବା
ନେତ୍ର ରଖି କରଜରେ । ପ୍ରିୟର ଭର୍ତ୍ସନା
ଆଘାତ ଆଣୁଁ, ସେ ନିଜେ ଧିକ୍କାରି ନିଜରେ,
କହିଲା ତା କଥା ପୁଣି—
''କାହିଁକି ବା ଛି ! ଛି !
ନିନ୍ଦୁଛି ପ୍ରିୟରେ ମୋର ! ପୁରୁଷ-ପୁଙ୍ଗବ
ସେ କିପାଁ ରହିବେ ବନ୍ଦୀ ମୋ ଛାର ପ୍ରଣୟେ ?
ନିର୍ଦ୍ଦିଷ୍ଟ ପ୍ରଣୟ ତାଙ୍କ ଭୋଗି ଏତେ ଆହା
କାହିଁକି ନିନ୍ଦିବି ଆଜି ? ପ୍ରଥମେ ଯେ ଦିନ
ଅର୍ପିଲି ଏ ପ୍ରାଣ ତାଙ୍କ ଚରଣଯୁଗଳେ,
ଜାଣି କି ନ ଥିଲି ମୁହିଁ, ଚିରଦିନ ଲାଗି
ଫାଲ୍‌ଗୁନି ନୁହନ୍ତି ମୋର ? ଅବତୀର୍ଣ୍ଣ ସେ ଯେ
ଶମିବାକୁ ଧରାଭାର,—ନାଶିବାକୁ ବ୍ୟଥା
ଅତ୍ୟାଚାର-ନିଷ୍ପେଷିତ ଦୀନ ଜନତାର;
ସେ କିପାଁ ରହିବେ ଏଥି ପ୍ରଣୟବିଳାସେ,
ଛାର ଏକ ଯୁବତୀର ଭୁଜ-ବିବନ୍ଧନେ ?
ମୋ ବେଣୀ-ବନ୍ଧନ ତେଜି ତାଙ୍କ ବୀର କର
ଗାଣ୍ଡୀବରେ ଗୁଣ ଯୋଖୁ, ସିନ୍ଦୂର ମୋ ଭାଲେ
ଲଗାଇବା ଲାଗି କ୍ଷିପ୍ର ନୋହି ସେ ଅଙ୍ଗୁଳି
ଦ୍ରୁତ ହେଉ ଶର ଲକ୍ଷ୍ୟେ, ଦୁଷ୍ଟ-ବିନାଶନେ ।
କାନନକୁସୁମେ ଅଳି ଚୁମ୍ବେ ଥରେ ସିନା,
ଚାତକରେ ଜଳ ଦିଏ ବର୍ଷଣ ବାରିଦ
କେବଳ ପ୍ରାବୃଟେ ସିନା, ମୋର ଏ ଜୀବନେ

ପ୍ରଣୟର ହେଲା ଏବେ ଭୋଗ ସେଇପରି ।
ଏଇ କେତେ ମୁହୂର୍ତ୍ତର ଗଭୀର ପ୍ରଣୟ
ନିଖିଳ ଜୀବନେ ବ୍ୟାପୀ କରୁ ମଧୁମୟ ।
ମୋ ଲାଗି ଅର୍ଜୁନେ ଏଥି ବାନ୍ଧି ରଖି ପ୍ରେମେ
ତାଙ୍କର ବିଜୟ-ପଥେ ହେଲେ ମୁଁ କଣ୍ଟକ,
ସେ କି ହେବ ପ୍ରେମ ସତେ ? କୋଟିଏ ମୋ ପରି
ବିନାଶ ହୁଅନ୍ତୁ ପଛେ,—ତାଙ୍କ ଭସ୍ମ ଘେନି
ପ୍ରିୟର ବିଜୟ-ପଥ ଗଢ଼ାହେଉ କିନା !
ବିଚ୍ଛେଦ-ବିରହ-ବ୍ୟଥା ଆସୁ ଯେତେ ଯାହା
ସହିବି ସେସବୁ ମୌନେ ପ୍ରିୟ ଲାଗି ମୋର,
ତପସ୍ୟା ସେ ହେବ ମୋର ତାଙ୍କ ଯଶ ଲାଗି
ଅସୀମ ବେଦନାନଳେ ଦହି ଏ ପରାଣ
ଧୂପ ସମ ଜାଳିଦେବି ଏ ଜୀବନ ମମ
ମୋ ପ୍ରିୟ ଗୌରବ ଲାଗି,—ପ୍ରେମ ସେ କି ନୁହେଁ ?
ପ୍ରେମ କି କେବଳ ଭୋଗେ ଅଙ୍ଗେ ଅଙ୍ଗ ମେଳେ,
ଅଧରୁ ଅଧରପାନେ, ଶରୀର ଆଘ୍ରାଣେ,
ଏ ଦେହର ରସ ଭୋଜ୍ୟେ ? ପ୍ରିୟଜନ ଲାଗି
ଜାଳିବା ଜାଗର ବସି ନିଶୀଥେ ନିଶୀଥେ,
ତେଜି ଧୀରେ ପ୍ରେମ-ଦୀପ ନିଃସଙ୍ଗ କୁଟୀରେ,
ଶୁଖାଇବା ନେତ୍ରୁଁ ନୀର, ଶୁକ୍ଳାଇବା କେଶ
ସେ କି ନୁହେଁ ପ୍ରେମ ସତେ ?
ଗର୍ଭେ ଅଛି ଧରି
ପୁଣି ମୁଁ ପରମ ପ୍ରେୟ ବୀଜ ତେଜୋମୟ
—ମୋ କରେ ମୋ ପ୍ରଣୟୀର ଶ୍ରେଷ୍ଠ ଉପହାର—
ନବୀନ ଜୀବନ-ବିନ୍ଦୁ ପ୍ରଣୟ-କୁସୁମ ।
ମୋର ଏ ତରୁଣୀ ବକ୍ଷ ତପ୍ତ ହୋଇଉଠେ
ଭାବିଲେ କେମନ୍ତେ ସେହି ନବ ସର୍ଜନାରେ
ଏ ବକ୍ଷର ରସ ଦେଇ କରିବି ଜୀବନ୍ତ ।
ସେହି ଦାନେ, ସେ ପାଳନେ, ସେହି ସ୍ପର୍ଶ-ସୁଖେ
ପ୍ରିୟର ସକଳ ସ୍ମୃତି ହୋଇ ରସ-ଘନ

ମୋର ପ୍ରତି ଲୋମେ ଲୋମେ ନିକି ସଞ୍ଚାରିବ
ଆନନ୍ଦ ବିଦ୍ୟୁତ୍‌ରେଖା ? ତରୁଣ-ଅର୍ଜୁନେ
ବକ୍ଷେ ଭିଡ଼ି ଅନ୍ଧ ସ୍ନେହେ ଲଭିବି ମୁଁ ନିକି
ପ୍ରବୀଣ ଫାଲ୍‌ଗୁନି-ସ୍ନେହ, ପୁଣି ନୂଆ କରି !
ଅସ୍ତଗାମୀ ହେଲେ ଦେହୁଁ ଯୌବନ-ତପନ,
ଶାନ୍ତ ହେଲେ ଅନ୍ତରରୁ ପ୍ରଣୟ-ପିପାସା,
କ୍ଲାନ୍ତ ହେଲେ ଅଙ୍ଗୁ ଅଙ୍ଗୁ ଅନଙ୍ଗବିଳାସ,
ଯୌବନ-ଦ୍ରବ୍ୟେ କି ହୁଏ ପ୍ରିୟ ବନ୍ଦାପନା ?
ଏହି ଯେଉଁ ରାଜୋଦ୍ୟାନ, ଏ କି କରେ ପୂଜା
ଏକପୁଷ୍ପେ ତପନରେ ସର୍ବ ଋତୁ ଧରି ?
ପ୍ରଭାତେ ଯେ ଅର୍ଘ୍ୟଥାଳି ସଜାଡ଼ି ଧରଣୀ
ବନ୍ଦଇ ତପନେ ଟେକି, ଗୋଧୂଳି ଲଗନେ
ପୂଜେ କି ସେ ସେହି ଘେନି ? ପ୍ରେମେ ସେହିପରି
ଏକରାଗେ ପୂଜାପୂଜି ନିଖିଳ ଜୀବନେ
କେମନ୍ତେ ଘଟିବ ପ୍ରିୟ-ପ୍ରଣୟିନୀ ମେଳେ ?
ଯୌବନ ବାଢ଼ିଲା ସିନା ପ୍ରିୟ ପଦ ତଟେ
ପୁଷ୍ପିତା ଏ ଦେହ-ଲତା, ସୁରଭି ବ୍ୟାକୁଳ;
ଝାଉଁଳିଆସିବ ଯେବେ ପଲ୍ଲବ-ସୁମନ
ଏ ଅଙ୍ଗଲତାରୁ କ୍ରମେ, କି ଘେନି ପୂଜିବି,
ନାରୀ ମୁଁ, ମୋ ପ୍ରିୟଜନେ ? ଜୀବନ-ସନ୍ଧ୍ୟାରେ
ପ୍ରବୀଣ ସେ ବୀର-ପଦେ ଥୋଇଦେବି ଯେବେ
ତରୁଣ ଅର୍ଜୁନ ଏକ-ଶୌର୍ଯ୍ୟର ପ୍ରତିମା—
ସେ କି ନାହିଁ ହେବ ମୋର ଶ୍ରେଷ୍ଠ ଉପହାର ?
ସେହି ହେଉ ତପ ମୋର । ଶୂନ୍ୟ ଏ ପ୍ରାସାଦେ,
ପ୍ରିୟହୀନ ଏ ଭୁବନେ, ତାଙ୍କ ସ୍ମୃତି ଧରି,
ନୟନ-ତରଳ-ବାଷ୍ପ ନେତ୍ରେ ନେଇ ମାରି
କରିବି ତାଙ୍କର ପୂଜା । ଯାଆନ୍ତୁ ମୋ ପ୍ରିୟ,
ବିଦାୟର ଦଣ୍ଡ ତାଙ୍କ ହେଉ ଜୟଶୀଳ;
ବାରଣ କରି ମୁଁ କିପାଁ ହେବି ଅମଙ୍ଗଳ
ତାଙ୍କର ବିଜୟପଥେ,—ଯାଆନ୍ତୁ ସେ ସୁଖେ ।

ନାରୀ-ଚରିତ ତ ଏହି,—ପ୍ରିୟରେ ତାହାର
ପିନ୍ଧାଇ ମୁକୁଟ ଶିରେ, ଖଞ୍ଜାଇ ତୂଣୀର,
ବନ୍ଧାଇ କଠିନ ବର୍ମ କାନ୍ତ-ଶାନ୍ତ କରେ,
ନଚାଇ ତା ବୀରରକ୍ତ କଙ୍କଣ-ରୁଣିତେ
ପଠାଇବ ରଣଭୂମେ;—ତା ପରେ କୁଟୀରେ
ସତୀତ୍ୱ-ପ୍ରଦୀପ ଜାଳି ପ୍ରିୟ-ଯଶ ଲାଗି
ପୂଜିବ ତା ଇଷ୍ଟଦେବ ।

ତାହାହିଁ ମୁଁ କରେ ।

———

## ଜେମା

## ପ୍ରଥମ ପର୍ବ

### (ପୂର୍ବଭାଗ)

ଦକ୍ଷିଣ-ସମୁଦ୍ର ତୀରେ ଗୁଡ଼ିକଙ୍କ ଯେ ବାଲିରେ
ବାଧାହୀନେ ଉଡ଼ିଯାଏ ବେଳା ବିଚରି,
କ୍ଷୀଣାଙ୍ଗ ହରିଣଗଣ ଖାଇ ସଇକତ ତୃଣ
ଡିଅଁତି ଉତ୍ସାହେ ବାଲି ମନ୍ଥନ କରି,
ବାଲିବନ୍ତେ କଇଁସିଲତା
କରେ ଥାନେ ଥାନେ ମରୁ ଶ୍ୟାମଳ-ସତ୍ତା ।୧।

ହେଲେ ଠିଆ ବାଲିବନ୍ତେ କୂଳରୁ ଦୂର ଦିଗନ୍ତେ
ଭାସିଉଠେ ଯହିଁ ନୀଳ ବାରି-ବଳୟ
ରଜତ-ଝୁମ୍ପା ସମାନ ଫେନବୃଡ଼ ଉର୍ମିମାନ
ଝୁଙ୍କି ବେଳା କରୁଥାନ୍ତି କୁସୁମମୟ,
ଉଡ଼ି ଉର୍ଦ୍ଧ୍ୱେ ବିହଗଗଣ
ନୀଳ ବ୍ୟୋମେ କରୁଥାନ୍ତି ମାଳା ରଚନ ।୨।

ବିରାଟ ବାରିଧି ଯହିଁ ଅନନ୍ତ ଅମ୍ବରେ ଚାହିଁ
ବେଳା-ଲମ୍ବୀ ଓଷ୍ଠେ ହସେ ଫେନିଳ ହାସ୍ୟ
ତପନ-ତାରକା ତଳେ ମହାକାଳ ପଟ ପରେ
ଜଳର ତାଣ୍ଡବ ଜଳବାଳାଙ୍କ ଲାସ୍ୟ,
ଲାଗିଅଛି ଅନବସରେ,
ତାଳ ଦେଇ ପ୍ରଭଞ୍ଜନ-ପ୍ରମତ୍ତ-କରେ ।୩।

ଅନାଦି କାଳୁଁ ଗରଜି ଫେନ-ପୁଷ୍ପମାଳେ ସାଜି
ଯୁଗ-ଯୁଗ ଧରି ସିନ୍ଧୁ କରେ ତାଣ୍ଡବ,
ଉର୍ଦ୍ଧ୍ୱେ ରହି ମହାକାଶ, ନିତ୍ୟ ନବ ନବ ବେଶ,
ମଉନେ ଦେଖୁଛି ସେହି ନୃତ୍ୟ ଉତ୍ସବ,

ମହାଦ୍ରଷ୍ଟା, ମହାନଟର
ଶେଷ-ହୀନ ନୃତ୍ୟ-ଭୋଗେ ବେଳା ମୁଖର ।୪।

ସେ ବେଳାରେ ଛାଡ଼ି ଛାଡ଼ି ଖଣ୍ଡ-କେତେ ଗ୍ରାମ ମାଡ଼ି
ରହିଛି ପୁନ୍ନାଗ-ଲଙ୍କାଆମ୍ବ ଉଢ଼ାଳେ,
ଅନନ୍ତ ଆକାଶ ତଳେ ଲୀଳାଲୋଳ ବେଳା ପରେ
ନର ନିଜ କ୍ଷୁଦ୍ର ଲୀଳା-ଶିବିର ତୋଳେ;
ଚିରନ୍ତନ ସେ ଲୀଳା ପାଶେ
କ୍ଷଣିକ ମାନବ ଫୁଟେ, ବିକାଶେ, ନାଶେ ।୫।

ବାଲିବନ୍ତେ ଲଙ୍କାଆମ୍ବ ଯହିଁ ଚନ୍ଦ୍ରାତପ ତାମ୍ର
ଟାଣିଦିଏ ଶ୍ରମଶ୍ରାନ୍ତ କୃଷକ ପାଇଁ,
ବର୍ଷାଗମେ କିଆଫୁଲ କରି ସୁଗନ୍ଧ-ଆକୁଳ
ଫୁଟେ ଯହିଁ ବିଲବାଡ଼ି ଉଢ଼ାଳେ ଥାଇ,
ଝାଉଁବନେ ସିନ୍ଧୁ-ପବନ
କରେ ଯହିଁ ଅହରହ ବଂଶୀବାଦନ ।୬।

ଏହିପରି ଏକ ଗ୍ରାମେ କେଜାଣି ସେ କିବା ନାମେ
ଖଣ୍ଡାଇତ ଦଳପତି ଥିଲେ ନିବସି,
ନାମ ଜାଣନ୍ତିନି କେହି ଲୋକେ ଡାକନ୍ତି 'ଦଳେଇ'
ଦାନ୍ତ ପାନପଚା, କାନେ ନୋଳି ଝଲସି,
ପଡ଼େ କାନ୍ଧେ ଝୁମ୍ପୁରି ବାଳ
ବ୍ୟସ୍ତ ନିଶ ମୋଡ଼ିବାରେ ଅଙ୍ଗୁଳିଜାଳ ।୭।

ଖଣ୍ଡାଇତ ସେ ବସତି କେତେ ଉପାଧିକ ଛନ୍ତି
ଘରେ ଘରେ ଆପେ ଆପେ ଖାଣ୍ଡି ବନ୍ଧାଣ,
ହେଲେ କିସ ଦଳେଇଏ ସଭା ରେ ନଥିଲେ ଡ଼ିଏ
ପକାଇବେ ନାହିଁ କେଭେ ନ୍ୟାୟ ଭିଆଣ,
ନାହିଁ ତାଙ୍କ ଛନ୍ଦ କପଟ,
ହସୁଥିବେ ସିନା, ଥିବେ ନ୍ୟାୟର ପଟ ।୮।

ଥିଲା ପୂର୍ବେ ରାଜସେବା, ଏବେ ପଚାରୁଛି କେ'ବା
ବାପା ତାଙ୍କ ପାଉଥିଲେ ରାଜ-ହକରା,

ତାଙ୍କ କାନ୍ଧେ ଦେଇ ହାତ                    ମଣିମା ପହଣ୍ଡେ ବାଟ
ଚାଲିଥିଲେ ମଝିଦାଣ୍ଡେ କେବେ ସେ ପରା !
ସେହି ଭାଗ୍ୟ ସାରା ଜୀବନ
କରୁଥାନ୍ତି ବୁଢ଼ା ଦଳେଇଏ ବର୍ଣ୍ଣନ ।୯।

ଯାଇଛି ଚାଲି ସେ କାଳ                    ହାତେ ଧରି ତଲବାର
ଦାଣ୍ଡକୁ କୁହାଟି ଖଣ୍ଡାଇତ ଡେଇଁବା
ଖଣ୍ଡାମୁନେ ମଥା ଛୁଇଁ                    ମଣିମାଙ୍କ ଆଗ ଭୂଇଁ
ମତ୍ତ-ହାତୀ ପରି ଖେଳି ଧସେଇଯିବା;
ମଣିମା ତ ହେଲେ ସାଇବ,
ପଟୁଆରେ ଦଳେଇଁକି କିଏ ଡାକିବ ? ।୧୦।

ହେଲା ନୂଆ ସରକାର                    ଛାଡ଼ି ତୀର, ତଲବାର
ନଷ୍ଟ-ନଖ ବାଘ ପରି ହେଲେ ପାଇକେ,
ହେଲେ କ୍ରମେ ତେଜହୀନ                    ମହିମା ହୋଇଲା କ୍ଷୀଣ
ଦୁଃଖ ତାଙ୍କ ବୁଝିବାକୁ ଦେଶେ ଅଛି କେ ?
ଗଲା ଚାଲି ରାଜ-ସମ୍ମାନ,
ଲଢ଼େଇ ନ କରି, ହାତ କାଟିଲା ଧାନ ।୧୧।

ହେଲେ କି ହେଲା ତଥାପି                    ଶତ ଶତ ବର୍ଷ ବ୍ୟାପୀ
କୁଳ-ଧରମ କି ଭୁଲି ହୁଏ ସହଜେ ?
ସବୁ ସିନା ଗଲା ଚାଲି                    ରକତ କେ ନେବ କାଢ଼ି
ଶିରାରେ ଶିରାରେ ଏବେ ମିଶେ ଗରଜେ,
ଅପମାନେ ନିଶକୁ ଛାଁଟି
ଏବେ ମିଶେ ଖଣ୍ଡାଇତ ଉଠେ କୁହାଟି ।୧୨।

ଉଚ୍ଚ ଖଣ୍ଡାଇତ ନାମେ                    ଆଖପାଖ ବହୁ ଗ୍ରାମେ
ଦଳେଇଁକି ବହୁ ପୁରୁଷରୁ ଖାତିରି,
ତାଙ୍କର ହେବାକୁ ମିତ                    ବହୁ ଲୋକ ଲାଳାୟିତ
ନ ଥିଲେହେଁ କିଛି ପୂର୍ବ ବିଭବ ଶିରୀ,
ଇତିହାସୁ ମହତ୍ୱ ଝରେ,
ବର୍ତ୍ତମାନେ ସହାୟତା ଅତୀତ କରେ ।୧୩।

ଦଳାଇଏ ଶିବ ସମ ପତ୍ନୀ ତାଙ୍କ ଅନୁପମ
ଗାଆଁଟିକୁ ଅନ୍ନପୂର୍ଣ୍ଣା ପରି ଅଛନ୍ତି
ନୋଥ, ଦଣ୍ଡି, ଫୁଲଗୁଣା ଆଦି ଭୂଷଣ ପୁରୁଣା
ପିନ୍ଧି, ବଧୂ ପରି ଏବେ ମଧ ଦିଶନ୍ତି,
ଭୋକୀ ରଙ୍କୀ ତାଙ୍କ ହାତରେ
ଖୁଦ ପାଇ ମଧ ଫେରେ ମୁଦ ଚିତ୍ତରେ ।୧୪ ।

ଦୁଇ ପୁତ୍ର, ଦୁଇ କନ୍ୟା ଜନ୍ମି ଦଳିୟାଣୀ ଧନ୍ୟା
(ଲାବଣ୍ୟ ସେପରି ଆଉ ନାହିଁ କାହାଠି)
ବଡ଼ ହୋଇ ଦୁଇ ଭାଇ ଶିଖିଲେଣି ବାପା ଥାଇ
ବିଲବାଡ଼ି ବୁଝିବାର ହୋଇ ଏକାଠି,
ଚଳରୂପ ଦୁଇ ଭଗିନୀ
ଯେ ଚାହିଁଲା, ହେଲେ ସେ ତା' ସ୍ନେହଭାଗିନୀ ।୧୫।

ବଡ଼ ପଦ୍ମାବତୀ ନାମ୍ନୀ ତନ୍ୱୀ, କର୍ଣ୍ଣିକାରବର୍ଣ୍ଣୀ
କାନ ନୋଳି ପ୍ରତିବିମ୍ବ ଗଣ୍ଡେ ଝଳିତ,
ଜେମା ତା' ଭଉଣୀ ସାନ, ଅଙ୍ଗ ପାଇଛି ରସାଣ
ଲାବଣ୍ୟ-ରସାଣେ, କରି ରୂପ ଲଳିତ,
ଦୁହେଁ ଘେନ ଚମ୍ପା, କହ୍ଲାର
ଦୁହେଁ ରସ-ଦେବତାର ଆଦର-ହାର ।୧୬।

ଦିନେ ଏକ ସୌଦାଗର, ରସିକ, କଙ୍କଣ-କର
ଯାଉଥିଲେ ସେହି ଗ୍ରାମ ଦେଇ ବଣିଜେ,
ପଥତଟ-ବଟମୂଳେ ଜନ, ଯାନ, ଧନ ତୁଳେ
ବିଶ୍ରମୁଁ, ଦେଖିଲେ ଦୂରୁଁ ଆଖିରେ ନିଜେ
ବଡ଼ ପଦ୍ମା କୂଅରୁ ପାଣି
ଟାଣି ସାନ ମୁଣ୍ଡେ ଗରା ଥୋଇବା ଆଣି ।୧୭।

ପାଣି ଘେନି ସୀମନ୍ତିନୀ- ମାନଙ୍କ ସଙ୍ଗେ ଭଗିନୀ
ଦୁହେଁ ଗଲେ ବୁଲି ଦୂରେ, ବିଦେଶୀ ଡରି,
ରସିକ ବଣିକ ଆଖି କାମିନୀ-ରେଖାରେ ଲାଖି
ଏକ ଏକ ରୂପ-ଭୂମେ ଗଲା ବିଚରି;

ଶେଷେ ବାଛି ଦୁଇ ଭଗିନୀ
ରୂପ-ପାୟୀ ବୃଦ୍ଧି ହେଲା ଅନୁରାଗିଣୀ ।୧୮।

ରସିକ, ବନ୍ଧୁରେ ଠାରି କହିଲେ, ''କିପରି ନାରୀ
ଦେଖୁଚ ସଙ୍ଗାତ, ଭୋଗଯୋଗ୍ୟ ଏ ନିକି ?
ପାଆନ୍ତେ କିପରି ସତେ, ଉପାୟ କହନା ମତେ
କି ସୁଖ ପାଇବ ଚିତ୍ତ ବଣିଜ ବିକି,
ଏତେ ରତ୍ନ ଦେଖି ନଗରେ
ଏ ରତ୍ନ ଦେଖିବା ଥିଲା କୃଷକ ଘରେ ? ।୧୯।

ପ୍ରାସାଦ ଅଟ୍ଟାଳି କାହିଁ ଆଖିରେ ତ ପଡୁନାହିଁ
ଦରିଦ୍ର ଗୁଡ଼ିଏ ଥିଲା ପରି ପରତେ,
ଏ ଥାନେ ଏ ରତ୍ନ ବୁଣି ମୂର୍ଖ କିଏ ଦେଲା ପୁଣି
ବିଜୁଳି କେ ନଚାଇଲା ମାଟି-ମରତେ !
ବନ୍ଧୁ ସତେ କର ସୁରାଖି
ରହିଲା ଯେ ଚିତ୍ତ ମୋର ଏଠାରେ ଲାଖି ।'' ।୨୦।

ଭଞ୍ଜଭୂମି-ଗଞ୍ଜାମରେ ବାସ, ତେଣୁ ସୌଦାଗରେ
ବନିତା-ବିଳାସେ କିଛି ଶ୍ରଦ୍ଧା ଅଧିକ,
ନାନାଭାବେ ନାରୀ-ରସ ପିଇ ଦେଖାଇବେ ଯଶ
ବୋଲି ନାରୀ-ମୃଗୟାରେ ମତ୍ତ ରସିକ,
ଜନକର ବିପୁଳ ଭୂତି
ବିଳାସ-ଲାଳସା-ଯଜ୍ଞେ ଦେଇ ଆହୂତି ।୨୧।

ତେଣୁ ନ ଜାଣିଲା ପରି ଫେରିଯାଇ ସ୍ୱନଗରୀ
ପଠାଇଲେ ଯୁବା ଦ୍ୱିଜ ଶ୍ରୀଫଳହାତେ
କହିଥିଲେ ତାର କାନେ, କେହ୍ନେ ତୀକ୍ଷ୍ଣ ପଞ୍ଚବାଣେ
ହତ ସେ, ମଦନ କେହ୍ନେ ପରାଣ କାଟେ;
କରିବାକୁ ତା' ପ୍ରତିକାର,
ପାଇବାକୁ କେଉଁ ପରି ତରୁଣୀ ସାର ।୨୨।

ବୁଝାବୁଝି ହେଲା କ୍ରମେ ଜଣାଗଲା ବିନା ଭ୍ରମେ
ଭଗିନୀଏ ଦଳାଇଙ୍କ କନ୍ୟାରତନ,

ଘଟକ ପାଇଲେ ବୁଝି ହେଲେ ରାଶି ସୁଝାସୁଝି
କଠିନ ନୁହଇ ଆଉ ହସ୍ତବଂଧନ,
ବିଦେଶୀଙ୍କ ବୁଝି ନିବାସ,
ଜାତିଭାଇ ସନମତି କଲେ ପ୍ରକାଶ ।୨୩।

କଥା ଦଳେଇଙ୍କ କାନେ ପଶୁଁ ବୋଇଲେ ''ଏ ଥାନେ
ନଦେବା କାହିଁକି କନ୍ୟା, ଏକ ତ ଜାତି,
ଧନଧାନ୍ୟ କୋଠାଘର ଗଂଜାମ ନଗରେ ଘର
ଦାଣ୍ଡରେ ଚାଲିଲେ ଲୋକ ଗୋଡ଼େଇଥାନ୍ତି;
ଯାଇଥିଲି, ଆସିଛି ଦେଖି;
ଆପେ ଆସିଥିବା ଭାଗ୍ୟେ କିପାଁ ଉପେକ୍ଷି ! ।୨୪।

ବନ୍ଧୁ ପୁଣି ଥିବା କରି ଅସମୟ ଗଲେ ପଡ଼ି
ସହାୟ ହେବାକୁ ପାଖେ ଆସିବେ ଧାଇଁ,
ଝିଅ ତ ପୁଣି ବିଧିରେ ଅଧିକାରୀ ସମ୍ପତ୍ତିରେ
ତା ହାତକୁ ଦଶଲୋକ ରହିବେ ଚାହିଁ,
ସମାସ୍କନ୍ଧ କେ ଅଛି ଆଉ ?
ଅନ୍ୟ ଘରେ ପିଲା ସିନା ରାନ୍ଧିବ ଯାଉ ।'' ।୨୫।

ଭାଗ୍ୟ ଦେଖି ନନ୍ଦିନୀର ଚକ୍ଷୁଁ ବୋହିଯାଏ ନୀର
ଗଳିତ ତୁଷାର ସମ ହୃଦ ତାଙ୍କର,
ଦଳେୟାଣୀ ତୁଳସୀରେ ବାରମ୍ବାର ନମି ଶିରେ
ରେଣୁମୟ କଲେ ଭାଲପଟ ସୁନ୍ଦର,
କହୁଥାନ୍ତି ସଖୀଙ୍କି କାନ୍ଦି
''ବସି ଖାଉ ପିଲା ମୋର ଜାଣିନି ରାନ୍ଧି'' ।୨୬।

ନିର୍ବନ୍ଧ ହୋଇଲା କ୍ରମେ; ନିର୍ଦ୍ଧାରିତ ଦିନ କ୍ଷଣେ
ମଙ୍ଗଳ-ଉତ୍ସବ ପୁଣି ଘଟିଲା ଆସି,
ଦଳେଇଏ ବସି କରେ ସମ୍ପି ଦେଲେ ବେଦୀପରେ
ଜ୍ୟେଷ୍ଠା କନ୍ୟା ପଦ୍ମାବତୀ ପଦ୍ମ-ବିକାଶୀ,
ବିଭାଘର ସେ ପଟୁଆର
ନାହିଁ ଘଟିଥିଲା ଇତିହାସେ ଗାଆଁର ।୨୭।

ଅନ୍ତଃପୁରେ ଏଣେତେଣେ ତରୁଣୀ ହରିଣୀ ଯେହ୍ନେ
ଘୂରିବୁଲୁଥାଏ କ୍ଷେମା, ପଦ୍ମା-ଭଗିନୀ,
ଯେତେହେଲେ କଲେ ମନା ବେଦୀ ଆଡ଼େ ତୁ ଯାଆନା
ଥରେ ଥରେ ଚାହିଁଯାଏ, ସେ କୁତୁକିନୀ,
ଚାହିଁଦେଲେ ଜାମାତା ଥରେ,
ବିପନ୍ନା ହରିଣୀ ସମ ପଳାଏ ଖରେ ।୨୮।

ଅସ୍ଫୁଟ କଳିକା ସିନା, ମୌନ ଅନାହତ ବୀଣା,
ଫୁଟିବ, ବାଜିବ, ଯେବେ ଚିତ୍ତ କିପରି
ହରିବ, ରସିକ ତା'କି ବୁଝିବାରେ ରହେ ବାକି,
ଦେଖିବା ଭବିଷ୍ୟ, ବର୍ତ୍ତମାନକୁ ଧରି !
ଧରି ଯୁବା ପଦ୍ମାର କର
କଳପନା କରୁଥାନ୍ତି କ୍ଷେମା-ରୂପର ।୨୯।

ସାଙ୍ଗ ହେଲା ସେ ଉତ୍ସବ, ଉଚ୍ଚେ କରି ବାଦ୍ୟରବ
ରୂପ ଘେନି ସେ ଲୋଲୁପ ଫେରିଲେ ଘରେ,
ପଦ୍ମାର ଲାବଣ୍ୟ-ସ୍ଫୁଟ ରସବନ୍ତ ରୂପ ଲୁଟ
କରି କାଳ କଟାଇଲେ ବନ୍ଧୁମେଳରେ;
ପଦ୍ମା କିନ୍ତୁ ଦେଖିଲା ଶେଷେ
ସୁଖ ନାହିଁ, ଧାନ, ଧନ ଭୂଷଣେ ଲେଶେ ! ।୩୦।

ପ୍ରାସାଦେ ଅବା କୁଟୀରେ ଯହିଁ ରଖ ରମଣୀରେ
ରାଣୀ ହୋଇ ରହିବାରେ ତା' ଅଭିଳାଷ,
ଏକ ସେ ହୋଇ ରହିବ ଭାଗୀ ଆନ କେ ନ ଥିବ
ଏକଛତ୍ର ଶାସନେ ତା' ଚିତ୍ତ-ବିଳାସ,
ବହୁ ମଧ୍ୟେ ହୋଇଲେ ଏକ
ରହିଲା କି ଆଉ ସେଥି ନାରୀର ଟେକ ? ।୩୧।

ଅଭାଗିନୀ ପଦ୍ମାବତୀ ଦେଖିଲା ବାସର-ବତି
ଦିନେ ଦିନେ ଜଳି ଜଳି ଲିଭଇ ଆପେ,
ପ୍ରଣୟୀର ନାହିଁ ଦେଖା, ଭୂମି ପରେ କାଟି ରେଖା
ନିଃସଙ୍ଗ ହୋଇ ସେ ସାରା ରଜନୀ ଯାପେ ।

ପ୍ରଥମର ତୀବ୍ର ଆରତି
କ୍ରମେ କ୍ରମେ ହେଲା ଆସି ଶିଥିଳ ଅତି ।୩୨।

କ୍ରମେ ପଦ୍ମା ନେଲା ଜାଣି ଧରିଛି ସେ ଯେଉଁ ପାଣି
ସେ କର ପିନ୍ଧାଏ ହାର ବହୁ କଣ୍ଠରେ,
ଯେ ବାହୁଯୁଗଳ ତାରେ ପାଡ଼ିଛି ଆଶ୍ଳେଷ ଭାରେ,
କ୍ରୀଡ଼ଇ ତା' ଆନ ନାରୀ-କଞ୍ଚୁଳି-ତଳେ,
ଯେ ଅଙ୍ଗୁଳି ଖୋଲେ ତା' ଖୋଷା,
ସେ ବାନ୍ଧି କବରୀ ତୋଷେ ଇତର ଯୋଷା ।୩୩।

କହିବ ସେ ଦୁଃଖ କା'ରେ ? ଦୁଃଖୁଁ ଯେ ଗର୍ବ ବାହାରେ
ସେ କାକୁ ନ ଦେଲା କହି ତା' ଅଭିମାନ,
ସହସା କିନ୍ତୁ ସତୀରେ କେଜାଣି ସେ କି ବିଧିରେ
ମରଣ ସକଳ ଦୁଃଖୁଁ କରିଲା ତ୍ରାଣ,
ଭୋଗ କରି ବରଷ ଚାରି,
ଗଲା ପଦ୍ମା; ଯେ ଶୁଣିଲା ତେଜିଲା ବାରି ।୩୪।

ସହସା ଏ ଦୁର୍ବିପାକେ, ନିରେଖି ସେ ଚାରିପାଖେ
ରସିକ ବୁଝିଲେ ମୋହ-ନିଦ୍ରାରୁ ଉଠି,
ଯିବାର ଲୋକଟି ଥିଲା ବିଲେ ଶାଳଗ୍ରାମ ଶିଳା
ଜଳଜମ୍ବାଳରେ ପଦ୍ମ ସରିରେ ଫୁଟି,
କାହାଠାରୁ କିଛି ନ ଚାହିଁ,
ଆପଣାରେ ଦେଇ ଦେଇ ଗଲା ମିଳାଇ ।୩୫।

ବାହାରେ ଘରେ ସଂସାରେ, ଆହାରେ ଲୋକବେଭାରେ
ସବୁଠି ପଡ଼ିଲା ଧରା ମହାଶୂନ୍ୟତା,
ଅବହେଳିତାର କର, ଅଜ୍ଞାତରେ କି ମଙ୍ଗଳ
ଢାଳୁଥିଲା, ବୁଝିଲେ ସେ ଗୋପନ କଥା,
ନଷ୍ଟନୀଡ଼ ବିହଗ ପରି,
ଆଶ୍ରୟ ଖୋଜିଲେ ମନେ ମନେ ସୁମରି ।୩୬।

ଏକାଳେ ଆସିଲା ମନେ, ଦେବୀପାଠୁଁ ଯା'କୁ କ୍ଷଣେ
ଦେଖି ମୁଗଧ ଥିଲେ ହୋଇ ପୂର୍ବେ ସେ କାଳେ,

କଳିକା ସେ କାଳେ ଥିଲା, ଏବେ ଯଉବନ-ଲୀଳା
ଫୁଟି ଜ୍ୟୋତି ଆଣିବଣି ଗଉର ଗାଲେ,
ଭଗିନୀର ସ୍ଥାନ ପୂରଣ
ସେହି ଏକା କରି ହେବ ଦୁଃଖ-ଶରଣ ।୩୭।

ଶାବକ କୁଳାୟେ ରଖି ମଲା ପରି ମାଆ-ପକ୍ଷୀ
ପଦ୍ମାବତୀ ଗଲା ରଖି ଦୁଇଟି ଶିଶୁ;
କିଏ ପାଳିବ ଏମାନେ, ସଉତୁଣୀ ହେବେ ଆନେ
ମାଉସୀର ସ୍ନେହ ମାଆ-ସେନେହେ ମିଶୁ,
ଏ ବଚନ-ଜାଲ ବିସ୍ତାରି,
ରସିକ ଇଚ୍ଛିଲେ ନେବେ କ୍ଷେମାରେ ମାରି ।୩୮।

ଇଚ୍ଛାକ୍ରମେ ଗଲା ଦୂତ, ବାସନାରେ ବାଣୀ-ପୁଟ
ଦେଇ ଦଳାଇ-ଦମ୍ପତି ଦେଲା ଭୁଲାଇ ।
କହିଲେ ସେ "ସତ ସତ, ନାତିଟିମାନ ଅନାଥ
ହେବେ ସିନା; ଆନ ଯିବେ ସମ୍ପତ୍ତି ଖାଇ;
କାଆଲି ତ କ୍ଷେମା ଆମର,
ମାଲିକାଣୀ ହୋଇ ଚଳାଇବ ସଂସାର ।" ।୩୯।

ଜାଣିବା-ଶୁଣିବା ଲୋକେ ବାରଣ କରିଲେ ଥୋକେ
ବର୍ଣ୍ଣିଲେ ସ୍ୱଭାବ, ଗତି, ଶୀଳ ସ୍ୱାଇଁର,
କହିଲେ ଜାଣନ୍ତି ଭଲେ ସଂପତ୍ତି ନାଶ ଉପରେ,
ଉଜାଡ଼ କରିଲେ କିସ ରହେ କି ଚିର ?
ପଦ୍ମା ଯୋଗୁଁ ନଥିଲା ଜଣା;
ଘୁଞ୍ଚିଗଲା ଆବରଣ, ଦିଶିବ କଣା ।୪୦।

ଦଳେଇଁକି କହିଲେ ସେ, "ଏ କାମ ଭଲ ନ ଦିଶେ,
ଏପରି ପିଲାକୁ ଦୁଃଖେ ନ ଦିଅ ପେଲି;
ଆଉ ଦଳେ ଗ୍ରାମଜନ; ଅଯାଚିତ ବନ୍ଧୁପଣ
କରି ପୁଣି ବତାଇଲେ, "ଦିଅ ହେ ଠେଲି !
ଝିଅ ଘିଅ ଘରେ ନ ରଖି,
କିଏ ଜାଣେ କାଲି ତମେ ବୁଜିବ ଆଖି ?" ।୪୧।

''ଥାଉଁ ଥାଉଁ ଏ ବ୍ୟବସ୍ଥା କରି ଯାଅ, ଯେ ଅବସ୍ଥା
ଭାଗ୍ୟରେ ଥିବ ଯା' ହେମା ଭୋଗିବ ତାହା;
ଜନ୍ମଦିଏ ସିନା ବାପ, ଭାଗ୍ୟ ତ କରିନି ମାପ
ସେ ସବୁକୁ ଏକମାତ୍ର ଦଇବ ସାହା,
ଭଲ ମନ୍ଦ ଆମ ହାତେ କି ?
ଆଖି ବୁଜି ଦିଅ ତମେ ମହାର୍ଦ୍ଦ ଟେକି'' ।୪୨।

ଛନ୍ଦହୀନ ନିଷ୍କପଟ ଦଳେଇଏ ଛଟପଟ
ହେଲେ କିଛି କାଳ ଭାବି ଦୁଇ ଆଡ଼କୁ,
ଶେଷରେ ପତ୍ନୀଙ୍କ ସଙ୍ଗେ ବିଚାରିଣ ଏ ପ୍ରସଙ୍ଗେ
ସ୍ଥିର କଲେ ନ ଚାହିଁବେ ଆଗ ପଛକୁ;
କାଳ ଆସି ତାଙ୍କର ଶେଷ,
ଯାଇଥିବେ ଦେଖି ଝିଅ ବେଦୀର ବେଶ ।୪୩।

ହେଲା ସେହି କଥା ସ୍ଥିର ଦଳେଇଏ ଟେକି ନୀର
ନୀର ସହ ଢାଳିଦେଲେ ଭାଗ୍ୟ ହେମାର,
ସ୍ନେହ-ବଶେ ମୂର୍ଖ ପରି କନ୍ୟାରେ ମେରିଆ କରି
ଅନାଗତ ପଦେ କଲେ ବଳି ତିଆର,
କ୍ରୀଡ଼ାରତ ହରିଣୀ ହେମା,
ନିଜ ଭାଗ୍ୟ ଜାଣିବାକୁ କାହିଁ ସେ କ୍ଷମା ! ।୪୪।

ସଜ୍ଜିତ ପିତୁଳା ପରି ଦିନେ ଆସି ନେଲେ ଧରି
ଗଞ୍ଜାମ-ଜନେ ହେମାକୁ ବସାଇ ଯାନେ,
ପିଠାପଣା ବାଦ୍ୟରୋଳେ ମାଙ୍ଗଳିକ କୋଳାହଳେ
କି ଏକ ଆନନ୍ଦ ହେଲା କିଶୋରୀ-ପ୍ରାଣେ,
ଖେଳରୁ ସେ ହୋଇଛି ଧରା,
ସବୁ ଏକ ଖେଳ ପରି ଲାଗିଲା ପରା !୪୫।

ସ୍ୱାମୀଗୃହେ ଅବତରି ଲାଗିଲା ସ୍ୱପନ ପରି
କୋଠାଘର, ମଠା, ପାଟ, ବିଭବ-ଘଟା,
ଅପାଠୁଁ ଯା' ଶୁଣିଥିଲା ଏବେ ତା ନେତ୍ରେ ଦେଖିଲା
ସଂଭ୍ରମରେ ଲୋକେ ତାକୁ କହନ୍ତି କଥା,

ସେ ବିଭବ ବୋଲି ତାହାର
କିଏ କେତେ ପଦେ ଢାଳେ ଭକତି-ଭାର ।୪୬।

ହସ୍ତୀ ଅଙ୍ଗେ ଅଙ୍ଗରାଗ ପରି ସବୁ ଅନୁରାଗ
ଅକାରଣ ବୋଲି ଲାଗୁଥାଏ କ୍ଷେମାରେ,
ପୁଷ୍ପ ଛାଡ଼ି ତାର ଧର୍ମ୍ମ କରିବ କି ତୀର-କର୍ମ,
ଗୃହିଣୀ ସେ ହେବ କେହ୍ନେ ଶିଶୁ-ସୀମାରେ ?
ପୁତ୍ତଳିକା ପରି ସେ ଚଳେ,
ଆପଣାର କରି ନାହିଁ ପାରେ ସେ ଘରେ ।୪୭।

ବେଳେବେଳେ ସ୍ୱାମୀ ପାଶେ କହିଲେ କି ପରିହାସେ
କିଛି ହେଲେ କ୍ଷେମା ବୁଝିପାରଇ ନାହିଁ,
କଲେ ଯା କିଛି ଜିଜ୍ଞାସା ମୁଖୁଁ ନ ଫୁଟଇ ଭାଷା
ରହନ୍ତି ସେ ଖାଲି ତା'ର ବଦନ ଚାହିଁ,
ମଞ୍ଛିଲେ କି କଢ଼ି ସୁବାସ,
ଫୁଟିଲେ ହୁଅନ୍ତା ସିନା ଆପେ ବିକାଶ ।୪୮।

ଚେଷ୍ଟା ନ କରିଣ ଆଉ ରସିକ ଭାବିଲେ ଥାଉ
ବଯିଲେ ପଠାଇଦେବେ ଗାଆଁକୁ ପୁଣ,
କାଟି ନେବେ କିଛି କାଳ କରି ସ୍ୱାଧୀନ ବିହାର
ଯୌବନ ଖଞ୍ଜିଲାଯାଏ ମଦନ ତୂଣ,
ଶାଶୁ ପୁଣି ଅଥୟ ଏଣେ,
ନୟନମଣିକି ନେବେ ନିଜ ଭବନେ ।୪୯।

''ତାଙ୍କ ଲୋକେ ତାଙ୍କ ଘରେ ରଖିବେ କିକି ସେ ପରେ
ମୋଞ୍ଝଡ଼ଟା ଖାଇପିଇ ଜାଣିନି ପରା,
ନ ଶୋଇଲେ କୋଳେ ମୋର, ନିଦ ହୁଏ ନାହିଁ ତାର,
ଲଗାଇ ଜାଣିନି ନିଜେ ଆଖିରେ କଳା,
ପାଖେ ମୋର ଆସୁ ମୋ ଧନ''
ଖବର ପଠାନ୍ତି ଦଳିଆଣୀ ଉଚ୍ଛନ୍ନ ।୫୦।

କ୍ଷେମା ଚିତ୍ତ କୋଠାଘରେ ସେ ବିଭବେ ନାହିଁ ଧରେ,
ଚିତ୍ତ ତା'ର ତୋଟାମାଳେ ନିଜ ଗ୍ରାମରେ,

ସ୍ୱାଧୀନ ସେ ଆତ-ଯାତ, ଝାଉଁବନେ ଉତପାତ,
ବୋଉର ଆଦର, କିଏ ଦେବ ସେ ଘରେ ?
ଗ୍ରାମେ-ଯିବା ପଡୁ ନା' କାନେ
ବିଭବ-ବନ୍ଧନ-ହୀନ ଆନନ୍ଦ ପ୍ରାଣେ ।୫୧।

ଗୋଟିଏ ଘଟଣା ଥରେ ଥରେ ମାତ୍ର ହେମା ଭାଳେ,—
ଭଗିନୀର ଦୁଇଟି ସେ ଅନାଥ ପିଲା,
ପୁରନାରୀ ଶିଖାଣରେ ଡାକୁଥାନ୍ତି ଦରୋଟିରେ
'ବୋଉ' ବୋଲି କାହିଁ ହୋଇଥିଲେ ସେ ଛିଡ଼ା !
ଶୁଣି ହୋଇ କ୍ଷଣକେ ମାଆ,
ମେଲି ଦେଉଥିଲା ଧରିବାକୁ ତା' ବାହା ।୫୨।

ଜନନୀ ତା ଛୋଟ ହୃଦେ ବ୍ୟଥିତ ହୋଇଲା ଖେଦେ
ଟିକିଏ, ସେ ଶିଶୁ ଦୁଇ ପାଇଁ ବିଦାଯେ,
କିନ୍ତୁ ଏଣେ ବୋଉ କଥା ସାଙ୍ଗ-ସଙ୍ଗିନୀଙ୍କ ଚିନ୍ତା
ଉଠୁଁ ମନେ, ସେ ବ୍ୟଥିତ ଚିତ୍ତେ କି ଥାଏ ?
ବନ୍ଧ ଯାନେ ବସି ଅନ୍ଧାରେ,
ଚିତ୍ତେ ଖାଲି ହେଲା ପରା ଗ୍ରାମ-ସୀମାରେ ।୫୩।

ଦ୍ୱିତୀୟା ଚନ୍ଦ୍ରମା ଯେହ୍ନେ ଗଗନର କେଉଁ କୋଣେ
ଉଦି ଅସ୍ତଯାଏ କ୍ଷଣେ କ୍ଷୀଣେ ଆଲୋକି
ହେମା ଗଲା ସେହିପରି ପୁର ଅନ୍ଧକାର କରି
ସ୍ୱାମୀ ନିମନ୍ତରେ କିଛି ନ ରଖି ବାକି,
ରସିକ ସେ ବନ୍ଧନହୀନ,
ବ୍ୟଭିଚାରେ ଭାଗ୍ୟ କରି ଲାଗିଲେ କ୍ଷୀଣ ।୫୪।

## ପ୍ରଥମ ପର୍ବ

### (ଉତ୍ତର ଭାଗ)

ଗ୍ରାମେ ହେମା ଶଶିମୁଖୀ ଆକାଶର ମୁକ୍ତ ପକ୍ଷୀ
ସମାନ, ବିହାର କଲା ସଂଗିନୀମେଳେ,
ବୋଉଙ୍କର ଛଳ-ରାଗ ନ ଘେନଇ ଅଂଗରାଗ,
ଖେଳିବାକୁ ଯାଏ ମୁଣ୍ଡ ବାନ୍ଧିବାବେଳେ ।

ନ ଘେନଇ ସିନ୍ଦୂରରେଖା
ତୋଟାକୁ ପଳାଏ, କା'ରେ ନାହିଁ ଅପେକ୍ଷା ।୧।

ବୁଲୁଥାଏ ତୋଟାମାଳେ ଆମ୍ବ ପୁନ୍ନାଗ ଗହଳେ
ବସନ ଭୂଷଣେ କିଛି ଯତନ ନାହିଁ,
ବିନ୍ଦୁ ବିନ୍ଦୁ ସ୍ୱେଦ-ମୋତି ଖରା-ରକ୍ତ ମୁଖେ ଫୁଟି
ଅ-ଭୂଷଣ ରୂପ-ଶିରୀ ଦିଏ ଦେଖାଇ,
ଥିଲା ଥାନେ ନଥାଏ ବାସ,
ଉଛୁଳଇ ରୂପ ଯହିଁ ବାସ-ବିନାଶ ।୨।

ଆଦରେ ଡାକନ୍ତି ବୋଉ ହଳଦିକାଠୁଆ ଥୋଇଁ
"ମାଆ ମୋର, ବସିଲୁ ତୁ ଦିଏ ଲଗାଇ,
ନିଖୁରା ଦିଶୁଛି ବଡ଼, ଦେହ ହେବ ଖର ଖର
ବାଟିଛି ମୁଁ ଏତେ କରି ତୋହରି ପାଇଁ ।"
ଶୁଣି ଢେମା କହଇ ଦୂରେ,
"ଥାଉ ଇନେ, ଯାଉଛି ମୁଁ ପରା ସେ ପୁରୋ" ।୩।

ବୋଲନ୍ତି ଜନନୀ ଛଳେ "କେବେ ନ ରହିଲୁ ଘରେ
ଟୋକୀ ପରି ବୁଲୁଅଛୁ ଜଗତ୍ରଯାକ
କେବେ ହେଲେ ମନଭରି ନ ପାରିଲି ଅଙ୍ଗେ ବୋଳି
ତେଲ ହଳଦି ବକଟେ, ମନ-ଖରାପ ।
ଆଖି କଳା ଦେଖିଲା ନାହିଁ,
ଏ କଜଳ-ପାତୀ କିଣା ହେଲା କା' ପାଇଁ ? ।୪।

"ଅଇଲୁ, ମୋ ଧନ ପରା" ବୋଲୁଁ କାହୁଁ ଆଣି ଗରା
କାଖେ ଧରି ଢେମା ଯାଏ ପାଣି ଆଣିକି,
ଡାକୁ ଡାକୁ ବୋଉ ତାର, ଅତିକ୍ରମି ବାରିଦ୍ୱାର
ସାଙ୍ଗେ ଡାକିଲାଣି 'ଆସ ଯିବା ପାଣିକି ।'
ଦଳିଯାଣୀ ଫେରି ନିରାଶେ
ରଖିଲେ କଜଳ ଆଦି ଦୀର୍ଘ ନିଃଶ୍ୱାସେ ।୫।

ଭାବିଲେ ସେ ମନେ ମନେ କି କରିବି ଏ ଦୁର୍ଜନେ
କିଛି ତ ବୁଝିଲା ନାହିଁ କଥା ନିଜର,

ଧରିଲେ ଯାଉଛି ଖସି, କହିଲେ ଦେଉଛି ହସି
ବସନେ ଭୂଷଣେ ଜମା ନାହିଁ ନଜର,
ବଡ଼ଘର ଜଗିବ କେନେ—
କହୁଁ ଲାଗେ କଂପନ ଦକ୍ଷିଣ ନୟନେ ।୬।

'ମାଆ ଲୋ' ଚିତ୍କାରି ସତୀ ଭୟାକୁଳ ହୋଇ ଅତି
ମନେ ମନେ ମନାସିଲେ କୋଟି ଦେବତା,
''ରଖ ଦିଅଁ ମୋ ପିଲାରେ ଶଙ୍ଖ ଚକ୍ର ଆହୁଆଳେ''
ବୋଲି ଆତ୍ମା ଉଚ୍ଛୁଳିଲା ଜଣାଇ ବ୍ୟଥା;
ଛି, ଛି, ପୋଡ଼ା ଆଖିଟା କିଆଁ
ଥରୁଛି ଏପରି, ମୁହେଁ ପଡୁ ତା ନିଆଁ ।୭।

ବୋଲି, ଦୁଃଖେ ଦଳିଆଣୀ ଆଶଂକାରେ ବାଇଆଣୀ
ପରି ହୋଇ ଯାଚିଗଲେ କେତେ ମନାସ,
ନିଜ ଗ୍ରାମ ପର ଗ୍ରାମ ଜଣାଥିଲା ଯେତେ ନାମ
ସବୁ ଦିଏଁ ଦେଇଗଲେ ଭୋଜନ-ଆଶ,
ଶେଷେ ନମି ଗୃହ ଈଶାଣେ
ଗଲେ ସେ'ଠୁ ଇଷ୍ଟ ନାମ ଉଚ୍ଚାରି ପ୍ରାଣେ ।୮।

କୂପମୂଳେ ଗ୍ରାମନାରୀ ଏକେ ଏକେ ନୀର କାଢ଼ି
ଘର, ଘର-ଲୋକ କଥା ହୁଅଁତି ମେଳେ,
ରବି ଅସ୍ତେ ପାରାବତ ଏକତ୍ର ଗୁଂଜନ ରତ
ହେଲାପରି ବାସେ ଯିବା ପୂର୍ବରୁ ଟାଳେ,
କେ କାହାର ଶୁଣେ ଗୁଂଜନ ?
ସବୁ କଂଠ ମିଶି ଧ୍ୱନି କର୍ଣ୍ଣ-ଗଂଜନ ।୯।

ମାଜଇ କେ ଖଡୁବଳା ବାଣୀ ଏଣେ ଅନର୍ଗଳା
ମୁଖୁ ଫୁଟେ ହତଭାଗ୍ୟ କାହାପାଇଁ ସେ,
ଶୁଖୁଥିବା ଧାନ ତାର ଖାଇଗଲା ଗାଈ କା'ର
ନ ରହି ପାରିବେ ଆଉ ଗାଏଁ ମନିଷେ,
ତା' ଗୋରୁ ତ ମଡ଼କେ ମଲେ,
ଆନ ଗୋରୁ ବଞ୍ଚିଥିବେ କିମ୍ପା ଗୋଠରେ ! ।୧୦।

ଶାଶୁ କେ ବଖାଣେ ବସି          ତେଲ ଟିକେ ଘଷି ଘଷି
''କେତେ ଦିନେ ମୁଣ୍ଡେ ଟିକେ ଦେଲି ମଥାଦି,
ବୋହୂ ଆଣି ଥିଲା ଆଶା,          ଯିବ ମୋ କେଲେଶ ଦଶା
ଦେହମୁଣ୍ଡେ ଦେବ ହାତ, ପଡ଼ିଲେ ଭାଙ୍ଗି,
ଖାଟି କୁଟି ନ ସରେ କାଳ,
ଚିରାକନା ପିନ୍ଧେ, ମୁଣ୍ଡେ ନୁଖୁରା ବାଳ ।'' ।୧୧।

କେ ଭାଷେ କାତର ସ୍ୱରେ,          ''ଚାଉଳ ଅଛି କି ଘରେ
ଦେବ ଗୋ, କାଲିଠୁଁ ରଂଧା ହୋଇନି ଭାତ,
ନାହିଁ ତ କିଛି ପାଇଟି          ବୁଲି ସେ ଏଇଠି ସେଠି
ଫେରନ୍ତି, ଶୁଅନ୍ତି କିଳି ଦେଇ କବାଟ,
ପିଲାଟା ମୋ କାନ୍ଦେ ବିକଳେ,
ହାତ ଧରେ, ଦିଅ ଗଣ୍ଡେ ପଣୁ ତା' କଳେ ।''୧୨।

ଛିନ୍ନବାସ, ଦୀନବେଶ          ତୈଳହୀନ ରୂକ୍ଷ କେଶ
ରସହୀନ କାନ୍ତି, ରୂପହୀନ ବଦନ,
ମଳିନ ଦଳିତ ଶିରୀ          ବୈଶାଖ ପ୍ରାନ୍ତର ସରି,
ଦାରିଦ୍ର୍ୟରେ ସବୁ ହୋଇଅଛି ଦହନ,
ନାରୀତ୍ୱର ଲୋଭନ ନାହିଁ
ନାମମାତ୍ର ନାରୀ, ଭିନ୍ନ-ଆକୃତି ପାଇ ।୧୩।

ଏପରି ସେ ନାରୀମେଳେ          ଢେମା ହେଉଁ ଠିଆ ଗେଲେ
କହିଲେ ସକଳେ, ''ସାହୁଆଣୀ ଆଇଲେ,''
ଘାସବନେ ନିପତିତ          କର୍ଣ୍ଣିକାର ପୁଷ୍ପବନ୍ତ
ଢେମା ଦିଶେ ପଲ୍ଲୀ ସୀମନ୍ତିନୀ ଗହଳେ,
ନାରୀର ତ ରୂପ ମୁକୁଟ,
ତା' ପିନ୍ଧି କରଇ ଢେମା ଆଦର ଲୁଟ ।୧୪।

ହେଉଁ ଠିଆ ଗରା ଧରି          ସୁଧାଶୀ ଅମରୀ ପରି
ଡାକନ୍ତି ସକଳେ ''ଆସ ଦେବୁ ଗାଧୋଇ ।''
କେ କହେ ''ଦଳିଆଣୀକି          ବକଟେ ମିଳିଲା ନିକି
ତେଲ ହଳଦି ଯେ, ଝିଅ ନୁଖୁରା ରହି,

ଢାଠୀ ବଡ଼ ପଡ଼ିଲାଣି ସେ,
ନଥିଲେ ଖରଚି, ଥିଲେ ଲୋଭୀ ମନିଷେ'' ।୧୫।

ବୟୋଜ୍ୟେଷ୍ଠା କେ କହିଲା, ''ବୋଉ ତମ କହିଥିଲା
କୁଟାଇଦେବାକୁ ଚିତା ହାତେ ତମର,
ବେଳ ତ ନ ମିଳେ ମତେ କାମ ଲାଗି ଅନୁବ୍ରତେ,
କଣ୍ଟା, କଳା ଘେନି ଯିବି ଦୁଇପହର,
କୁଟାଇବି ମନୋମତରେ,
ଘଟଣ ଦିଶିବ ଚିତା ଗୋରା ହାତରେ'' ।୧୬।

ଶୁଣେ ଜେମା ଖାଲି ହସି କହିଲେ କିଏ ପ୍ରଶଂସି
ହସିଦିଏ କ୍ଷୀଣ ଧାରେ ଟିକିଏ ଖାଲି,
ଗରା ଥୋଇ ଭୂମିପରେ ଫେଡ଼ି ଖୋଷା ନିଜ କରେ
ମାଛି ସେ ବସିଲା ବଳା ଗୋଟାଇ ବାଲି,
ସୁମଧୁରେ କହଇ କା'ରେ,
''ଅପା, ଗରେ କାଢ଼ିଥାଅ ମୋ ଲାଗି ବାରେ'' ।୧୭।

ଅପା ନ ଭାଷୁଣୁ ବାଣୀ ଆନ ଏକ ଗରା ଆଣି
ସିହାଣୀ ପରିରେ ପାଣି କାଢ଼ି ଥୋଇଲା,
''ରାଣୀ ହେବୁ ତୁ ସୋହାଗୀ କେବେ ଯଦି କିଛି ମାଗି
ଉପକାର ମନେରଖିଥିବୁ'' ବୋଇଲା,
ଜେମା ଲାଜେ ପୋତିଲା ମଥା,
ଜୋରେ ବଳା ହେଲା ମାଛି ନ କହି କଥା ।୧୮।

ଏହିପରି ଯାଏ ବହି କାଳ କିଶୋରୀକୁ ଦେଇ
ଟିକେ ଟିକେ କରି ଯଉବନ-ବିଭବ,
ପ୍ରତ୍ୟେକ ମାଧବରତୁ ଉପହରେ ନିଜ କଣ୍ଠୁ
ଏକ ଏକ ରୂପ-ହାର ଗୁରୁ ସୌରଭ,
ଏକୀଭୂତ ହୋଇ ସେ ଦାନ,
ଦିନେ ଦିଏ କିଶୋରୀକୁ ନାରୀ-ସମ୍ମାନ ।୧୯।

ସେ ଦାନ ଆପଣା ଭାରେ କିଶୋରୀର ପ୍ରାଣ ଘାରେ
ଯା ଦିଏ ବୟସ, ତାହା ଦିଏ ଦେଖାଇ,

ମରି ଘୋର ସରମରେ ଲୁଚାଇବା ଚେଷ୍ଟା କରେ
କିଶୋରୀ ସେ ନବଦାନ ଅଂଗ ଘୋଡ଼ାଇ,
କିନ୍ତୁ ରୂପ ଫୁଟି ବାହାରେ,
ଓଲଟି ଅଧିକାରୀରେ ବାଣ ପ୍ରହାରେ ।୨୦।

ଲୁଚାଇଲେ ବକ୍ଷ ଯୁଗ, ନୟନ କୃଷ୍ଣ-ଆଶୁଗ
କିସ ଆବରଣ ଦେଇ ଲୁଚାଇ କହ,
ଅଧର ଆପଣା ରାଗେ ନିମନ୍ତ୍ରଇ ଅନୁରାଗେ
କପୋଳେ ଭୂଲୋକ-ଦୃଷ୍ଟି କରେ ଦୁର୍ବହ,
ଯହିଁ ତହିଁ ଉଠଇ ଭାସି
ତରୁଣୀର ଅଙ୍ଗେ ନବ ଲାବଣ୍ୟରାଶି ।୨୧।

ତେଣୁ ସେ ଚାହିଁଲେ ନେତ୍ରେ ଚନ୍ଦନ ସିଂଚିତ ଗାତ୍ରେ
ହସିଲେ ଅବନୀ ପୁଷ୍ପମୟ ହୁଅଇ,
ଗତିରେ ଫୁଟଇ ନାଟ ପଦ୍ମମୟ ହୁଏ ବାଟ
ବଚନ ଶୁଣିଲା ପ୍ରାଣେ ସୁଧା ସିଂଚଇ,
ତା'-ଛୁଇଁବା-ଭୂଇଁ ପବନ
ଲଭେ କ୍ଷଣେ ଶିରୀ-ସଉରଭ-ରଂଜନ ।୨୨।

ଭୁବନର କେଉଁ କୋଣେ ଅବଜ୍ଞାତ ବେଳାବନେ
ଅବଜ୍ଞାତ ଗ୍ରାମେ କାହିଁ ଜେମା ସେ ଥିଲା,
ବସନ୍ତ ନ ଭୁଲି ତା'ରେ ବୟସ-କୁସୁମଭାରେ
ଲୋକ-ନେତ୍ର ଅଗୋଚରେ ଆସି ଭୂଷିଲା,
କ୍ରମେ କ୍ରମେ ସେ ଗ୍ରାମ ଜନେ,
ଜାଣିଲେ ମିଶିଛି ଜେମା କାମିନୀ-ଗଣେ ।୨୩।

ଏକ ଦେହେ ଜନ୍ମାନ୍ତର ଲଭି, ଜେମା ନାରୀତ୍ୱର
ସର୍ବାଙ୍ଗ ବିକାଶ ଘେନି ହେଲା ବିପନ୍ନ,
ରୂପର ବିପୁଳ ଭାର ଚିତ୍ତେ ଲଜ୍ଜା ଅନିବାର
ପତିତ ଅଙ୍ଗେ ତା ଭୁବନର ନୟନ,
ସବୁ ମିଶି ତରଳା ତା'ରେ
କରିଲେ ମନ୍ଥରା କ୍ରମେ ଯୌବନ-ଭାରେ ।୨୪।

ତୋଟାମାଳେ ଆଉ କାହିଁ ଉଷତେ ବୁଲିବ ଯାଇଁ
ଲାଜେ ଘରୁ ବାହାରକୁ ନ ଚଳେ ପାଦ,
ଖସିଯାଉଥିବା ବାସ ଛଡ଼ି ଦେହେଁ ଦେଲା ପ୍ରାସ
ଯହିଁ ଇଚ୍ଛା ଚାହିଁବାକୁ ଗଣେ ପ୍ରମାଦ;
ଚାହିଁ ଥିଲେ ରହିଲା ଚାହିଁ,
କି-ଶୁଣିବା କି-ଦେଖିବା ପରି ସେ ଥାଇ ।୨୫।

ତରଳ ସେ ଯଉବନ ମିଛେ ଚିତ୍ତ ଉନମନ
ରକତେ କ୍ଷଣକୁ କ୍ଷଣ ଜୁଆର ଭଟ୍ଟା,
ସ୍ୱପ୍ନ-ଫୁଲ କୋଟି କୋଟି ଅନ୍ତରେ ଉଠଇ ଫୁଟି
ଚିତ୍ତେ ଲାଗିରହେ ଗନ୍ଧ-ବର୍ଣ୍ଣର ଘଟା,
କଳପନା ମାନସେ ଚରି
କଳ୍ପ-ଲୋକେ ଯୁବା-ଯୁବତୀଏ ବିହରି ।୨୬।

ହେଉ ସେ କୃଷକ-କନ୍ୟା ଲଭିଲେ ଯୌବନ ବନ୍ୟା
ଭାସିଯାଏ ସ୍ୱପ୍ନନାବେ ଦୂର ଦୂରରେ,
ଶୁଣା-କାହାଣୀରେ ସରି କଳପନା ଅନୁସରି
ମନେ ମନେ ସ୍ୱୟଂବରେ ନିଜରେ ବରେ,
ପାଞ୍ଚେ କେଉଁ ରାଜକୁମର
ଘୋଡ଼ା ଚଢ଼ି, ଲଢ଼ି ଧରି ନେବ ତା' କର ।୨୭।

ଯୁବା ଭାବେ ସେହିପରି, ଶୋଇଥିବ କେଉଁ ପରୀ
ସ୍ୱପନ-ପ୍ରାସାଦେ ସିନ୍ଧୁ ସେ ପାରେ କାହିଁ,
କାଟି ସେ ସିନ୍ଧୁ-ଲହରୀ ହଟାଇ ଯେତେ ପ୍ରହରୀ
ଉଠାଇବ ରୂପସୀରେ ସଂକୋଚେ ଯାଇ,
ଉଠି ହସି ମନ୍ଦେ ସୁନ୍ଦରୀ,
ସରମେ କଟାକ୍ଷେ ଯୁବା ଘେନିବ ବରି ।୨୮।

ନବୀନ ଯୁବତୀ ପ୍ରେମା ଚିତ୍ତେ ତା'ର ହେଲା ଜମା
ସେହି ଅନୁରୂପେ କାହୁଁ କାହୁଁ କଳ୍ପନା,
ଏବେ ବୋଉ ଖୋଷା ପାରି— ଦେଲେ ମଥା ଦିଏ ପାରି
ବୋଉ କୋଳେ ପିଠି ରଖି କରେ ଭାବନା,

ଫରୁଆରେ ପୂରାଇ ବାଳ
ଭସାଇଲେ ନେବ ପରା ନୃପ-କୁମାର ।୨୯।

ତରୁଣ ନୃପ-କୁମର ଘାଟେ ବାଁଧି ଅଶ୍ୱ-ବର
କୂଳେ ରଖି ଧନୁଶର ପଶିବେ ଜଳେ,
ଫରୁଆ ଆଣି ଓଟାରି ଦେଖିବେ ଚିକୁର କାଢ଼ି;
କାହାର ସେ ବୋଲି ନିକି ପୁଛିବେ ଥରେ ?
ସଂଗେ ସଂଗେ ଫିଟାଇ ଅଶ୍ୱ
ବାହାରିବେ ପରା ଖୋଜିବାକୁ ଏ ବିଶ୍ୱ ।୩୦।

ଦିନେ କ୍ଷେମା ସ୍ନାନ ସାରି ଦୀର୍ଘ କେଶ ଦେଇ ଛାଡ଼ି
ଆସୁଥିବ କୂପୁଁ ନୀର ମସ୍ତରେ ବହି
ତରୁଣ ତପନ-କର ପଡ଼ି ଘନ କେଶ ପର
ଚିତ୍ରିତ ବିଭାରେ ନିନ୍ଦେ ଯୁବା ବରହୀ,
ସ୍ନାନ-ସିକ୍ତ ବସନଭାରେ,
ଛନ୍ଦି ହୋଇ ମନ୍ଦୀଭୂତେ ଚରଣ ଚାଲେ ।୩୧।

ଏକାଳେ ସେ ରାଜପୁତ୍ର ଅଶ୍ୱମୁଖେ ସ୍ୱର୍ଣ୍ଣ-ସୂତ୍ର
ଟାଣି ଦେଇ, ଥମି ଉଭା ହେବେ ପଥରେ,
ବୁଲି ବୁଲି ବହୁ ଦେଶ ପାଇ ବହୁତର କ୍ଲେଶ
ଆସି ଶେଷେ ଭେଟିବେ ସେ ନେତ୍ରପଥରେ,
ଖୋଜୁଥିଲେ ରାଇଜ ଯା'ରେ;
କ୍ଷେମା ତାକୁ ଚିହ୍ନି, ମନ୍ଦେ ହସିବ ବାରେ ।୩୨।

ରାଜପୁତ୍ର ସେ ଚତୁର ଚମକାଇ ଅଶ୍ୱଖୁର
ନଇଁବେ କ୍ଷେମାକୁ ନେବା ପାଇଁ ସଂଗତେ,
କ୍ଷେମା ଏଣେତେଣେ ଚାହିଁ ଦେଖିବ କେ କାହିଁ ନାହିଁ
ସଁପିଦେବ ଆପଣାକୁ ବିଜନ ପଥେ
ରାଜପୁତ୍ର ଟେକିବେ କରେ—
ସହସା ଚମକ ଲାଗେ କ୍ଷେମା ଦେହରେ ।୩୩।

ଛି ଛି ଛି ଛି ଏ କି କଲା ସେ ଯେ ବିବାହିତା ପରା
ଜଣେ ତ ନେଇଛି ତାରେ, ଆଉ ନେବ କେ,

ଏଣେ ସ୍ମୃତିପଟେ ତା'ର ଉଠେ ଛବି ସେ ନିଶାର
ଯେବେ ଧରିଥିଲେ ତାକୁ ରସିକ ବକ୍ଷେ,
ଛବି ତାଙ୍କ ଉଠି ଆଗରେ,
କର୍କଶେ ଓଟାରିନିଏ ହେମାର କରେ ।୩୪।

ରାଜପୁତ୍ର-ସ୍ୱପ୍ନ ଭାଙ୍ଗେ, ଚକିତ ଚମକ ଲାଗେ,
ବୋଉ ପଚାରନ୍ତି, ''କି ଲୋ କାଟେ ପାନିଆ ?
ଚମକିଲୁ କାହିଁ ପାଇଁ, ଧୀରେ ତ ଦିଏ କୁଣ୍ଡାଇ
ଦାନ୍ତଗୁରା ସତେ କିନ୍ତୁ ବଡ଼ ମୁନିଆ ।''
''କିଛି ନାହିଁ'' ହେମା ଉତ୍ତରେ,
ଭଲେ ଆଉଜଇ ବୋଉ କୋଳେ କାତରେ ।୩୫।

କେତେ ସ୍ୱପ୍ନ ଏହିପରି ତରୁଣୀର ଚିତ୍ତ ଭରି
ଅରୁଣିତ କ୍ଷଣେ କରି ଭବିଷ୍ୟ ତା'ର,
କ୍ଷଣେ ପୁଣି ଯାଏ ଭାସି, ଅଭିଶାପ ସମ ଆସି
ସେ ନିଶାର ସ୍ମୃତି ଭାଙ୍ଗେ ସୁନା-ସଂସାର,
ମେଘ ଆବୋରିଲା ଜୋଛନା
ପରି ସେ ସ୍ମରଣ ଦେଇଯାଏ ଭର୍ତ୍ସନା ।୩୬।

ଏଣେ ପୁଣି କଉତୁକେ ଫୁଟିଉଠେ ସଖୀମୁଖେ
ରସବାଣୀ, ଗଂଜାମର ରସିକେ ଘେରି
ହେମା ତୁ'ତ ସାହୁଆଣୀ ହେବୁ, ଧନ-ଧାନ୍ୟେ ରାଣୀ,
ସ୍ୱାମୀ ତ ରଖିଛି ଧନ ପେଡ଼ିକି ପେଡ଼ି,
ଅଷ୍ଟ ଅଳଂକାର ମଣ୍ଡିବ
ସେତେବେଳେ ହେମା କ'ଣ ଏ ହେମା ଥିବ ?୩୭।

ବାରମ୍ବାର ଧାରାପାତେ ନୀରସ ଉଷର ଗାତ୍ରେ
କିଛି ହେଲେ ନବ ଘାସ ଉଠିଲା ପରି
ଏକ କଥା ବହୁ ମୁଖେ ଶୁଣି ଶୁଣି ତା'ର ବୁକେ
ବେଳେବେଳେ ସେ ବ୍ୟାପାର ଉଠେ ଗୁମରି,
ଘରଣୀ ସେ ବଡ଼ଘରର
ଏ ଚିନ୍ତା କ୍ରମଶଃ ଲଭେ ଚିତ୍ତେ ପ୍ରସର ।୩୮।

ଧନ-ଧାନ୍ୟ ବଡ଼ଘର ଖିଆ-ନିଆ ଆଡ଼ମ୍ବର
ଗତାଗତ ଶୋଷୀ ଭୋକୀ ଯାଚକଙ୍କର
ହାତକୁ ରହିବା ଚାହିଁ ପ୍ରାର୍ଥୀଗଣ ଗୁଣ ଗାଇ,
ଦେବ-ଗୁରୁ-ଗଉରବେ ମଣ୍ଡିବା କର;
ସୁନା ରୁପା ପାଟ ବସନ,
ମହତ-ମର୍ଯ୍ୟାଦା, ଯାହା ବଂଶ-ଭୂଷଣ ।୩୯।

ଏମାନ ସେ ସେହି ଥର ଆସିଛି ଦେଖି, ଆବର
ଭଗିନୀର ଯୁଗ୍ମ-ଶିଶୁ ଆସିଛି ଦେଖି,
ଅପାର ପ୍ରତିଭୂ କରି ଭାଗ୍ୟ ତାକୁ ଅଛି ବରି,
ନ ହୋଇ ଜନନୀ ତାଙ୍କୁ କେହ୍ନେ ଉପେକ୍ଷି,
'ବୋଉ' ଡାକି, ଥିବେ ଅନାଇଁ
କେମନ୍ତେ ସେ ଯିବ କାହିଁ ତାଙ୍କୁ ନ ଚାହିଁ ।୪୦।

ଚିନ୍ତା ଏହି ଅନୁକ୍ରମେ ବ୍ୟାପିଲା କ୍ଷେମା ମରମେ
ରାଜପୁତ୍ର-ସ୍ୱପ୍ନ କ୍ରମେ ହୋଇଲା କ୍ଷୀଣ,
ବଧୂ ହୋଇ କୁଳମାନ, ଘରର ବ୍ୟବସ୍ଥାମାନ
ନ ସମ୍ଭାଳି କରିବ କି ମହତ ହୀନ ?
ଜନ-ମୁଖେ ଶୁଭିବ କିସ—
'ଘର ଭାଁଗିଦେଲା ବୋହୂ, କିବା ମନିଷ !'' ।୪୧।

ମାଧବ କୁସୁମ ବନେ ସମାକୁଳ କରି ଗାନେ
ଆସିଲା ପରିରେ ପରଭୃତ ସହସା
କ୍ଷେମାର ଭାବନାରାଶି କରିଦେଲା ଦୃଢ଼ ଆସି
କାମିନୀ-ମଂଗଳକର ସାବିତ୍ରୀ ଓଷା,
ଶୁଣି ପ୍ରାଣେ ସତୀ-ଚରିତ
ରସିକରେ ଆବୋରିଲା କ୍ଷେମାର ଚିତ୍ତ ! ।୪୨।

ଶୁଣିଲା ରାଜକୁମାରୀ ବରି ପତି ବନଚାରୀ
ଉଆସ ବରଜି କେହ୍ନେ ଗମିଲେ ବନେ,
ଜାଣିଲେହେଁ ଯଉବନ ନ ସରୁ, ପତି-ମରଣ
ବରଣ କରିଲେ କିବା ବିଚାରି ମନେ !

ସତୀ-ଧର୍ମେ ଯମରେ ହାରି
ଫେରି ପାଇ ପତି ଧନ୍ୟ ରାଜକୁମାରୀ ।୪୩।

ଜଣେ ଯେ ଘେନିଛି ତା'ରେ ଦେବତା କରି ବିଚାରେ
ତାଙ୍କ ସେବା କଲେ ନିକି ମିଳିବ ଫଳ,
ସ୍ୱଭାବେ ତ ନାରୀଜନ୍ମ ନାହିଁ ଜ୍ଞାନ, ନାହିଁ ଧର୍ମ,
ମୋକ୍ଷ ଏକା ପତିପଦ ସେବା ତାଙ୍କର,
ସେୟା କରି ଯାଉ ଜୀବନ,
କେତେ-କାଳ ଥିବ ଅବା ଏ ଯଉବନ ? ।୪୪।

ନାନାମତେ ଚିନ୍ତି ଚିତ୍ତେ ନିରକ୍ଷରା ହୃଦପୀଠେ
ଧୀରେ ଧୀରେ ପତି-ଛବି ରଖିଲା ଆଣି,
ସ୍ୱଭାବେ ଭୀରୁ ତରୁଣୀ ପାପ-ପୁଣ୍ୟ ମନେ ଗୁଣି
ଥିର କଲା, ମାନିବ ସେ ଶାଆସ୍ତ୍ର ବାଣୀ,
ଯେ ମିଳିଛି ଭାଗ୍ୟେ ତାହାର,
ହେଉ ଯୋଗ୍ୟ ସେ ତାଙ୍କର ପଦସେବାର ।୪୫।

ନିଜ ଗ୍ରାମେ ବନ୍ଧୁ ଘରେ ଜଣାଶୁଣା ପରସ୍ପରେ
ଥିଲେ ପୁଣି କେତେ ଖୁଡ଼ୀ ମାଉସୀ ଆଦି,
ବୁଢ଼ାବରେ ଦେଇ ହାତ ହେଉଛନ୍ତି ଆତଯାତ
ପିଲାପିଲି କରି ଘରଦ୍ୱାର ସଂପାଦି,
ତା' ଜୀବନ ହେବ ସେପରି
ନାରୀ ତ ସେ, କି ପାଇବ ଅଧିକ କରି ? ।୪୬।

ଜେମାର ଅନ୍ତର ତଳେ କି ଚିନ୍ତା କି ଭାଷା ଥରେ
ଜାଣିଲେ ଜନନୀ, କିଏ ଜାଣିବ ଆନ
ଦେଖିଲେ ଦଳାଇ ନେତ୍ରେ କନ୍ୟାର ସକଳ ଗାତ୍ରେ
ପାରିଲାଣି ଯଉବନ ରୂପ-ବିତାନ,
ପାଖେ ଆଉ ରଖି କିପାଇଁ
ନିଜ ଘରେ ନିଜ ଲୀଳା କରୁ ସେ ଯାଇ ।୪୭।

ଆରମ୍ଭିଲେ ସଜସାଜ ନ ଜାଣନ୍ତି କାଲି ଆଜ
କେବେ ସ୍ୱାଇଁ-ଘରୁ ଲୋକ ଆସିବ ଡାକି

ଦରିଦ୍ର ହେଲେ କି ହେଲା ନାମ-ଡାକ ଦିନେ ଥିଲା,
ତାର-ସଙ୍ଗେ ଖୁଣିବାକୁ ନଥିବ ବାକି,
ସେହି କ୍ରମେ କରୁଁ ଯୋଗାଡ଼
ଦିନେ ବନ୍ୟା ପରି ପହଞ୍ଚିଲା ସଂବାଦ ।୪୮।

ସମ୍ବାଦ ଆସିଲା ଗ୍ରାମେ ନାହାନ୍ତି ଗଞ୍ଜାମ-ଧାମେ
ଦଳାଇ ଜାମାତା, ପଳାତକ ସେ କାହିଁ,
ବହୁ-ବତି ଦୀପ ସରି ତୈଳ ତାଙ୍କ ଗଲା ସରି
ଅତ୍ୟନ୍ତ ଚଞ୍ଚଳେ, ବହୁ ବ୍ୟସନେ ଥାଇ,
ସରି ତେଲ, ବତି-ଭସ୍ମରେ
ଭରା ଦୀପ ପରିତ୍ୟକ୍ତ ପିଲିସଜରେ । ।୪୯।

ଇନ୍ଦ୍ରଧନୁ ଗଲା ମିଳି ଦେଖାଗଲା କୃଷ୍ଣଶିରୀ
ଆକାଶେ ଜଳଦ-ଦୈତ୍ୟ ରୁକ୍ଷ କେଶର
ଜାଣିଲେ ଜଗତଜନେ ବୁଡ଼ାଇଲେ ମହାଜନେ
ବିଭବ-ବୋଇତ, ପଡ଼ିଅଛି ନଙ୍ଗର;
ବିରାଟ ସେ ଲୌହର ଭାର,
ଟେକିବାହିଁ ତାକୁ ଖାଲି ହୋଇବ ସାର ।୫୦।

ସାରିଛନ୍ତି ମହାଜନେ ପୂର୍ବାର୍ଜ୍ଜିତ ଯେତେ ଧନେ
ତା'ଛଡ଼ା ଅନ୍ୟର ଧନେ ସାଜି ଧନିକ,
ଚଳାଇଲେ ଦୀର୍ଘ କାଳ ଆଡ଼ମ୍ବର ବ୍ୟଭିଚାର
ଦେଖାଇଲେ ଜଗତରେ ବିତ୍ତ ଅଳୀକ,
ବୃଷ୍ଟି-ପ୍ରାଣ ତଟିନୀ ପରି
ବନ୍ୟା ପରେ ଶୂନ୍ୟ ଗୃହ ରହିଛି ପଡ଼ି ।୫୧।

ଊର୍ଣ୍ଣନାଭ-ତନ୍ତୁ-ଜାଲ ପରି ବହୁ ସାହୁକାର
ବିସ୍ତାରି ଚାତୁର୍ଯ୍ୟ ତାଙ୍କୁ ବିତ୍ତ ଯେ ଦେଲେ
ବେଳ ଜାଣି କ୍ରମେ ଜାଲ ଟାଣନ୍ତେ, ଜାଣି ଜଞ୍ଜାଳ
ଅସହ୍ୟ, ରସିକ ଗ୍ରାମ ଛାଡ଼ିଲେ ହେଲେ,
ଶ୍ରାବଣାନ୍ତେ ଶୂନ୍ୟ-ଆସାର
ମେଘ ପରି, ପଳାଇବା ମଣିଲେ ସାର ।୫୨।

ସାଥେ ସାଥେ ସାହୁକାରେ, ଯାହାଙ୍କ ମୁଖ-ହିକ୍କାରେ
ରସିକ ଭୋଜ୍ୟର ଗନ୍ଧ ଥିବ ଏ ଯାଏଁ
ବସିଲେ ଦୁଆରେ ଆସି ଭାଗ୍ୟେ ନିନ୍ଦା ପରକାଶି
ଆପଣାର (ରସିକଙ୍କ ନୁହେଁ), ବେଢାଏ,
ବୁଡ଼ିଗଲୁ ବୋଲି କହିଲେ,
ବୁଡ଼ାଇଲୁ ଧନ ଯାହା ହୁଡ଼ି ପହିଲେ ।୫୩।

ଥୋଇ ଆଗେ ଖାତାପତ୍ର ମାରି ହାତ ଯତ୍ରତତ୍ର
ଦେଖାଇଲେ ଦିନ ବାର, ଟଙ୍କା ପଇସା
କେଉଁ ଦିନ କେତେ ବେଳେ କାହିଁକି କି ବାବଦରେ
କିଏ କିଏ ଥିଲେ ଅବା ସାଇପଡ଼ିଶା,
ନେଲେ କିବା ଆଶା ଦେଖାଇ,
କିଏ ଜାଣିଥିଲା ଶେଷେ ଯିବେ ପଳାଇ ।୫୪।

ଅପୋଗଣ୍ଡ ଶିଶୁଦ୍ୱୟ ଖେଳିବା ଲାଗି ଅଥୟ
ଏ ଜଞ୍ଜାଳ ତାଙ୍କୁ ନାହିଁ କରେ ପରଶ;
ଗୃହସ୍ଥଙ୍କ ବୁଢ଼ୀ ମାଆ, ଦୁଃଖୀ-ରଙ୍କୀଙ୍କର ସାହା
ଦମ୍ଭ ତାଙ୍କ ନେଇ ନାହିଁ ଗୁରୁ ବୟସ,
ତାଙ୍କୁ ଡାକି କରିଲେ ଠିଆ,
ବିଳପନ୍ତି ମାଆ, ବୁଝେ କାହୁଁ କଜିଆ ? ।୫୫।

ଏକସ୍ୱରେ ମହାଜନେ କହିଲେ ଆଣି ପଠାଣେ
ବସାଇବୁ ପ୍ରାପ୍ୟ ଧନ ମିଳିଲାଯାକେ,
''ଏ ଦୁଆରେ ଚପରାଶି ପଥର ମାଡ଼ିନି ଆସି
ବୁଢ଼ୀ କାଳେ ଏକଥା କି ଦେଖିବି ଆଖେ
ମାଗନ୍ତି ଯା' ନ୍ୟନ୍ତୁ ଚଣ୍ଡାଳେ''
ଭାବି ବୁଢ଼ୀ କଥା ପଠାଇଲେ ସଭାରେ ।୫୬।

ବୁଝିବାକୁ କେହି ନାହିଁ ଛୋଟ ଶିଶୁ ଦୁଇ ଭାଇ
ଜନନୀ ତ ଗୁରୁ ପୁତ୍ର-ଶୋକେ ବ୍ୟାକୁଳା
ବିଜିତ ଧନୀ ନଗରୀ ସୈନିକେ ଲୁଣ୍ଠିଲା ପରି
ଯେ ପାଇଲା ଭରିନେଲା ଆପଣା ପୁଳା

ଶେଷେ ଜଣାପଡ଼ିଲା କଥା
ସବୁ ଶେଷ, ଜାଗା ନାହିଁ ଗୁଞ୍ଜିବେ ମଥା ।୫୭।

ରାଜମାତା ସମ ବୁଢ଼ୀ      ହାତେ ଥିଲା ସୁନାବୁଢ଼ୀ
ହାତେ ଥିଲା ନିଜ ଧନ କିଛି ଗଚ୍ଛିତ,
ପଠାଣେ କେହ୍ନେ ଦୁଆରେ      ନ ବସିବେ ଏ ଚିନ୍ତାରେ
ଏକେ ଏକେ ହାତୁଁ ସବୁ କଲେ ସ୍ଖଳିତ,
ନିଃସମ୍ବଳ ହୋଇଣ ଶେଷେ
ନାତିଙ୍କି ଧରିଣ ବିଳପିଲେ ନିଃଶେଷେ ।୫୮।

ଏ ସଂବାଦ ପଡୁ କାନେ      ସ୍ତବ୍ଧ ସବୁ ଗ୍ରାମଜନେ
ହେମା-ଭାଗ୍ୟ ଚିନ୍ତି ହାହାକାର କରିଲେ,
ଦଳିଆଣୀ ହେଲେ ଦେଖା      ନ କରି କଥା ଅପେକ୍ଷା
ଘେରି ଯାଇ ଗ୍ରାମ-ନାରୀ ଲୁହ ଟେକିଲେ;
ଦଳିଆଣୀ କୋମଳମନା
ଅଧୀର କରିଲେ ଗ୍ରାମ, ରୋଦି ଉନ୍ମନା ।୫୯।

"ମୋ କନକପିତୁଳାର      କପାଳେ ଏହା ହେବାର
ଥିଲା ବୋଲି କିଏ ସତେ ଥିଲାଟି ଜାଣି !
ନମଲି କିପାଁ ଡଙ୍କୁଣୀ      ବଁଚି ଯା' ଦେଖିଲି ପୁଣି
ଅନାସ୍ତ ହେବାର, ଯିଏ ହୁଅନ୍ତା ରାଣୀ,
ଥାଇ ପତି ରାଣ୍ଡୁ ବଳିଲା,
ରାଣୀ ହୋଇ, ଦାଣ୍ଡେ ଠିଆହେଲା ମୋ' ପିଲା ।୬୦।

କାଣୀ କୁଜୀ ଛୋଟୀ ଯିଏ      ବିଭା ହୋଇ ସେ ସଭିଏଁ
କରିବେ ସେ ପତି-ପୁତ୍ରେ ଘରକରଣା;
ସୁନାର ପିତୁଳା ମୋର      ସେ କି ହେବ ଛାରଖାର
କି ପାପରେ ଦିଅଁ କଲେ ଏ ବୁଝାମଣା ।"
ବୋଲି, କାଁଦି ଲାଗିଲେ ସତୀ
ବିଧୁରି ଆପଣା ଶୋକେ ଅପରେ ଅତି ।୬୧।

ଦଳେଇ ସରଳ ପ୍ରାଣ      ତୁନି ରହି ଅବିରାମ
ସ୍ତବ୍ଧ ହୋଇ ଆଦ୍ୟେ ବସି ଭାବିଲେ ଖାଲି

ପଠାଇଲେ ପୁଅ ଦୁଇ ତା'ପରେ ଆଣିବା ପାଇଁ,
କ୍ୱାଇଁରେ ପାଇଲେ କାହିଁ ବାଟ ଓଗାଳି,
ଗଣାଇଲେ ଆଣି ଜ୍ୟୋତିଷ,
ଜଣାଇଲେ ଦେବତାଙ୍କୁ ମାଗି ଆଶିଷ ।୬୨।

କାହିଁରେ କିଛି ହେଲାନି ବୁଲି ରାଜ୍ୟ, ରାଜଧାନୀ
ପୁଅ ଦୁହେଁ ଫେରିଆସି ଦେଲେ ଉଦନ୍ତ,
ପଚରା-ପଚରି କରି ବୁଝିଲେ ସେ ଜୀବ ଧରି
ଅଛନ୍ତି ସେ, କିନ୍ତୁ ନାହିଁ ଠାବର ଅନ୍ତ ।
ରେଳ ଚଢ଼ି କାହିଁ ଯିବାରେ !
କହୁଛନ୍ତି ଲୋକେ ଦେଖିଥିଲେ ଗଞ୍ଜାରେ ।୬୩।

ନିରସ୍ତ ହେଲେ ସକଳେ ଆଶା ମାତ୍ର ଭବିଷ୍ୟରେ
ରଖିଲେ, କେଜାଣି କାଳେ ଆସିବେ ଫେରି,
ପିଲାପିଲିଙ୍କି ତ କ୍ଷଣେ ନ ଛାଡ଼ଇ ସ୍ନେହପଣେ
ମନେ କି ସେ ନ ପଡ଼ିବେ ନୟନେ ହେରି;
ପିଲାପିଲି କାହିଁ ଆନର,
ବୁଝିବନି କି ସେ ଦୁଃଖ ନିଜ ଲୋକର ।୬୪।

ପୁତ୍ରେ ପେଷି ଦଳାଇଏ ନାତିଙ୍କୁ ଆଣିଲେ ଗାଁଏ
ସମ୍ବନ୍ଧିନୀଙ୍କି ବି ଘେନି ଆସିଲେ ଡାକି,
କହିଲେ ତାଙ୍କୁ ବିନୟେ ଏ ସମ୍ପତ୍ତି ମୋର ନୁହେଁ
ତୁମରି ଏ, ଭେଦାଭେଦ ନାହିଁ ତ ବାକି,
ଭାଗ୍ୟ ମୋର, ପଡ଼ିଲା ଧୂଳି
ରାଣୀ କିପାଁ ଦେଖନ୍ତେ ମୋ ଗରିବ ଚୁଲି ।୬୫।

ନୀରତ୍ୟାଗେ ଅବିରତ ନେତ୍ର କରି ସନ୍ତପତ
ନୀରବେ ବିରାଟ-କାୟା ସେ ସମ୍ବନ୍ଧିନୀ,
ପତିତ-ପଲ୍ଲବ ବୃକ୍ଷ ପରିରେ କରୁଣ-ରୂକ୍ଷ
ଦିଶି, କଷ୍ଟେ ହେଲେ ଦୁଃଖ-ପଥଚାରିଣୀ,
ବନ୍ଧୁ ଧରି କରିଣୀବରା,
ବଂଧ-କୁଣ୍ଠିତାରେ କିଏ ନଚାଏ ପରା ।୬୬।

ତରଳ ଚଞ୍ଚଳ ଶିଶୁ— ନାତିଙ୍କ ଦରୋଟି ଭାଷୁ—
ସୁଧା ପିଇ ଦଳେଇଏ ଭୁଲିଲେ ଶୋକ,
ଅନ୍ତର-ବ୍ୟଥା କନ୍ୟାର ମାଆ ସିନା ଜାଣିବାର,
ସେଥିରେ କି ଦଳିଆଣୀ ଭୁଲିବା ଲୋକ ?
ବିଳପି ସେ ଅନବରତେ,
ଆରମ୍ଭିଲେ ଯାତ୍ରା କ୍ରମେ ମରଣ-ପଥେ ।୬୭।

ଯାଉଁ କୂପେ ନୀର ଆଣି ମେଘେ ନାହିଁ ପରିମାଣି
ପଥେ ପାଇ ବଜ୍ରାକୁଳ ବୃଷ୍ଟି ସହସା,
ନୀର-ଭାର ଧରି କାଖେ ମୁଖ ପୋତି ବାଡ଼ପାଖେ
ତରୁଣୀ ଥମକି ଯିବା ସହି ବରଷା,—
ପରି କ୍ଷେମା ଏ ବିପଦରେ
କାଠ ହୋଇ ଚଳେ ମୁଖ ରଖି ପଦରେ ।୬୮।

କାନ୍ଦେ କ୍ଷେମା ଦୁଃଖେ ବସି, ଦେଖିନି କେହି ବା ହସି
କହିବାର କଥା କେହି ଦେଖିନି ପୁଣି,
ବିଳାପ, ହାସ୍ୟ ମଝିରେ ଗୁରୁ ଯେ ବ୍ୟଥା ରୁଧିରେ
ମାରି ତା' କାଟିଲା କାଳ କରମ ପୁଣି;
କୀଟଗର୍ଭା ଲତିକା ପରି
ଚଳେ, ବାହ୍ୟେ ରୂପ, ଅନ୍ତେ ଲାଞ୍ଛନା ଧରି ।

## ମଧ୍ୟମ ପର୍ବ

### (ପୂର୍ବଭାଗ)

କହୁଛନ୍ତି ଗ୍ରାମ-ପୁରୋହିତେ "ଅଲେଶ୍ୱର
ଯିବେ କାଲି, ସଜ ହେବେ, ଥିବ ଯାହାଙ୍କର
'ଶିବ ସମୀପେ ମନାସ,
ଶେଷ ସୋମବାର, ଗଲେ ପୂରିଯିବ ମାସ" ।୧।

ସମ୍ମୁଖରେ କ୍ଷେମା, ଦୂରେ ନୂଆ ଦଳିଆଣୀ,
କବାଟ ଉଢ଼ାଳୁ ମାତ୍ର ଦିଶେ ତାଙ୍କ ଠାଣି,
ଉଭା, ପାଶେ ତାଙ୍କ ଭାଇ
ଆସିଛି ଅପାରେ ଭାର ଦେଇ, ନେବା ପାଇଁ ।୨।

''ଯିବ ତମେ ?''—ପଚାରିଲେ ସସ୍ମିତେ ଗୋସାଇଁ,
ଜେମା କିଛି କହି ନ ପାରଇ 'ହଇ ', 'ନାହିଁ'
ହସି, କୁଣିଆ ସେ କହେ,
''ଯିବେ ସବୁ, ତାଙ୍କ ଯିବା ମୋ ଉପରେ ରହେ'' ।୩।

''ହଉ ତେବେ କୁଣିଆ ତ ଘେନିଯିବେ ସାଥେ
ଯାଉଛି ମୁଁ , ଭେଟ ହେବ ଆମ ଗ୍ରାମ-ବାଟେ,
ବାହାରିବ ଟିକେ ବେଗେ
ନିଛାଟିଆ ଥିବ ବାଟ, ଛାଇ ଥିବ ମେଘେ ।'' ।୪।

କହି, ହାତେ ଧରି ଗଡୁ, ଗଲେ ପୁରୋହିତ
ଜେମା ଓ କୁଣିଆ କ୍ଷଣେ ହୋଇଲେ ସସ୍ମିତ
ଚାହାଁଚାହିଁ ପରସ୍ପରେ
ଜେମା ମୁଖ ଫେରାଇଲା ଅଳ୍ପ ସରମରେ ।୫।

''କେବେ ଅଲେଶ୍ୱର ତମେ ଯାଇଛ କୁଣିଆ ?''
ପଚାରିଲା ମୁଖ ପୋତି, ଜେମା ଦୂରେ ଠିଆ ।
''ଆଦ୍ୟ ପରା ଏଇ ଥର''
କହୁଁ, ଜେମା କହେ ''ପୂରାଇବ ବନସ୍ତର'' ।୬।

''ହେଲା, ବନସ୍ତେ କି କେହି ନ କରନ୍ତି ବାସ
ସାବିତ୍ରୀ ବନସ୍ତେ ଗଲେ ଛାଡ଼ିଣ ଉଆସ;
ରାମ ସୀତା ଗଲେ ବନେ;
ବଞ୍ଚିଲେ ଜାଣିବ କେତେ ବିଷମ କଷଣେ ! ।୭।

ସୁଖେ ବଞ୍ଚିବାର ଲାଗି ବନସ୍ତ ତ ଭଲ
ଏକା ଏକା, ସଂସାରର ନାହିଁ କଲବଲ,
ଘେନି ଯିବି ବାଟୁ ବନେ
ତମକୁ ମୁଁ ''—କହି ଚାହେଁ ଜେମାର ବଦନେ ।୮।

ଗୋଟିଏ କଟାକ୍ଷ ହାଣି, ଫେରାଇଣ ନେତ୍ରେ
ଯାଏ ଧୀରେ ଜେମା, ନୀର ଦେବ ବାଡ଼ି-କ୍ଷେତ୍ରେ
ଧରି କାଖେ ଗୁରୁ ଗରା;
ବଧୂଭାଇ ଡାକେ ପଛୁ 'ପାଣି ଦେବ ପରା' ।୯।

କିଏ ଏ କୁଣିଆ କରି ଲଘୁ ପରିହାସ
ହେମା ଓଠେ ଫୁଟାଉଛି ମଧୁ ଦରହାସ ?
ନବ ବଧୂ ଆଗମନ
କିପରି ବା ହେଲା, ହେଉ ତା'ର ଆଖ୍ୟାପନ ।୧୦।

ଇତିମଧ୍ୟେ ଗୁରୁ ଦୀର୍ଘ ଚାରୋଟି ବରଷ
ଯାଇଛି ବହି, ସେ ଘରେ ରଖି ଇତିହାସ ।
ଶୋକେ ଦଳିଆଣୀ ସତୀ
ପ୍ରଥମେ ତେଜିଲେ ଧରା ପଛେ ରଖି ପତି ।୧୧।

ଯଷ୍ଟିହୀନ ଅନ୍ଧ ପରି ହୋଇଲେ ଅଣ୍ଡାଳି
ବହୁ ଦିନ ସତୀ ପତ୍ନୀକଥା ଭାଳି ଭାଳି
ଦେହ ନଇଁଗଲା ଶୋକେ
ଦଳାଇଙ୍କି ଚିହ୍ନି ନ ପାରିଲେ ଆଉ ଲୋକେ । ।୧୨।

ଖାଇଲେ ଲାଗେନି ସୁଖ, ଶୋଇଲେ ଶୟନ;
ଜୀବନର ସାଥୀ କାହିଁ କଲା ପଳାୟନ !
ଭାଳିହେଉଥାନ୍ତି ଖାଲି,
ବେଳେବେଳେ ବିଳପନ୍ତି ସାଥୀକଥା ଭାଳି ।୧୩।

କେତେ ସୁଖ, କେତେ ଦୁଃଖ, କେତେ ସମାଦର,
କେତେ ମାନ, ଅଭିମାନ ଦୀର୍ଘ ଜୀବନର,
ସବୁ ମିଶି ପ୍ରୀତି ଗାଢ଼
ଦୁଃଖେ ସୁଖେ ଯୋଡ଼ା ଯାହା, ସେ କି ଛାଡ଼ବାଡ଼ ? ।୧୪।

ଏକର ପରମ ବନ୍ଧୁ ହୁଅଇ ଅପର
ଜଣେ ଖାଲି ବୁଝେ ଦୁଃଖ ଆନ ମରମର
ଗଲେ ଛାଡ଼ି ସେହି ଜଣ
ବାର୍ଦ୍ଧକ୍ୟେ କି ହେବ ନୂଆ ପ୍ରୀତି ଆୟୋଜନ ? ।୧୫।

ଦଳିଆଣୀ ହଇରାଣ କଲେ ହାହାକାର
ବୁଢ଼ୀ ତାଙ୍କୁ କରିଦେଲା ବିରହର ଭାର
ଏକ ଠାବେ ବସି କାହିଁ,
ଚ୍ୟୁତପୁଷ୍ପ ବୃନ୍ତ ସମ ରହିଥାନ୍ତି ଚାହିଁ । ।୧୬।

ଭାଗ୍ୟେ ବହୁ ବିଭା-ତିଥି ପଡ଼ି ସେ ବରଷେ
ଘରେ ଘରେ ଶୁଭୋତ୍ସବ ଲାଗିଲା ହରଷେ,
ଦଳାଇଙ୍କି କହି ଜନେ
ଲଗାଇଲେ କଷ୍ଟେ ପୁତ୍ର ବିଭା ଆୟୋଜନେ । ।୧୭।

ଅଳପକେ ଗଲା ଜୁଟି ଭଲ କନ୍ୟା, ଘର
ବଧୂ ଦେଖି ଊଣା ହେଲା କିଛି ଶୋକ-ଭାର;
ହେଲେ କି ହେଲା ତଥାପି
ଲିଭେ ନାହିଁ ଦଳାଇଙ୍କ ଦାହ ଚିତ୍ତବ୍ୟାପୀ ।୧୮।

କ୍ରମେ ହେଲେ ଜରାଜୀର୍ଣ୍ଣ, ଧରିଲେ ଶୟନ,
ପୁରୋହିତ କଲେ ପାଶେ ପୁରାଣ-ଗାୟନ,
ପାଶେ ରଖି ପରିବାରେ
ଚଳିଲେ ଦଳାଇ ବରଷକେ ଆରପାରେ ।୧୯।

ସେ ହେଲାଣି ଦୁଇ ବର୍ଷ, ଗଲେଣି ପାସୋରି
ସେ ଦୁଃଖ କୁଟୁମ୍ବେ ଗତ ବର୍ଷ ଶୀତ ସରି,
ବାଢ଼ି ନୂତନ ସଂସାର;
ହେଲା ପରି କଟା-ଗଛୁ ଅଙ୍କୁର ସଂଚାର ।୨୦।

ବଡ଼ ଘନଶ୍ୟାମ ଏବେ ବୋଲାନ୍ତି ଦଳାଇ
ତାଙ୍କୁ ମାନି ଘର ବୁଝୁଅଛି ସାନଭାଇ
ନବବଧୂ ଦଳିଆଣୀ,
ଯାଏ ଚଳି ସବୁ କଥା ପୂର୍ବ ଢଙ୍ଗ ଜାଣି ।୨୧।

ଝେମା କାଟେ କାଳ କୁଟି, ସିଝାଇ, ବନାଇ,
ଥାଏ ଲାଗି କାମେ, କା'ରେ ଚାହିଁବାର ନାହିଁ
ଜଳ ଘରକୁ ଯୋଗାଏ.
ପଥେ ଗରା-କାଖେ ତଳ ଚାହିଁ, ଆସେ ଯାଏ ।୨୨।

ମଧ୍ୟାହ୍ନେ କରମୁଁ ଯେବେ ମିଳେ ଅବସର
ବାନ୍ଧିବସେ ଯତନରେ ଖୋଷା ଭାଉଜର,
ପାଦ ଘଷେ ବା ଶାଶୁର,
ଜନନୀ ତ ହୁଏ ପୁଣି ଭଗିନୀ ଶିଶୁର ।୨୩।

ନୂଆ ଦଳିଆଣୀ ଅତି ସୁଠାମ ଗଠନ
ବ୍ୟବହାର ସୁକୋମଳ, ରନ୍ଧନ ଯତନ
ଖୁସି ବନ୍ଧୁ ପ୍ରତିବେଶୀ
ସମବୟ ହେତୁ କ୍ଷେମା-ସଙ୍ଗିନୀ ସେ ବେଶି ।୨୪।

ବଧୂଭ୍ରାତା ତାଙ୍କ ପରି ତରୁଣ ସୁନ୍ଦର
ପାଠ ପଢ଼ି ମାନ ବଢ଼ାଇଛି ସେ ବଂଶର
ପଢୁଅଛି ପାଠ ପୁଣି
ଦେଖାଏ ସେ ସଭ୍ୟ ମନ, ଏହା ତାହା ଖୁଣି ।୨୫।

ଆସିଅଛି ବନ୍ଧୁ-ଗୃହେ ପୂଜା ଅବକାଶେ
ସ୍ନେହାଦର ସଭିଙ୍କର ନବ ବନ୍ଧୁବାସେ
ମିଳାମିଶା ଅବାରିତ
ମିଶି, ବସି, ପାରିଛି ସେ ଜିଣି କ୍ଷେମା-ଚିତ୍ତ ।୨୬।

ବସି ବସି ଗପ କରେ ଏଣୁତେଣୁ କଥା;
କ୍ଷେମାର କିଶୋରୀ-ମନ ଉନ୍ମୁଖ ସର୍ବଥା
ଶୁଣିବାରେ ସେ କାହାଣୀ,
କଟକ ନଗର ଘଟା, ମହାନଦୀ ପାଣି ।୨୭।

ରେଳଗାଡ଼ିଯାତ୍ରା, କଳଗୀତ, କଳ-ବତି
ବାବୁଙ୍କର ଆଡ଼ମ୍ବର, ନାରୀଙ୍କର ଗତି,
ନ ଦେଖିଲା ସଂସାରର
କଥା ଶୁଣି କ୍ଷେମା, ବନ୍ଧୁପ୍ରତି ସ୍ନେହପର ।୨୮।

ରଞ୍ଜିତ ବର୍ଣ୍ଣନା ଦିଏ ଯୁବା ଥରେ ଥରେ
ଆଚାର-ବିଚାର କିସ ସାଇବଙ୍କ ଘରେ
ଯାହା ଶୁଣିଥିଲା କାନେ,
ଯାହା ବା ଥିଲା ସେ ଜାଣି ପୋଥିଗତ ଜ୍ଞାନେ ।୨୯।

କହିଲା ସେ ଥରେ, ଆମ ଦେଶ ବିଭାଘର
ପରି ନୁହେଁ ଛନ୍ଦାଛନ୍ଦି ବ୍ୟାପାର ତାଙ୍କର ।
ନିଜେ ବାଛନ୍ତି ସେମାନେ,
ଯାହାରେ ହୋଇବେ ବିଭା ପସନ୍ଦ-ସମାନେ ।୩୦।

ପୁରୁଷ ବାଛନ୍ତି ନାରୀ, ନାରୀ ପୁରୁଷରେ,
ହେବେ ବିଭା, ମିଳେ ଯଦି ଚିତ୍ତ ପରସ୍ପରେ ।
ସିଦ୍ଧ ହୋଇଗଲେ କଥା,
ପୁରୋହିତେ ହେବେ ସାକ୍ଷୀ, ଉତ୍ସବ ସର୍ବଥା ।୩୧।

ବିଭା ପରେ ପତି ଯଦି ମନକୁ ନ ଆସେ
ପାରେ ନାହିଁ ପାଳି, ଅବା ଚଳେ ଅନ୍ୟ ଆଶେ;
ନାରୀ ଯିବ ଛାଡ଼ି ତା'ରେ,
ଚିତ୍ତ ଦେବ, ବାଛି ପୁଣି ଅନ୍ୟ ସ୍ୱାମୀଠାରେ ।୩୨।

କେମନ୍ତ ସୁନ୍ଦର ପ୍ରଥାସବୁ ଦେଖୁଛ ନା !
ଆମର ଯେ ଦେବେ ବାନ୍ଧି ଅଶୁଣା ଅଜଣା,
ଥରେ ହେଲେ ବନ୍ଧା ହାତ,
ସେ ବନ୍ଧନୁଁ ଫିଟିବାର ଆଉ ନାହିଁ ବାଟ ।୩୩।

ସ୍ୱାମୀ ପଛେ ପିଉ ମଦ୍ୟ, ଘେନୁ ଆନ ନାରୀ
ପତ୍ନୀ ତାର ନେବ ଦିନ ତା' ପଦେ ଜୁହାରି,
ସେହି ପରମ ଦେବତା,
ଅଛି କାହିଁ ଭୂମଣ୍ଡଳେ ଏ ଜଘନ୍ୟ ପ୍ରଥା ! ।୩୪।

''ଜେମାଙ୍କୁ ଆମର''—କହି ନୀରବେ ତରୁଣ
ସହସା ସରମେ ଜେମା ବଦନ ଅରୁଣ,
ଥିଲେ ତହିଁ ଯେତେ ନାରୀ
'ତା'ହେଲେ କି— !' କହି ନେତ୍ର ପୋଛି ହେଲେ ବାରି । ।୩୫।

''ତାହେଲେ କି ଆମେ ସମ୍ପି ନ ଦିଅନ୍ତୁ ତା'ରେ
ଏ ପରା ପଦାର୍ଥ ଘରେ ସଢ଼େ କେଉଁଠାରେ !
ଏହା ଦଇବ ବିଚାର,
ଏପରି ଘଟିବ ମନେ ଉଠିଥିଲା କା'ର !'' ।୩୬।

ଏହି ମତେ ସମଦୁଃଖ କରାଇ ଜାଗ୍ରତ
ଥରେ ଥରେ କରେ ଜେମା ହୃଦୟ ବିବ୍ରତ
ଯୁବା ସୁଯୋଗ ବିଚାରି
ଥରେ ଥରେ ଜେମାଚିତ୍ତ ଦିଅଇ ଓଟାରି ।୩୭।

ତରୁଣ ବୟସେ ମୋହକର ପ୍ରେମରସ
ଚାହେଁ ଚିତ୍ତ ତରୁଣୀର ହୃଦୟ ପରଶ,
ଯୁବା, ଆସି ଅବକାଶେ
କ୍ଷେମାରେ ସୁଲଭ ଦେଖି ଲାଗିଲେ ତା' ଆଶେ ।୩୮।

ତରୁଣ ଚଞ୍ଚଳ ସେ ତ, ଚିର ଲଘୁ ଚିତ୍ତ
ପ୍ରଣୟ ତା' ପାଖେ କ୍ଷଣ-ମୋହନ ସଙ୍ଗୀତ
ଆରାଧନା ତରୁଣୀର
ଜାଣିବ ସେ କାହିଁ, ନେତ୍ରୁ ଝେଡ଼ି ତପ୍ତ ନୀର ? ।୩୯।

ତେଣୁ କ୍ରୀଡ଼ାଛଳେ ବ୍ରୀଡ଼ା ଜାତ କରି ତା'ର
ଉଠାଇ କ୍ଷେମାର ମର୍ମେ ପୀଡ଼ା ଅନିବାର
ଅନ୍ତସ୍ଥଳ ତା'ଥରଇ
କଲେ କି ବିପ୍ରାତ ଯୁବା ଜାଣିଲେ ତା' ନାହିଁ ।୪୦।

ସମବୟଃ ଦୁହିଁଙ୍କର, ତରୁଣ ସୁନ୍ଦର
କ୍ଷେମା ତ ହୋଇଛି ଶାଣ-ବାଣ ଅନଙ୍ଗର,
ଚିତ୍ତ ହେବା ଆକର୍ଷିତ
ଅନ୍ୟାୟ ତ ନୁହେଁ, କିନ୍ତୁ ସର୍ବଥା ଉଚିତ ।୪୧।

କ୍ଷେମାର ମାନସ, ଶୋକେ କରି ପରାଜୟ
ବୟସ କରିଛି ଅଙ୍ଗ ତା'ର ରୂପମୟ ।
ଗଣ୍ଡ ଝଲସେ ଆଭାରେ
ସାରା ଅଙ୍ଗ ପରିପୂର୍ଣ୍ଣ ଲାବଣ୍ୟ ବିଭାରେ ।୪୨।

ନ ଜାଣିଲା ଲୋକେ ଦେଖି ପଚାରନ୍ତି ଧୀରେ
'ଘରେ ଏ ପଦାର୍ଥ ଆଉ ରଖ କି ବିଧିରେ !
ଯୋଗ୍ୟେ ଦିଅ ସମ୍ପି ବେଗେ'-
ଜାଣିଲେ ଆହା-ହା କରିଥାନ୍ତି ହୃଦାବେଗେ ।୪୩।

ବୟସ ଷୋଡ଼ଶ, ଅଙ୍ଗେ ବନ୍ୟା ଯୌବନର
ମନ୍ଦୀଭୂତ ହୋଇଅଛି ସ୍ମୃତି ସ୍ୱାମୀଙ୍କର
ବନ୍ଧୁ ଆସିଣ ଏକାଳେ
ମଶାଲ ଜାଳିଲେ ତା'ର ହୃଦ ଅନ୍ଧକାରେ ।୪୪।

କିଶୋରୀ ପରାଣ ଥାଏ ବନ୍ଧ ରାଜପୁର
ସୁପ୍ତ ତହିଁ ରାଜକନ୍ୟା ନୀରବି ନୂପୁର,
ପ୍ରେମ-କାଉଁରି ପରଶେ
ତେଜି ନିଦ୍ରା, ବିଚ୍ଛୁରିତ ମୁକ୍ତା ଗୁନ୍ଥି ବସେ ।୪୫।

ଗୁନ୍ଥିମାଳା, ହୃଦ-ଜ୍ୱାଳା ଅନୁଭବି ଗାଢ଼େ,
ନୂପୁର ବଜାଇ ଚାହିଁ ରହେ ହୃଦ-ଦ୍ୱାରେ
କିଏ ଅଛି କି ଦୋସର
ଦେଇ ମାଳା ପୁହାଇବ ବିରହ ବାସର ।୪୬।

ନ ଆସିଲେ କେହି ମାଳା ଖସିପଡ଼େ କରୁ
ବାତାୟନ ବନ୍ଦ କରି ଦିଏ ବିରାଗରୁ,
ପୁଣି ଧରଇ ଶୟନ
ଧୀରେ ମନ୍ଦ ହୋଇଆସେ ଅଧୀରିତ ମନ ।୪୭।

ଆସେ ଯଦି କେହି ତେବେ ତା'ପଦ ନୂପୁର
ଜୀବନ୍ତ-ଚଞ୍ଚଳ ଛନ୍ଦେ ଧ୍ୱନଇ ସେ ପୁର ।
ହୃଦ-ସ୍ୱର୍ଣ୍ଣ-ସିଂହାସନେ
ଡାକି ଆଣି ବରି ସ୍ନେହେ ବସାଏ ଆସନେ ।୪୮।

ଖୋଲଇ ତରୁଣୀ ତା'ର ଗୁପ୍ତ ଗନ୍ତାଘର
ସବୁ ଆଣି ଠୁଳ କରେ ଚରଣେ ପ୍ରିୟର
ପ୍ରାଣ-ବୀଣାରେ ସଙ୍ଗୀତ
ଜାଗ୍ରତ କରାଇ ପୁର କରେ ମୁଖରିତ ।୪୯।

ପ୍ରେମ ଏକା ନାରୀ-ଚିତ୍ତ ପୁଷ୍ପଗନ୍ଧେ ଭରେ
ବଞ୍ଚିବାର ସାର୍ଥକତା ଦିଏ ତାହା କରେ ।
ହାର ହୋଇ ସେ ଲମ୍ବିବ
କଣ୍ଠେ କା'ର; ନାହିଁ ଯଦି ଭୂତଳେ ଶୁଖିବ ।୫୦।

ଥିଲା ବନ୍ଧ ଏଯାବତ ଜେମାର ମନ୍ଦିର
ଫିଟାଇଲା ବଧୂ-ଭାଇ କ୍ରମେ ଧୀର ଧୀର ।
ଜେମା ଦେଖିଲା ତା' ପୁରେ
ଶୂନ୍ୟ ସବୁ; କେହି ନାହିଁ ନିକଟେ ବା ଦୂରେ ।୫୧।

ବହୁ ଦିନ ତଳେ ଯିଏ ନେଇଥିଲେ ଧରି
ସ୍ମୃତି ତାଙ୍କ ହୃଦେ ଥିଲା ସନ୍ଧ୍ୟା-ଛାୟା ପରି ।
ପ୍ରାଣ ଚାହେ ନା ତାହାରେ,
ଚାହେ ଛାୟା ଶମିବ ଯେ ନିଦାଘ ଦାହାରେ ।୫୨।

ଏକାଳେ ଭାଉଜ-ଭାଇ ହୋଇ ଅବତୀର୍ଣ୍ଣ
ମୃଦୁ ମୃଦୁ ସ୍ନେହ-ଗନ୍ଧେ ପରାଣ ଆକୀର୍ଣ୍ଣ
କରି ଆକର୍ଷିଲେ ଶେଷେ,
ବିବେକ, ଉଚ୍ଛନ୍ନ ମନେ ବାନ୍ଧେ ବହୁ କ୍ଳେଶେ ।୫୩।

କୁସୁମର ଗନ୍ଧ ଆଉ ଶବ୍‌ଦ ସଙ୍ଗୀତର
ପ୍ରାଣେ ଯେହ୍ନେ ଅଜାଣତେ ପଶଇ ଆମ୍ଭର;
ପ୍ରେମ ହୃଦେ ସେହିପରି
ପଶି ଅଜାଣତେ ନିଏ ଚିତ୍ତବୃଦ୍ଧି ହରି ।୫୪।

କେଜାଣି କିପରି ହେଲା ଜେମା ତ ଜାଣିନି ।
ଜାଣିଲା ସେ ଖାଲି ତା'ର ଛାତି କିଣିକିଣି
ହେଲା, ଦିନେ ରଜନୀରେ
ବନ୍ଧୁ ଛାଡ଼ି, ଯାଇଁ ଶୋଉଁ ଭାଉଜ କତିରେ ।୫୫।

ଧୀରେ ଧୀରେ ପରସ୍ପର ହେଲେ ଆକର୍ଷିତ
କିନ୍ତୁ କେହି ନ କହଇ ଆନେ ନିଜ ଚିତ୍ତ
ମନେ ମନସିଜ -ଶର
ବିନ୍ଧି ବ୍ୟସ୍ତ କରୁଥାଏ ମିଳନେ ଅନ୍ତର ।୫୬।

ବନ୍ଧୁଙ୍କ ଚରଚା ଜେମା ଆପେ କରୁଥାଇ
ଭାତ ବାଡ଼ି ଚାହିଁଥାଏ, ଦାଣ୍ଡରୁ ଡକାଇ
ପାଖେ ଛିଡ଼ା ହୋଇ କହେ
'ଏଟା ଖାଅ', 'ଆଉ ଆଣେ' ଅତ୍ୟନ୍ତ ସେନେହେ ।୫୭।

ଦିନେ ଧାନ କୁଟି ଜେମା ସ୍ୱେଦ-ସ୍ୱିନ୍ନ ତନୁ
ଓଦା ବସ୍ତ୍ର, ସ୍ୱେଦ-ମୁକ୍ତା ଖସଇ ବଦନୁ
ଧୂଳେ ଧୂସର ମସ୍ତକ
ଶିବ-ଶିରେ ବିଂଚିଛି କେ ଗୟସ-ସ୍ତବକ ।୫୮।

କାମ ସାରି ସ୍ୱେଦ ଜ୍ୱାଳା ନିବାରିବା ପାଇଁ
ବାୟୁ ଲାଗି ହେଲା ଠିଆ ବାରିପଟେ ଯାଇ
କେହି ନାହାନ୍ତି ସେଠାରେ
ଅଶଙ୍କିତେ ଟେକି ବାସ ପୋଛେ ସ୍ୱେଦ-ଧାରେ ।୫୯।

ଆସି ପଛୁ ସହସା କେ ଦେଇ ମାଥେ କର
ଝାଡ଼ି ଦେଇ ଧୂଷ, ଟିପ ରଖେ ସ୍କନ୍ଧ ପର ।
ତ୍ୱରା ଚମକି ଲେଉଟି
ଦେଖେ ହେମା ବଧୂ-ଭାଇ, ହସେ ଭରା ଦୃଷ୍ଟି ।୬୦।

'ଏ କିସ କୁଣିଆ' ବୋଲି ଛଳ କୋପେ ଚଳି
ନେତ୍ରେ କ୍ରୋଧ, ଓଠେ ହାସ, ଗଣ୍ଡ ସୁଖେ ଝଳି,
ଟିକେ ଚାହିଁ ପଶେ ଘରେ
ପାସୋରିବା ଲାଗି, ହେମା ପୁଣି କାମ ଧରେ ।୬୧।

ତରୁଣ ଭାବିଲେ ହେମା ରାଗ କଲା ପରା
କେଜାଣି ପାଇବେ କେବେ ଅପାର ହକରା
କୃତ ଅପକର୍ମ୍ମ ପାଇଁ,
ଭୟେ ପଳାଇଲେ ତୋଟାମାଳେ ବନ୍ଧୁ ରାଇ ।୬୨।

ଏଣେ ହେମା ଆଶଙ୍କିତ, କେଜାଣି କିଶୋର
କ୍ରୋଧେ ତା'ର ଛିଣ୍ଡାଇବେ ପରା ପ୍ରୀତି-ଡୋର
କାମ କରୁ ଚାହୁଁଥାଇ
ଦାଣ୍ଡୁ କେବେ ଫେରିବେ ସେ ପ୍ରିୟ ବଧୂ-ଭାଇ ।୬୩।

ସନ୍ଧ୍ୟା ହେଲା, ରାତି ହେଲା, ରଂଧନ ନିଃଶେଷ,
ନ ଆସନ୍ତି ବଧୂ-ଭାଇ, ଉଦ୍‌ବେଗ ବିଶେଷ,
ହେମା ପଠାଇଲା ଡାକି
ଅପେକ୍ଷି ଅଙ୍ଗନେ ବସିଥାଇ ସେ ବରାକୀ ।୬୪।

ଭୟେ ଭୟେ ବଧୂ-ଭାଇ ପଶୁଁ ଅଗଣାରେ
ଭର୍ତ୍ସନା କରଇ ହେମା ଥାଇ ଅନ୍ଧକାରେ
ଏ କି ତମର ଆଚାର,
ନ ଖାଇ ରାତ୍ରିରେ କାହିଁ କରୁଛ ବିହାର ।୬୫।

'ମୁହଁ ଧୁଅ ବେଗେ', କହି ଥୋଇଦେଲା ପାଣି
ସଜାଡ଼ି ଥୋଇଲା ଅନ୍ନ ରୋଷଘରୁ ଆଣି
ବିଞ୍ଚୁଥାଇ ବିଚଣାରେ
ଦେଖୁଥାଇ ଅଛନ୍ତି କି କେହି ଅଗଣାରେ ।୬୬।

ବସୁଁ ସେ ଅତିଥି ଖାଇ, ଅନାଏ ବାହାରେ
କହେ ଧୀରେ, ଚାହିଁ କେହି ନାହିଁ ଅଗଣାରେ,
''ରାଗି ଅଛ କି ମୋ ପରେ,
କିଛି ନୁହେଁ ! ପଶିଲନି ଘରେ କି ମୋ ଡରେ?'' ।୬୭।

ହସିଲା ତରୁଣ, ମୃଦୁ ମୃଦୁ କ୍ଷେମା ହସେ
ବନ୍ଧ ଭାଙ୍ଗି, ସ୍ରୋତ ବହେ ପୁଣି ପ୍ରୀତିରସେ
କହେ କ୍ଷେମା ପୁଣି ଧୀରେ,
''ଅଲେଶ୍ୱର ନେବ କି ହେ ଆମକୁ ସାଥିରେ ? ।୬୮।

ଯାଉଛନ୍ତି ସବୁ କେବେ ଦେଖିନି ମୁଁ ଥାନ
ନାରୀ ତ ସହଜେ, ନାହିଁ ଜ୍ଞାନ-ଧର୍ମ୍ମ ଜାଣ ।
ଦିଅଁ ଦେଖିଥାଉଁ ଖାଲି
ଲାଗିଥାଉ ମୁଣ୍ଡେ ହେଲେ ତାଙ୍କ ପୀଠ-ବାଲି ।'' ।୬୯।

'କି ମନାସ' ଅଛି ବୋଲି ପଚାରେ କୁଣିଆ
ଉଠିପଡ଼ି କହେ କ୍ଷେମା ରାଗେ 'ଚୂଲିନିଆଁ' !
'ଖାଲି ଦେଖିଥାଏଁ ଆଗେ
'ନେବ କି- ନା ନାହିଁ ?' କହି ଚଳେ ବଧୂ ପାଖେ' ।୭୦।

## ମଧ୍ୟମ ପର୍ବ

### (ଉତ୍ତର ଭାଗ)

ପୂର୍ବ ନିବେଦିତ ମତେ ଦିନେକ ସକାଳେ
ନ ପଡୁଣୁ ରବିକର ହିମ-ସିକ୍ତ ଚାଳେ
ଗ୍ରାମ-ସୀମନ୍ତିନୀଗଣ
ବାହାରିଲେ କରିବାକୁ ଦେବ-ଦରଶନ ।୧।

ସିନ୍ଧୁତୀରେ କ୍ରୋଶ ଦୂରେ ଦେବ ଅଳେଶ୍ୱର
ରାଜିତ ଲଙ୍କାମ୍ର-ବଟ-କୁଂଜେ ମନୋହର,
ଏହା କହିଥାନ୍ତି ବୃଦ୍ଧେ—
ଥାପିଲେ ପୁରୁଷୋତ୍ତମ ଯାଉଁ କାଂଚି-ଯୁଦ୍ଧେ ।୨।

ନିକାଞ୍ଚନ ବେଳାଭୂମେ ଅଏଁଳା ସଂପଦେ
ପୂଜିଥିଲେ ଗଜପତି ଉମା-ପତି ପଦେ;
ନାମ ତେଣୁ ଅଳେଶ୍ୱର,
ଏବେ କିନ୍ତୁ ଭକ୍ତଦାନେ ବିଭବ ପ୍ରଚୁର ।୩।

ବାହାରିଲେ ସୀମନ୍ତିନୀ ହୋଇ ଡକାଡକି
କେ ଆସିଲା ଦେଖ ଦେଖ,କେ ରହିଲା ବାକି,
ଝେମା ଆସିଲା କି ନାହିଁ,
ନେତ କେତେକରି କହିଥିଲା ଯିବା ପାଇଁ ।୪।

ସେ ସାଇର ଖୁଡ଼ୀ, ଆଉ ସେ ଘର ମାଉସୀ
ସେ ଅପା ଆସିଛି ଅବା ରହିଗଲା ରୁଷି;
ଏହି କ୍ରମେ କରି ହୁରି
ବାହାରିଲେ ଚାପି ପଦେ ହିମ-ସିକ୍ତ ଧୂଳି ।୫।

ଶରତ୍ ନିଶାନ୍ତ, କୁହେଳିକା ଆବରଣ
ଦେଇଛି ପ୍ରକୃତି-ମୁଖେ ଶ୍ୱେତାବଗୁଣ୍ଠନ,
ନବବଧୂ ପ୍ରାୟ ଧରା,
ନତମୁଖେ ନିଶାଙ୍ଗନ କୋଣେ ଛିଡ଼ା ପରା ।୬।

ସ୍ୱପ୍ନରେଖା ସମ ଦୂର ବୃକ୍ଷରେଖା ଦିଶେ
ଶୀତଶାନ୍ତ ସିନ୍ଧୁ-ବାୟୁ କୁହେଳିରେ ମିଶେ,
ଦେହ ଥରାଉଁ ଶୀକରେ
ପିଲା ବେଳେ କନା ଗୁଡ଼ାଇଲେ ମାତା ଖରେ ।୭।

ପଥେ, କିଆବନ ଧାରେ କିଆଫୁଲ ବାସେ
କାହିଁ କେ କେ ନେଲେ ତୋଳି ଶିବେ ଦେବା ଆଶେ;
ପଥେ ପକ୍ୱଶାଳୀ ଗଂଧ
ନିଶା ଆବରଣ ଭେଦି ଆସେ ମନ୍ଦ ମନ୍ଦ ।୮।

ଟାଣ ଭୂମେ ରାଣ ଦେଲା ପରି ଯା ବାଛନ୍ତା
ସେ ବଳା ପାହୁଡ଼େ ବାଲି ହୋଇଲା ଅହନ୍ତା;
ପଦ ପଶି ବାଲୁକାରେ
ଲଭିଲେ ସେ ନିତମ୍ବିନୀ କ୍ଳାନ୍ତି ଚାଲିବାରେ ।୯।

ପିନ୍ଧିଛନ୍ତି ପେଡ଼ିଲୁଗା କାଢ଼ି ଯତନରେ
ମନ୍ଦ ମେଥି ଗନ୍ଧ ଭାସିଯାଏ ପବନରେ,
ଯାଁକ ସରିଛି ବୟସ,
ସେ ଖାଲି ଭୂଷଣେ ବାସେ ଦିଶନ୍ତି ନୀରସ ।୧୦।

ଢେମା, ନବବଧୂ,ଢେମାଶାଶୂ, ବଧୂ-ଭାଇ
ସଙ୍ଗେ ଭଗିନୀର ଦୁଇ ଶିଶୁଙ୍କୁ ଗୋଟାଇ
ମେଣ୍ଢେ ଏଣେତେଣେ ରହି
ଚାଲିଥାନ୍ତି ଶୁଣି କଥା, ଅବା କଥା କହି ।୧୧।

ପୁରୁଷେ ଚାଲନ୍ତି ଆଗେ ପଛେ ସୀମନ୍ତିନୀ
ଦୂରେ ପଡ଼ିଯାନ୍ତି ସଦା ଗୁରୁ ନିତମ୍ବିନୀ,
ଢେମା କିନ୍ତୁ ଆଗେ ଥାଇ,
ପୁରୁଷଙ୍କ ସବା ପଛେ ଥାଏ ବଧୂ-ଭାଇ ।୧୨।

ବେଳେବେଳେ ରହିଯାଏ ଅଳ୍ପ ବ୍ୟବଧାନ
ଢେମା ଅଙ୍ଗ-ଗନ୍ଧ ବନ୍ଧୁ କରନ୍ତି ଆଘ୍ରାଣ
କର ଧରିବା ମାନସ,
ଜନମେଳେ ନ ହୁଏ ସେ ବିଷମ ସାହସ ।୧୩।

ଦିନ ହେଲା କ୍ରମେ, ରବି-ଦୀପିତ ଧରଣୀ
ଉତମେ ଦିଶିଲା ଏବେ ଗମନ ସରଣୀ,
ଚାଲିଅଛନ୍ତି ଅଙ୍ଗନା,
ଏ ସମୟେ ଶୁଭେ 'ଏଇ ଆସିଗଲେ ନନା' ।୧୪।

ପୁରୋହିତ କଥାମତେ, ମିଶିଲେ ସଙ୍ଗତେ
ସର୍ବେ ମିଳି ଏକମୁଖେ ଚାଲିଥାନ୍ତି ପଥେ
ଖାଲି ଦଳିଆଣୀ-ଭାଇ,
କେଜାଣି କାହିଁକି ବାରମ୍ବାର ପଛେ ଚାହିଁ ।୧୫।

ଆଲୋକ ହେବାରୁ ହେମା ପଛେ ରହେ ଜାଣି
ଯେତେ ପଛେ ଯାଏ, ସେତେ ବନ୍ଧୁ ଚିତ୍ତ ଟାଣି,
ଯଦି ଜାଣିଥାନ୍ତା ବାରେ;
ଛିଣ୍ଡିଯିବ ପ୍ରୀତିଡୋର ଏଇ ଟାଣିବାରେ ।୧୬।

କେବେ କେବେ ମିଶେ ନେତ୍ର କ୍ଷଣକ ଲାଗିରେ
ମିଶିଲେ ଚଞ୍ଚଳେ ହେମା ଚାହେଁ ସଙ୍ଗିନୀରେ,
ଏତେ ଜନ ମେଳେ କାହିଁ
ପ୍ରଥମ ପ୍ରଣୟ ଭୀରୁ ପ୍ରିୟେ ପାରେ ଚାହିଁ ? ।୧୭।

ପଲ୍ଲୀକୋଳେ ଶିଖିବ ସେ କାହୁଁ ଆଖି-ଲୀଳା
କଟାକ୍ଷେ ଦେଖାନ୍ତି ରାଗ କେସନେ ଛଇଳା,
ଲାଜେ ପୋତି ମୁଖ ଚାଲେ,
ବୃଥା ତା' ଆସିବା ବୋଲି ବଧୂ-ଭାଇ ଭାଳେ ।୧୮।

ଭାବିଥିଲେ ଯୁବା ଏହି ଦେବ-ଅଭିସାରେ
କହିଥାନ୍ତେ ପ୍ରାଣକଥା ଏକାନ୍ତେ ହେମାରେ,
ଭାଂଗି ଯାଉଅଛି ଆଶା,
ଅସଲ ହେଳକୁ ଯାହା କରୁଛି ହତାଶା ।୧୯।

ପ୍ରଥମ ପୀରତି ସେ ତ ଭଂଗୁର ଅତ୍ୟନ୍ତ
କ୍ଷଣ-ଅନପେକ୍ଷ ଘନ-ପ୍ରୀତି କରେ ଅନ୍ତ
ହେମା ନ ଚାହିଁବା ଦେଖି
ଚପଳ ସେ ଯୁବା ଭାବୁଥାନ୍ତି—ପ୍ରୀତି ଏ'କି ! ।୨୦।

ବିରକ୍ତିରେ ପୂରିଆସୁଥାଇ ତା' ଅନ୍ତର
ରୂପଗର୍ବେ ଅବା କରୁନାହିଁ ସେ ଖାତର,
ଛି ଛି, କି ପ୍ରୀତି ଯା' ସହ !
ଏକାଳେ ସହସା ଘୁଞ୍ଚେ ବିରାଗ ଦୁଃସହ ।୨୧।

ବାରମ୍ବାର ଚାହିଁ ପଛେ ବଧୂ-ଭାଇ ଆଖି
ଆଉ ଏକ ରୂପବନ୍ତ ମୁଖେ ଲାଗେ ଚାଖି,
ହେମାଠାରୁ କିଛି ସାନ,
ବୟସ ଏଗାର ବାର ହେବ ଅନୁମାନ ।୨୨।

ପ୍ରଥମେ ଦିଶିଲା ତାଙ୍କ ନେତ୍ରେ ହେମା ପରି
ଘୁଞ୍ଚେ ଭ୍ରମ ବାରମ୍ବାର ଚାହୁଁ ଭଲ କରି
ହେମା ଅବା, ହେବ ଆନ
ଆଉ କେ ସୁନ୍ଦର ଏତେ !—କଲେ ସେ ଧିଆନ ।୨୩।

ଫୁଟିଆସୁଥିବା ପୁଷ୍ପ କଳିକା ପରି ସେ
ସଦ୍ୟ ପୁଟ-ଚ୍ୟୁତ ସ୍ନିଗ୍ଧ ମୁକ୍ତା ପରି ଦିଶେ,
କେବେ ଦେଖି ସେ ନ ଥିଲେ
ପାଇଲେ ସେ ନୂଆ ରୂପ-ଚମକ ପହିଲେ ।୨୪।

ବାରମ୍ବାର ଚାହିଁ ସେହୁ ଦେଖିଲେ କିଶୋରୀ
ତାଙ୍କ ଆଡ଼େ ଢାଳେ ନେତ୍ର ଥରେ ଥରେ ଚୋରି
ସଦ୍ୟ ମୁକ୍ତ ପିଂଜରାରୁ
ପକ୍ଷୀ ପରି ଚକିତ ସେ ଚାହୁଁଥାଇ, ଭୀରୁ ।୨୫।

ପାଶେ ଡାକି ପୁରୋହିତେ ପଚାରନ୍ତି, ''ନନା !
କହିବ କି କିଏ ସେଇ ସୁନ୍ଦରୀ ନବୀନା ?''
ପୁରୋହିତ ହସି କହେ,
''ତୁମରି ସେ ପରା''—ତହୁଁ ନୀରବିତ ରହେ ।୨୬।

''ନାହିଁ, ନାହିଁ, କହ ସତ,'' କହେ ବଧୂ-ଭାଇ
ପୁରୋହିତ କହେ ତାଙ୍କୁ ଟିକେ ଦୂରେ ରାଇ
''ନାମ କନକ ତାହାର,
ତମକୁ ସଁପିବେ ବଡ଼ ଇଚ୍ଛା ତା' ମାତାର ।୨୭।

''ଦଳାଇଙ୍କ ଜ୍ଞାତି ସେ ତ ସଂବଂଧ ନିକଟ
ବିଶାଇଙ୍କ କନ୍ୟା, ସବୁ କୁଶଳ ନିପଟ
ଦେଖିବାର କାଲୁ ଚକ୍ଷେ
ତୁମ୍ଭଙ୍କୁ କଲେଣି ଆଶା ଜନନୀ ପ୍ରତ୍ୟକ୍ଷେ ।୨୮।

''କହିବାରୁ ମତେ, କହିଥିଲି ନ ଦେଖିଲେ
ବିଭା ହେବା ଲାଗି ସେ କି ମଙ୍ଗିବେ ହେ ତିଳେ,
ନୂଆ ପାଠୁଆ ପରା ସେ;
କନକ ଆସିଛି ଖାଲି ଦେଖାହେବା ଆଶେ ।୨୯।

'' ସେ ସାହିରେ ଘରେ ତାଙ୍କ, ନବବଧୂ ପରି
ଘରେ ତ ରହିଛି, ତାକୁ ଦେଖନ୍ତ କିପରି ?
ଭଲ ସକଳ ବିଷୟ,
ତୁମକୁ ଯୋଗ୍ୟ ସେ ଏକା ହୋଇଲେ ସମୟ'' ।୩୦।

''ସେ ଜାଣେ କି ?'' ପଚାରନ୍ତେ, କହେ ପୁରୋହିତ
''ନା' ନା ସେ ଜାଣିବ କାହୁଁ ! ଜନନୀ ସହିତ
ଦିଅଁ ଦେଖିବାର ପାଇଁ
ଆସିଛି ସେ ମାତା ସାଥେ କୁତୂହଳେ ଧାଇଁ'' ।୩୧।

ଗୁନ୍ଥା-ହାର ମିଳେ ଯଦି ଫୁଲ ତୋଳି ଯାଉଁ
କାହିଁକି ରସିକ କଷ୍ଟ ପଡ଼ି ଯିବେ ଆଉ ?
ବଧୂ-ଭାଇ ସେହିପରି
ଅଯାଚିତ-ଲବ୍ଧ ଦ୍ରବ୍ୟେ ଚାହେଁ ଭଲକରି ।୩୨।

ପୁଣି, ଅଧିକାର ଦ୍ରବ୍ୟେ ଦିଏ ସ୍ନେହ ଆଣି
ହାତେ ଥିବା ହାତେ ନ ଥିବାଠୁଁ ବଡ଼ ଜାଣି,
ଥାଉ କାହିଁ କେତେ ମଣି,
ହାତେ ଥିବା ଅପଦାର୍ଥ ତା'ଠୁଁ ସ୍ନେହେ ଗଣି ।୩୩।

ହେମାର ପ୍ରଣୟ ସେ ତ ଦୁର୍ଗମ ସମ୍ପଦ
କି ଅଧିକ ଲାଭେ ଅବା ଧରି ତା'ର ପଦ ?
ଗର୍ବ ରୂପ ଘେନି ତା'ର
ତେଣୁ ବୋଧେ ନେତ୍ର ନାହିଁ ଢାଳେ ଏକବାର ! ।୩୪।

ନା' ନା' ସେ ପଥରେ ଆଉ ନ ଦେବ ସେ ପାଦ
ଲାଭ ଅଧିକରେ ଖାଲି ଦୁଃଖ ଅପବାଦ,
କିବା ଅଧିକ ଦେବ ସେ,
କନକ ଅଧିକ ହେବ ଲାବଣ୍ୟ-ନିକଷେ ।୩୫।

ଉଷାଗମେ ଗୃହ-ଦୀପ କ୍ରମଶଃ ମଳିନ
ହେଲା ପରି ହେମା ଛବି ହୁଏ କ୍ରମେ ଲୀନ,
ଯୁବା କ୍ଷୁବ୍ଧ ହୃଦ-ପଟେ,
କେବେ ବା ସ୍ମୃତିର ତେଜେ ଥରେ ଜଳିଉଠେ । ।୩୬।

ପଡ଼ି ଦ୍ୱନ୍ଦେ ଚାହିଁଲା ସେ ପଛେ ପୁଣି ଥରେ
ଦେଖିଲା ଚାହିଁଛି ହେମା ଏକାନ୍ତ ଲୟରେ,
ମୁଖ ଦିଶେ ଲାଲ ଲାଲ
ସ୍ୱର୍ଣ୍ଣ ଆବରଣେ କେବା ଜାଳିଛି ମଶାଲ ।୩୭।

ଚାହିଁ ନ ପାରିଲା ଯୁବା, ଫେରାଇଲା ନେତ୍ର
ଲାଗିଲା କେ ପ୍ରହାରିଲା ପରି ଅଂଗେ ବେତ୍ର ।
କିନ୍ତୁ ନ ମାନି ତାହାରେ
ଭାବିଲା ସେ 'ଆଉ ମାନିବିନି ସେ ଚାହାଁରେ' ।୩୮।

ବଧୂ-ଭାଇ ସଙ୍ଗେ ହସ୍ତବନ୍ଧା କନକର
ସୀମନ୍ତିନୀ ମେଳେ ଲଭିଗଲାଣି ପ୍ରସର,
କୁହାକୁହି ତୁନି ତୁନି,
'ଆଚ୍ଛା ହେବ !'—ହେମା ତାହା ମଉନରେ ଶୁଣି ।୩୯।

ଏଣେ ଦେଖିଲା ସେ ବଧୂ-ଭାଇ ବାରମ୍ବାର
କନକକୁ ନିରିଖିଣ ପଛେ ଚାହିଁବାର,
ଝଞ୍ଜା ବୋହିଲା ବକ୍ଷରେ,
କୋଟି ସୂଚୀ ବିଦ୍ଧ ହେଲା ପରି ମସ୍ତକରେ ।୪୦।

ପଚାରିଲେ କଥା କେହି,'ନାହିଁ''ହଇ' କରେ
ମୌନ କ୍ରୋଧ ଅଭିମାନେ ସ୍ନାୟୁ-ଗ୍ରାମ ଥରେ ।
କେବେ ନିଜେ ବା ଧିକ୍କାରି,
ଯନ୍ତ୍ର ପରି ଖାଲି ପଥ ଚାଲଇ ବିଚାରୀ ।୪୧।

ଏ କାଳେ ଶୁଣିଲା ହେମା ଡାକୁଛନ୍ତି ଶାଶୁ,
କାନ୍ଦୁଛି ଗମନ-ଶ୍ରମେ ଅପା ସାନ ଶିଶୁ ।
ଧରିବାକୁ ଅନୁରୋଧ,
କାଖେ ଧରି କିଛି କାଳ କରିବାକୁ ବୋଧ ।୪୨।

ହେମା ଶୁଣି ନ ଶୁଣିଲା ପରିରେ ଚାଲିଲା
ତା' ଚିତ୍ତ ସେକାଳେ ନଦୀ ଉନ୍ମତ୍ତ-ସଲିଳା,
ନିଜେ ଘୂରେ ଭଉଁରିରେ,
ସେ କାହିଁ ଆଶ୍ରୟ ଦେବ ଆନେ ନିଜ ତୀରେ ? ।୪୩।

ସଙ୍ଗିନୀ କେ ଦୟା ବହି କହିଲା ଦୂରରୁ
''ହାଲିଆ ତ ନିଜେ ହେମା, ପିଲା ଏତେ ଗରୁ,
ଯାକୁ ଧରିବ କିପରି ?
ମୁହଁ ଧରେ''- କହି, କାଖେ ଧରେ ଟେକିକରି ।୪୪।

କ୍ରମେ ଏକେ ଏକେ ଆସି ପହଞ୍ଚିଲେ ସ୍ଥାନେ
ଭରି ପୁରୋହିତ-ଥାଳି କ୍ଷୁଦ୍ର କ୍ଷୁଦ୍ର ଦାନେ
କଲେ ଦେବ ଦରଶନ;
ଏକା ହେମା ଛଡ଼ା ସର୍ବେ ପ୍ରସନ୍ନ ବଦନ ।୪୫।

ଦେବ-ଦରଶନ ଆଶେ ମନ୍ଦିରେ ସକଳେ
ଏକାବେଳେ ଯାଉଁ ପଶି ଗ୍ରାମ୍ୟ କୁତୂହଳେ,
ପୁରୋହିତେ ଦେଇ ବାଧା
ଦଳେ ଦଳେ ନେଇ କଲେ ଦର୍ଶନ-ସୁବିଧା ।୪୬।

ବୃଦ୍ଧା, ମଧ୍ୟା ଗଲେ ଆଗେ ପଛେ ସାନ ଆଦି
ମଣ୍ଡପର ଏକ କୋଣେ ଠିଆ ମେଣ୍ଟ ବାନ୍ଧି,
ହେମା ସବା ପଛେ ଛିଡ଼ା
ନେଇଅଛି ଲୋକ-ଲୀଳା ଅଭିମାନ-ବ୍ରୀଡ଼ା ।୪୭।

ଥାଇ ପଛେ ଦେଖିଲା ସେ, କେଜାଣି କିପରି
କନକ ହୋଇଛି ଛିଡ଼ା ନବବଧୂ ପରି
ବଧୂ-ଭାଇ ବାମ ପାଶେ
ଧୀରେ ଯୁବା ହାତ ଉଠାଇଲା କିବା ଆସେ ! ।୪୮।

ଉଠାଇବା-ହାତ ଧୀରେ କିଶୋର ନୁଆଇଁ
ରଖେ କନକର କାନ୍ଧେ ଏଣେତେଣେ ଚାହିଁ;
ଦେଖି ପଶ୍ଚାତେ ହେମାରେ,
କହେ ହସି, ''ଠିଆ ଅଛ କିପାଁ ପଛୁଟାରେ ?'' ।୪୯।

ଏକାଳେ କେତେକ ସୀମନ୍ତିନୀ ଲେଉଟିବା
ଦେଖି ହାତ କାଢିନେଲା ଚମକିତେ ଯୁବା;
ଥାଏ ଛିଡ଼ା କିନ୍ତୁ ପାଶେ
ନ ଚାହିଁ କନକେ, ତାକୁ କିଛି ଧୀରେ ଭାଷେ ।୫୦।

କ୍ରମେ ପରେ ଆସି ଅନ୍ୟେ, ଦୁହିଁଙ୍କୁ ଏକତ୍ର
ଦେଖି କେ ରହସ୍ୟେ ଫିଙ୍ଗିଦେଲା ବେଲପତ୍ର;
ଦେଲେ ତାଳି ମାରି ଆନେ,
କହିଲେ କେ, ''ଆଚ୍ଛା ଦୁହେଁ ଦୁହିଁଙ୍କୁ ସମାନେ'' ।୫୧।

ଲାଜେ ଦୁହେଁ ଛଡ଼ାଛଡ଼ି ହୋଇଗଲେ କ୍ଷଣେ
ଜନକ ଜନନୀ ପାଶେ, ଯୁବା ଦରଶନେ;
କ୍ଷେମା ପଛୁ ଦେଖୁଥାଇ,
ନିଖିଳ ତା' କଳେବର ସ୍ୱେଦେ ଅବଗାହି ।୫୨।

ଦେବ-ଦରଶନେ ଇଚ୍ଛା ନାହିଁ ଥିଲା ତାର
ତାଙ୍କୁଁ ପୁରୋହିତେ କରି ଚରଣ ସଞ୍ଚାର
ଗମ୍ଭୀରାକୁ ଗଲା ଧୀରେ,
ନୁଆଁଇଲା ଶିର ଦେବେ କେବଳ ବିଧିରେ ।୫୩।

ଯେବେ ସେ ଫେରିଲା ଦେଖେ ପ୍ରସ୍ତୁତ ସକଳେ,
ନ ହେଉଣୁ ଖରା ଫେରିଯିବେ ଘରେ ଖରେ;
କିନ୍ତୁ ତାର ଉଚ୍ଚାଟନ
ପାଇଁ ଆନ ପରି ଘରେ କାହିଁ ଆୟୋଜନ ? ।୫୪।

ଘରେ, ବନେ, ପଥେ ଯହିଁ ଥାଉ ସେ ବରାକୀ
କୋଟି କୋଟି ଜନମେଳେ ଏକାନ୍ତ ଏକାକୀ;
ସାଥୀ କାହିଁ କେହି ତା'ର,
ତା' ଜୀବନ ଖାଲି ଦୀର୍ଘ-ବ୍ୟର୍ଥ ବଞ୍ଚିବାର ।୫୫।

ହୋଇଥିଲେ ଏକା, କାହିଁ ବିଳପି ହୃଦୟ
କରି ଲଘୁ, କରିଥାନ୍ତା ଆଶ୍ୱାସନାମୟ,
ଜନମେଳେ ସେ ସୁଯୋଗ,
ନାହିଁ; ପୁଣି ନାହିଁ ଏଣେ ଭାଗ୍ୟେ ସଙ୍ଗଭୋଗ ।୫୬।

ମୂର୍ତ୍ତିମତୀ ଅଭିଶାପ ପରି ସେ ଚଳଇ
ଆନ-ଅନୁଯାୟୀ ଚାଲୁଥାଇ ଅବା ରହି,
ନାହିଁ ସ୍ୱତନ୍ତ୍ର ବିଚାର
ଆଗ ପଛ ଯିବା, ନାହିଁ ଯିବା ସମ ତା'ର ।୫୭।

ଅହଲ୍ୟା ପରିରେ ହୋଇଥିଲେ ସେ ପାଷାଣୀ
ଅନ୍ୟେ ଦେଖି ଶୁଣି ବୁକୁ ନ ହୁଅନ୍ତା ହାଣି !
ଦୁଃଖେ ସେତେ କଷ୍ଟ ନାହିଁ,
ସୁଖ-ମେଳେ ଦୁଃଖ-ହୃଦ ସିନା ବ୍ୟଥା ପାଇ ।୫୮।

ପଠାଇଲେ, ଫେରୁଁ ଲୋକସାଥେ କନକରେ
କନକ-ଜନନୀ, ପାଖ-ଗ୍ରାମେ ମାମୁଘରେ,
ଶୂନ୍ୟ ମନେ ବଧୂ-ଭାଇ
ବ୍ୟଥିତ ହୋଇଲେ କିଛି କାଳ, ପଛେ ଚାହିଁ ।୫୯।

ଫେରାଇବା ଆଶେ ଚିତ୍ତ ଯୁବା କି ବିଚାରି
ପୁଣି ଯାଇ ହେମା ପାଶେ ସଧୀରେ ପଚାରି
''ହୋଇଗଲଣି ହାଲିଆ,
କାନ୍ଧରେ ବସାନ୍ତି ସିନା ହେଲେ ନିଛାଟିଆ'' ।୬୦।

ଜଳି କ୍ରୋଧେ, ହେମା ଚଳିଯାଏ ତ୍ୱରା ଆଗେ
ପାଦ-ବାଲି ପରି ଫିଙ୍ଗି ଯୁବା ଅନୁରାଗେ;
ପଛେ ନ ଚାହିଁ କାହାରେ,
ଆଖି ରଖି ତଳେ, ଚିତ୍ତ ରଖି ନିଜଠାରେ ।୬୧।

ଏକାଳେ ଶୁଣିଲା ପୁଣି ଶାଶୁ ଡାକିବାର
''ଧର ବୋହୂ, ପିଲାଟା ତ ବସେ ବାରମ୍ବାର,
ପନ୍ତାବାଲିରେ ହାଲିଆ
ତା' ଲାଗି ମୁଁ କେତେ ଆଉ ହେବି ଠିଆ ଠିଆ ?'' ।୬୨।

ଚକିତେ ସେ ଫେରି ତୁରିତରେ ଶିଶୁ ଧରେ
ବିନା ବାକ୍ୟେ କୋଳେ ଜାକେ ପରମ ଆଦରେ ।
ଧରୁଁ ଭାବୁଥାଇ ମନେ,
''ଛାଡ଼ି ଯାକୁ ତା' ପାଖେ ମୁଁ ଗଲି କି କୁକ୍ଷଣେ !'' ।୬୩।

ସ୍ନେହେ ବାଳକରେ ପଚାରଇ ସେ ଆଉଁଶି
''ହାଲିଆ କି ହୋଇଯାନ୍ତି ଏଇ ବାଟ ଆସି ?''
କହି, କାଖେ ଟେକି ଧରେ
ଫିଙ୍ଗି ଚିତ୍ତୁ ଆଉ ସ୍ନେହ ସେହି ସଙ୍ଗତରେ ।୬୪।

## ଶେଷ ପର୍ବ

ପ୍ରଥମ ପ୍ରଣୟ ହେଉଁ ବିଷମୟ
ରିକ୍ତ ହେଲା ଚିତ୍ତ-ମନ୍ଦିର
ତିକ୍ତ ହେଲା ମନ, ଚିତ୍ତ ନିମଗନ
ପଦାଘାତେ ପୂର୍ବ ସଙ୍ଗୀର,
ସ୍ୱପ୍ନ ଢେମାର
ଚୂନା କଲା ଭାଗ୍ୟ-କମାର ।୧।

ନିଜ ବିନା ଆନ ସେ ପ୍ରୀତି ଭିଆଣ
ଭାଗ୍ୟେ କେହି ଜାଣି ନ ଥିଲେ
କେମନ୍ତେ ତରୁଣ କରି ରାଗାରୁଣ
ପଛେ ହୃଦ ଦୁଃଖେ ମଛିଲେ,
ପ୍ରୀତି ଚପଳ,
କଲା ସବୁ କେନ୍ହେ ବିକଳ ।୨।

ପ୍ରୀତି-ଭିକ୍ଷା କରି ବୃଥା ଯିବା ଫେରି
ଅପମାନ ଘୋର ବିଧିରେ
ପାଇ ପ୍ରୀତି-ଆଶା ଶେଷରେ ନିରାଶା,
ବୁଡ଼ିବା ସେ ଲାଜ-ନଦୀରେ,
ବନ୍ଧୁ କଲେ ଯା'
ଢେମା ଖାଲି ଜାଣେ ସେ ଲଜ୍ଜା ।୩।

ଫେରିବା ସନ୍ଧ୍ୟାରେ ଅଗଣା ଅନ୍ଧାରେ
ହେଲା ନାହିଁ ଗନ୍ଧ ସରସେ,
ଭାଉଜ-ଭାଇ କି ଖୋଇବା ପାଇଁକି
ଡାକୁଁ ଉଠେ ଢେମା ବିରସେ,
ଥୋଇ ଭୋଜନ
କଲା ଦୂରେ ଅଶ୍ରୁ ବର୍ଜନ ।୪।

ସେହି ନୀର ସହ ବ୍ୟଥା ସେ ଦୁଃସହ
ହୃଦୟରୁ ଦେଲା ନିଗାଡ଼ି,

ଦେଲା ବିସର୍ଜନ ସବୁ ସେ ସ୍ୱପନ
ବିଧାତାରେ ଭାବି ଭଗାରି,
ଧରି କବାଟେ
ଦେଖେ, ଗଲେ ବନ୍ଧୁ ପ୍ରଭାତେ ।୫।

ପ୍ରଥମ ବିରହ ତଥାପି ଦୁଃସହ
ହେଲା, ଭାଙ୍ଗି ଟାଣ ଢେମାର
ମନ୍ଦ ପ୍ରିୟ ଲାଗି ମିଶେ ବନ୍ଧ ଭାଙ୍ଗି
ଢାଡ କଲା ନେତ୍ରେ ଜୁଆର,
ଅତି କଷଣେ
ଆଣିଲା ଚିତ୍ତରେ ଶାସନେ ।୬।

ହେଉଁ ଦିନ ଗତ କ୍ରମଶଃ ସଂଯତ
କରି ଚିତ୍ତବୃତ୍ତି ନିଜର,
ଖାଲି ବକ ପରି ନିଜ ଭାଗ୍ୟ ଧରି
ନିଜ ବାଟେ ଦେଲା ନଜର;
ବନ୍ୟା ହୃଦୟେ
ହେଲା କ୍ଷୀଣ କ୍ରମେ ସମୟେ ।୭।

ଏଣେ ଭ୍ରାତୃଜାୟା ଅବମାନି ମାୟା,
ଦେଖି ପୁଣି ଭରା-ଲାବଣ୍ୟ,
କହିଲେ ସ୍ୱାମୀରେ ଦିନେ,ରାତ୍ରେ ଧୀରେ
''ଭଉଣୀକି ରଖ ଅରଣ୍ୟେ;
ରହ ସ୍ଥିର ଯେ,
ଜାଣ ନା ସେ ଅଶ୍ରୁ ବରଜେ !'' ।୮।

''ପୋଡ଼ିଗଲା ଝାଇଁ ରହିଲେ ସେ କାହିଁ
ଅଜଣା ବଞ୍ଚିବା ମରିବା,
ତା' ଲାଗି କି ଆଶେ ଯୁବତୀଟି ଭାସେ
ଭାବୁନ ତା' ଦିନ-ସରିବା,
କାଟି ବାଟି କି
ଥିବ ଧରି ଏହି ମାଟିକି ?'' ।୯।

"କାମିନୀ ଜୀବନ କାଚ ଦରପଣ
ପ୍ରୀତି-ପାରା-ପୁଟ ଲୋଡ଼ଇ,
ନ ହେଲେ ତ ତହିଁ ବିମ୍ବ ନ ପଡ଼ଇ
ନିଜ-ରୂପେ ନିଜେ ସଢ଼ଇ,
ପ୍ରୀତି-ପଟଳ
ଖଞ୍ଜାଅଛି ଯଦି ଅକଲ ।୧୦।

"ଧରିବାକୁ କର ତା'ର କି ହେ ବର
ନ ମିଳିବେ ରାଜ୍ୟେ ଯୁବତେ,
କେଉଁ ସେ ଗରାଖୀ ପୁରୁଷର ଆଖି
ନ ପୂରିବ ଏହି ପୁରଟେ,
କର ଯୋଗାଡ଼
ବୁଝ ଦୁଃଖ ତା'ର ପ୍ରଗାଢ଼" ।୧୧।

ଅନୁଭବୀ ଭାଇ ସେହି ଦିନୁ ରାଇ
ଅନେକେ କହିଲେ ପ୍ରସ୍ତାବେ,
ସକଳେ ସମ୍ମତି ଦେଲେ ଚୁ ଚୁ ରଟି
କହିଲେ, 'ସେ କେଉଁ ହିସାବେ,
ଦୁଃଖ ଭୋଗିବ
ଗଡ଼ାଇବା କାଳ, ଅଣିବ" ।୧୨।

କଥା ଏକୁ ଏକେ ପ୍ରସରି ଅନେକେ
ଚାରିଆଡ଼େ ହେଲା ବିସ୍ତାର,
ଏକ ପକ୍ଷ ଯାଉଁ ଗୋଟି ଗୋଟି କାହୁଁ
ଆସିଲା ଜାତକ-ବିଚାର,
ପ୍ରାର୍ଥୀ ଭିତରେ
ବଧୂ-ଭାଇ ନାମ ପ୍ରସରେ ।୧୩।

ହେଲେ ଆଚମ୍ଭିତ କେତେ, ଉଲ୍ଲସିତ
ହେଲେ କେତେ, କରି ପ୍ରଶଂସା;
'ସେଇ ହେବ ଠିକ ୟାଠାରୁ ଅଧିକ
ପାଇବ ନ କର ଭରସା,

ସବୁ ଶୁଣି ତା'
ନ କରଇ ହେମା ଗଣିତା ।୧୪।

ଟିକାଏ ତ ଲୁଣ ବଳିଲେ ବ୍ୟଞ୍ଜନ
ତେଜେ ଯେହ୍ନେ ତା'ର ସୁଆଦ,
ଟିକେ ଅବହେଳା ଟିକେ ମୁଖ-ମୋଡ଼ା
ସାରିଦିଏ ପ୍ରୀତି-ମିଆଦ,
ହେମା ଆଘାତ
ପାଇ, ଧରେ ଆଉ ସେ-ବାଟ ? ।୧୫।

ଏ କାଳରେ ଭାଇ ଦଳିଆଣୀ ରାଇ
କହେ ''ଥାଉ ଆମ ବରାତ,
ପ୍ରଥମେ ହେମାର ବୁଝି ଅଂଗୀକାର
ବୁଝ ତା' ଶାଶୁର ସିଦ୍ଧାନ୍ତ,
ମତେ ତାଙ୍କର
ଚଳିବ ସିନା ଏ ସକଳ'' ।୧୬।

'ସତ' 'ସତ' କହି ତାକତର୍କେ ରହି
ବୁଝିଲେ ସେ ଶାଶୁ-ସମ୍ମତି
କହିଲେ ସେ ବୁଢ଼ୀ ଆଖିଜଳେ ବୁଡ଼ି
''ଇଥିରେ ମୋର କି ଆପତ୍ତି,
ସାରା ଜୀବନ
କି ଆଶେ ପାଇ ସେ କଷଣ ?'' ।୧୭।

''ଆମର କପାଳ ସିନା ହେଲା ପାଳ,
ସେ କିପାଁ ହୋଇବ ଦଗଧ
ଆଶା ତ ଗଲାଣି ଗଲା-କଥା ଜାଣି
ଅପେକ୍ଷାରେ କିସ ଲବଧ ?
ରହୁ ସୁଖରେ
ଜଳି ହେବ କିପାଁ ପାଖରେ ?'' ।୧୮।

କ୍ରମେ ପ୍ରସ୍ତାବନା ହେମା ପାଖେ ଜଣା
ହେଲା, କିନ୍ତୁ ସେ ନ ଉତ୍ତରେ,

ଶେଷେ ଭ୍ରାତୃଜାୟା ଦେଖି ନିଛାଟିଆ
ପଚାରିଲେ ଧରି ଓଠରେ
''ଧନ କହ ତ,
ଏ ବିଚାରେ ତୋର କି ମତ ?'' ।୧୯।

ଦରଦର ହୋଇ ନୀର ଗଲା ବୋହି
ନଇଁ କ୍ଷେମା ବଧୂ-କୋଳରେ
ଗଦଗଦେ ଭାଷେ ''କିପାଇଁ କି ଆଶେ
ପୂରାଅ ମତେ ଜଞ୍ଜାଳରେ ?
ଛାଡ଼ ସେ କଥା,
ଯିବ କି ସେଥିରେ ଅବସ୍ଥା ?'' ।୨୦।

''ସରିଗଲା ସିନା, ରାଇଜେ ତ ଜଣା
ଘରଣୀ ମୁଁ ଜଣେ ଲୋକର,
କାହା ଘରେ ଯାଇ ପେଟ-ଭାତ ପାଇଁ
ସ୍ତିରୀ ହେବି ପୁଣି ସୁଖର ?
ପୁଣି ବେଦୀରେ
ବସିବି କହ କି ବିଧିରେ ! ।୨୧।

''ଦୁଇଟି ଏ ଶିଶୁ ପୁଣି ବୁଢ଼ୀ ଶାଶୁ
ଏମାନେ ସମ୍ପିବି କାହାରେ,
ତିନୋଟି ପରାଣୀ ଆଶା ଜାଣି ଜାଣି
ଭାଙ୍ଗିବି କି ପଦ-ପ୍ରହାରେ ?
ଆନ ପଲଙ୍କେ
ବସି କି ବୋହି ଏ କଳଙ୍କେ ?' ।୨୨।

''ସିନା ଏ ଛାତିର ଦେଇନି ମୁଁ ଖିର
ଜନନୀ ତ ପିଲା ଦୁଇର,
ଯାଙ୍କୁ ଯିବି ଛାଡ଼ି, କିଏ ଦେବ କାଢ଼ି
ଅନାଥଙ୍କୁ ସର ଦହିର,
ତାଙ୍କ ଆତୁର
କିଏ ଶୁଣି ହେବ ଆକୁଳ ? ।୨୩।

''ଯାଇଛି ତ ଯାଉ          ସେ ଜୀବନ ଆଉ
ଲୋଡ଼ିବାରେ ନାହିଁ ସୁଯଶ,
ଯାଙ୍କରି ଧନ୍ଦାରେ          ଯାଙ୍କ ପରିଚାରେ
କଟିଯାଉ ପୋଡ଼ା ବୟସ;
ଶାଶୁ, ପିଲାଙ୍କ
ସୁଖ ହେଉ ମୋର ପଲଙ୍କ ।୨୪।

''କହ ଯା ନନାକୁ          ମୋତେ ମୋ ପିଲାଙ୍କୁ
ଛାଡ଼ି ଆସୁ ମୋର କୁଟୀରେ
ପାରିଲାଣି ବଡ଼          ବୋହିବ ଶଗଡ଼;
ଚଳିଯିବି କୁଟାକୁଟିରେ,
ଭାର ତମରି
ରହିବି କି ଚିର ପାମରୀ ?'' ।୨୫।

କହି ମନସ୍ୱିନୀ          ଉଠି ଝଟ୍‌କିନି
ଭାଉଜରେ ଛାଡ଼ି ତୁରିତେ
ଚାଲିଯାଇ ଆନ          ଘରେ ପଶି, ପ୍ରାଣ
ଭସାଇଲା ଅଶ୍ରୁ ସରିତେ,
ଯାଇ ପଛେ ତା'
କଲେ ବଧୂ କାନ୍ଦି ମମତା ।୨୬।

ଜେମାର ଉତ୍ତର          କ୍ରମଶଃ ପ୍ରସର
ହେଉଁ, ଜାଣୁ ଶାଶୁ ତାହାର,
ଧୀରେ ଯାଇ ଧରି          ପାଶେ କୋଳ କରି
ତେଜିଲେ ଲୋତକ-ନୀହାର,
''ବୋହୂ ମୋର ଲୋ''
ବୋଲି ବିଳପିଲେ ତରଳ ।୨୭।

''ଆହା ମୋ ରତନ,          ତୋର ବଧୂପଣ
ନ ସହିଲା ଯାହା ବିଧାତା,
ତତେ ପାଇ ପୁଣି          ନିତି ଲୁହ ବୁଣି
ହେଲି ମୁଁ ଏଡ଼େକ ଅନାଥା,

ବୋହୂ ନୋହୁ ରେ
ଝିଅ ନୋହୁ କିଏ କହୁ ରେ ?'' ।୨୮।

''ଏତେ ଦୁଃଖ ପାଇ ମୁହଁ ତୁ ଫୁଲାଇ
କହିନୁ ତ କେବେ ବଚନ,
ଜନନୀରୁ ବଳି ନିତି ସେବା କରି
ପ୍ରାଣେ କରୁ ସୁଧା ସେଚନ,
କେଉଁ ଶାଶୁ ସେ
ଧରେ ଛାତି ରକ୍ତ-ମାଉଁସେ । ।୨୯।

''କାହା ଘରେ ଯାଇ ବାସ-ଭୂଷା ନାଇ
ହୋଇଥାନ୍ତୁ ରାଣୀ ସଂସାରେ,
ମୋ ପାଖକୁ ଆସି ଅବସ୍ଥାରେ ଭାସି
ହେଲୁ ପୁଣି ଲୋକହସାରେ,
କ୍ରୂର ବିଧାତା
ତତେ ମତେ କିପାଁ ଯୋଡ଼ଁତା !'' ।୩୦।

ବିଳପିଲେ ସତୀ କାରୁଣ୍ୟରେ ଅତି
ବିଳପିଲା କ୍ଷେମା କରୁଣେ,
ବିଳପିଲେ ବଧୂ, ଆନ ଲୋକେ ବୋଧୁଁ
କାନ୍ଦିଲେ ଏ ଦୁଃଖ ଦାରୁଣେ,
କ୍ଷେମା ଲୋତକ
ପୋଛିଲେ ଥିଲେ ସେ ଯେତକ ।୩୧।

କ୍ଷେମା ଏହିପରି ହେଲା ଭାଗ୍ୟ ବରି
ଜନନୀ ସେ ବିନା-ପ୍ରସବେ,
କାମିନୀ ବୋଲାଇ ଜୀବନେ ନ ପାଇ
କେବେହେଁ କାମନା-ଉତ୍ସବେ,
ହେଲା ଘରଣୀ
ଗୃହ-ହୀନ ପଥବରଣି ।୩୨।

କ୍ରମେ ଶୋକାକୁଳେ ତନୁ କୂଳେ କୂଳେ
ଖସିଲା ଲାବଣ୍ୟ-ଜୁଆର,

ବ୍ୟର୍ଥରେ ଉନ୍ମୁଖୀ ବକ୍ଷ ଗଲା ଶୁଖି
ରଖି ଗର୍ଭେ ଶିଶୁ-ଆହାର,
ଗଣ୍ଡ-ଫଳକ
ଅଚୁମେ ଛାଡ଼ିଲା ଝଟକ ।୩୩।

କଟିଲା ଯା ପରେ କିଛି କାଳ; ଘରେ
ବିଲଧାନ ପଶୁ ପଉଷେ,
ତରୁଣ ଦଳାଇ ଢେମା ଯିବା ପାଇଁ
ଆୟୋଜନ କଲେ ବହୁଶେ,
ବିଭା କଥା ତ
ହୋଇଥିଲା ଲୁପ୍ତ ନିତାନ୍ତ ।୩୪।

ଦିନ ସ୍ଥିର କରି ଶଗଡ଼ରେ ଭରି
ଦେଲେ ପୁଆଣୀର ଦରବ,
ଶୂନ୍ୟ ଦେଉଳରେ ଦେବ ଆରତିରେ
ପରି ହେଉଥିଲା ଉତ୍ସବ,
ଶୂନ୍ୟ ଭବନେ
ଅଭିସାରେ ଢେମା ଗମନେ ।୩୫।

ଗ୍ରାମ ସୀମନ୍ତିନୀ ସ୍ନେହ-ମନ୍ଦାକିନୀ
ସମ ଲୁହଧାର ବୁହାଇ
ଦଳେ ଦଳେ ଆସି ମର୍ମ-କଥା ଭାଷି
ଢେମାରେ ତୁହାଇ ତୁହାଇ,
ବିଳପାଇଲେ
'ସତେ ଗଲୁ !' କାନ୍ଦି କହିଲେ ।୩୬।

ଶେଷ ଥର ପାଇଁ ଭ୍ରାତୃଜାୟା, ନାହିଁ
କଲେହେଁ, ଢେମାର ଚିକୁର
ପ୍ରଲେପି ତଇଲେ ବାନ୍ଧୁଥାନ୍ତି ଭିଡ଼େ
ଲୁହ ପଡ଼େ ଢେମା ବୁକୁର;
ନାହିଁ ସମ୍ଭାଳି
ଉଠେ ଢେମା ହାତ ଛିଁଚ୍ଛାରି ।୩୭।

''ଛି, ଛି, ଢେମାମଣି'' ସୀମନ୍ତିନୀ ଭଣି,
''ଯାଉଛ ଅପର ଗ୍ରାମରେ

ବେଶବାସ ଟିକେ ହେବନି, ସେ ଲୋକେ
ନିନ୍ଦା ଦେବେ ଆମ ନାମରେ !''
କେହି ଭାଷଇ
''କି କାର୍ଯ୍ୟେ ଆଉ ସେ ଆସଇ'' ।୩୮।

ହେଉଁ ସବୁ ସରି, ଏକ ଏକ କରି
ନେଲା ଢେମା ଶେଷ ବିଦାୟ,
ମିଳିତ-ରୋଦନ ଭସାଇ ସଦନ
ଫଟାଇଲା ସବୁ ହୃଦୟ,
ଗ୍ରାମବାସୀଏ
ଶୁଣି ତା' କାନ୍ଦିଲେ ସଭିଏଁ ।୩୯।

ଶେଷେ ନିଙ୍କେ ଭିଡ଼ି ଚଳେ ଢେମା ଛାଡ଼ି
ସୀମନ୍ତିନୀ କରବଂଧନ,
ଆଗେ ଚାଲେ ଶାଶୂ ପଛେ ଦୁଇ ଶିଶୁ
କରନ୍ତି ସକଳେ ରୋଦନ,
କିଏ ତିଆରେ
'କାନ୍ଦନା, ଝୁଣ୍ଟିବୁ ଦୁଆରେ' ।୪୦।

ଦୁଆରେ ଝୁଣ୍ଟିବା ପରି ହେଉ, କେବା
ନେଲା ଧରି ତାକୁ ଆଦରେ;
ଦେଖେ ସେ ତା' ଭାଇ, ଲୁହ କେହ୍ନେ ରହି
ବନ୍ୟା ସମ ଛୁଟେ ଭାବରେ,
ଭାଇ ଦଲାଇ
ନ ସହି ବିଳପି ପଳାଇ ।୪୧।

ଧରି କେଉଁ ମତେ ବିଳପି ସମସ୍ତେ
ବସାଇଲେ ଯାନେ ଢେମାରେ,
ଚଳୁଁ ଯାନ ଧୀରେ ସର୍ବେ ଆଖି-ନୀରେ
ଚଳିଲେ ସେ ଗ୍ରାମ-ସୀମାରେ,
ଛାଡ଼ି ଆସିଲେ,
ଆସି ପୁଣି ଶୋକେ ଭାସିଲେ ।୪୨।

ଶାଶୁଙ୍କ କୋଳରେ ରହି, ଆଖି-ନୀରେ
ତିନ୍ତାଇଲା ଢେମା ବସନ;

ଶାଶ୍ରୁ ବୋଧିବାରେ ପୋଛି ଲୁହ, ବାରେ
ଶେଷ ଥର ନେତ୍ର-କ୍ଷେପଣ,
କରି ଗ୍ରାମରେ
ପୁଣି କାନ୍ଦେ, ପୁଣି ସୁମରେ ।୪୩।

ପ୍ରବେଶୁଁ ଗଂଙ୍କାମେ କିନ୍ତୁ ସ୍ୱାମୀ-ଧାମେ,
ଦେଲା ପୋଛି ଲୁହ ନୟନୁ,
ଲଗାଇଲା ହାତ, କାଟିବାରେ ବାଟ
ଦାରିଦ୍ର୍ୟର ଦୁଃଖ-କଷଣୁ
କୁଟାବଟାରେ
ଚଳାଏ କଷ୍ଟେ ତା' ସଂସାରେ ।୪୪।

———

# ଭୂମିକା

ସାଧବଘରର ବୋହୂ ଓ ଝିଅମାନଙ୍କର କାରୁଣ୍ୟରସରଞ୍ଜିତ ଲୌକିକ କାହାଣୀ କେଉଁ ଓଡ଼ିଆର ଶୈଶବକୁ ମଥିତ ନକରିଛି ? ସାଧବର ସାତପୁଅ ବଣିଜ କରିବାକୁ ଅନନ୍ତ ସମୁଦ୍ରରେ ଜାହାଜ ଭସାଇଦିଅନ୍ତି । ସଦ୍ୟ ଗୃହାଗତା ସବା ସାନ ବୋହୂଟିର ବିରହ-ବିଧୁର ଅବ୍ୟକ୍ତ ମର୍ମବେଦନା କେହି ବୁଝି ମଧ ବୁଝନ୍ତି ନାହିଁ । ସେ ନଈକି ଗାଧୋଇବା ପାଇଁ ଯାଏ; କିନ୍ତୁ ମାଠିଆ ପାଣିରେ ଭସାଇଦେଇ କାହାପାଇଁ ଅନାଇ ରହେ ? ତାର ନାବିକ-ପ୍ରିୟ ଯେ ସେତେବେଳେ ଦୂରଦୂରାନ୍ତର କେଉଁ ଅଜଣା ଦେଶର କେଉଁ ଜନଗହଳ ଘାଟରେ ବାଣିଜ୍ୟବ୍ୟସ୍ତ !

'ତଅପୋଇ' ଗପରୁ, 'ଭ୍ରମରବର ପାଲା'ରୁ ଓ କେଉଁ କେଉଁ କାବ୍ୟକବିତାରୁ ଉତ୍କଳର ଇତିହାସ-ନିବଦ୍ଧ ସମୁଦ୍ର-ବାଣିଜ୍ୟର ପାରିବାରିକ ଦିଗର କରୁଣ ଛବି ମୋ ଚିତ୍ତକୁ ବାଲ୍ୟକାଳରୁ ସ୍ପର୍ଶ-ଚଞ୍ଚଳ କରିରଖିଥିଲା । ସେହି ରୂପକଥାର ନରନାରୀମାନଙ୍କୁ ନୂତନ ଓଡ଼ିଆଭାଷାରେ ନୂତନ ରୂପରେ ଉଜ୍ଜୀବିତ କରିବାର ଆସ୍ପର୍ଦ୍ଧାଫଳରେ ମୁଁ ପ୍ରାୟ ୧୬ବର୍ଷ ତଳେ, କଲେଜରେ ଛାତ୍ର ଥିଲା ସମୟରେ, ପ୍ରଥମେ ସାଧବଝିଅ କବିତାଟି ଲେଖିଥିଲି ଏବଂ 'ଉତ୍କଳସାହିତ୍ୟ'ରେ ତାହା ପ୍ରକାଶିତ ହେଲା ପରେ ତାହା ଅନେକ ପାଠକଙ୍କର ଚିତ୍ତ-ରଞ୍ଜନ ହେବାର ଜାଣି ବହୁ ଉତ୍ସାହିତ ହୋଇ ପରେ ପରେ 'ମାଲୁଣୀ' ଓ 'ସାଧବପୁଅ' ନାମକ ଦୁଇଟି କବିତା ଲେଖିଥିଲି । କିନ୍ତୁ ପରେ ପରେ ଭାଗ୍ୟଚକ୍ରର ଆବର୍ତ୍ତନ ଫଳରେ ଦୀର୍ଘ ଚଉଦବର୍ଷକାଳ ବିଳପନ୍ତୀ ସାଧବଝିଅର ଭାଗ୍ୟ କି ହେଲା, ମୁଁ ତା ପଚାରିବାକୁ ଅବସର ପାଇନି । ଏବେ କିନ୍ତୁ କବିର ନିଜ ସୃଷ୍ଟି ପ୍ରତି ସହଜାତ ମମତାଦ୍ୱାରା ଚାଳିତ ହୋଇ ଦୀର୍ଘ ବ୍ୟବଧାନ ପରେ ଏ କାବ୍ୟକୁ କୌଣସିମତେ ଶେଷକରି ସାଧବଝିଅ ଭାଗ୍ୟର ଗୋଟାଏ ନିଷ୍ପତ୍ତି କରିନେଇଛି ।

କାବ୍ୟର ଗଳ୍ପ ଓ ପରିକଳ୍ପନା ନୂତନ । କାବ୍ୟର କାଳ ବହୁ ପ୍ରାଚୀନ । ନାୟକ ନାୟିକାଙ୍କର ଜୀବନ-ଇତିହାସ ଅସ୍ପଷ୍ଟ । ଏସବୁ ଘେନି ଜୀବନ୍ତ ଓ ସରସ କାବ୍ୟ ଲେଖିବା ମୋ'ପରି ଅଧମପକ୍ଷରେ ଏକ ପରମ ଚେଷ୍ଟା ବୋଲିବାକୁ ହେବ । ଉତ୍ତମ କବିର କଲମରେ ଯାହା ଉତ୍କୃଷ୍ଟ ସଂଦେଶ ହୋଇଥାନ୍ତା, ମୋ ହାତରେ ତାହା କେବଳ ଛେନା-ଚିନିର ସମ୍ମିଶ୍ରଣ ମାତ୍ର । ତେବେ ଉତ୍କଳ-ସରସ୍ୱତୀଙ୍କ ଭୋଗଡାଲାରେ କେବଳ ନିଖୁରା ଲିଆ ଛଡ଼ା ଯେତେବେଳେ ଅଧିକାଂଶ ସମୟରେ ଅନ୍ୟ କିଛି ଯୋଗାଡ଼ କରାଯାଇପାରୁନି, ସେତେବେଳେ ମୋର ଛେନା-ଚିନି ପୂଜକମାନଙ୍କଦ୍ୱାରା ଅଗ୍ରାହ୍ୟ ହେବନାହିଁ ବୋଲି ମୋର ଆଶା । ଇତି ।

୧୯୪୬ ମାୟାଧର ମାନସିଂହ

## ସାଧବଝିଅ

[ ଏକ ]

ବିଜନ ବେଳା, ବିଜନ ବେଳା
କହୁନାହୁଁ, କାହିଁ ବୋଇତ ଗଲା,
ବୋଇତ ଗଲା !

ସଓଦାଗରର ସାନଝିଅ ମୁଁ,
ସାତଭାଇରେ
ଶୟନ ମୋହର ହଂସୁଲି ଶେଯେ,
ସ୍ନାହାନ ମୋହର ସୁବାସ-ନୀରେ ।

ସାତ ସାଧବର ସାତ ଝିଅ ସେ,
ଭାଉଜ ମୋର,
ଜଣକେ ଜଣକେ କନକଶିଖା,
ଜଣକୁ ଜଣକୁ କନକ-ପୁର ।

ସାତ ଭାଉଜର ସତର କଥା,
ମୋହ ପାଇଁକି
ଜଣେ କୁଁଚିଦେଲେ ପାଟପତନି
ଆରେକ ପଚାରେ ଇଚ୍ଛା କାହିଁକି ?

ସାତ ଭାଇଙ୍କର ସାତ ବୋଇତ
କେ ଦେଖିନାହିଁ ?
ମଣି-ମୁକୁତାରେ ବେପାର ଲୀଳା,
କେଉଁ ଦରିଆରେ ନ ପଡ଼େ ଛାଇ ?

ସାତ ଭାଇ ସାତ ରାଜ-କୁମର,
ଦେବତା ପରା
ଜଣେ ଆଣିଦେଲେ ବଉଦ ଶାଢ଼ି,
ଆରେକ ଯାଚଇ କନକ ଝରା ।

ବିଜନ ବେଳା, ବିଜନ ବେଳା,
କହିଲୁ ମୋହର କି ଦୁଃଖ ଥିଲା,
କି ଦୁଃଖ ଥିଲା !

[୨]

ହାଇରେ ହାଇ, ହାଇରେ ହାଇ,
ଯୁବା ସେ ଆସିଲେ ବୋଇତ ବାହି
ବୋଇତ ବାହି !

ଭାଇଙ୍କି ବନ୍ଦାଇ ଆସିଥିଲି ମୁଁ
ତୋହରି ତୀରେ
ଏଇଠାରେ ଛିଡ଼ା ହୋଇଥିଲେ ସେ,
ଦେଖି ଦୁଇ ପାଦ ଚଳିଲା କି ରେ ?

ବାଲିରେ ଲୁଚିଲା ମାଣିକ ମୁଦି,
କନକ-ବଳା,
ହାତରୁ ଖସିଲା ଫୁଲ-ହଳଦୀ,
ହାତରୁ ଖସିଲା ଚାଉଳ-ସରା ।

ଚାହିଁପାରିଲି କି ଭଲେ ସେ ମୁଖେ,
ଲାଜେ ମରିଲି,
ଚିବୁକ ମିଶିଲା ଉରଜେ ଆସି
ପଚାରିଲି ନିଜେ 'ଏ କି ଦେଖିଲି' ?

ହସିଲେ ଭାଉଜେ, ଚାହିଁଲେ ଭାଇ,
ରହିଲି ଠିଆ,
ବନ୍ଦାଣ ସରିଲା, ଚଳିଲେ ପୁରେ,
କେ କିପାଁ ବୁଝିବ ବାଳିକା-ହିଆ ?

ବିଦେଶୀ ଯୁବକ ଜାଣିବେ କିସ
ବାହିଲେ ତରୀ,
କାହିଁ ଗଲେ ବେଳା, କାହିଁ ଗଲେ ରେ
ତା ବିନେ କେସନେ ଜୀବନ ଧରି ?

ବିଜନ ବେଳା, ବିଜନ ବେଳା,
କହ କାହିଁ ଗଲା ବୋଇତବାଲା !
ବୋଇତବାଲା !

[୩]

କେଉଁ ଧନେ ସେ ଗୋ ବଣିକ ଯୁବା
କରେ ବେପାର ?
ନାରୀ-ବୁକୁ ଘେନି କି ତା' ବେବସା,
ଲୁଆସୁଣୀ ଲୁହେ ତା କାରବାର ?

ଯେ ଦେଶେ ଯାଏ ସେ, ମୋହ ସରି ଗୋ
ସେ ଦେଶେ ବିକି,
କୁଳଝିଅ ତାକୁ ଆପଣା ମନେ
ଆପଣା ହୃଦୟ ଦିଅଇ ବିକି ?

କାହୁଁ ଆସିଥିଲା ? ମୋ ହୃଦ ସାଥେ
କି ନେଲା ଏଥୁ ?
ଆକାଶେ, ପବନେ ଅଛ ଦେବତା
ଫେରାଇ ଆଣଁତ ଗମନ-ପଥୁ !

ଜୀବନେ ଏ କିସ ପରମାଦ ଗୋ,
ନ ଥିଲି ଜାଣି,
ହଂସୁଲି ଶେଯରେ ନ ଆସେ ନିଦ
ଆଖି ଆଗେ ଭାସେ ତାହାରି ଠାଣି !

ଏତେ ଲୋକ ମେଳେ ଜୀବନ, ଏକା
ଲାଗଇ ମତେ,
ତାହାରି ପରଶ ଖୋଜଇ ଦେହ
ଭୁଜ ତା' ମୋ ଦେହ ଭିଡ଼ଁତା ସତେ !

ଶୋଇବାକୁ ଗଲେ ଆରେକ ପାଇଁ
କରଇ ଥାନ,
ନ ଆସିଲା ସେ ତ, ଆସିଲାନି ରେ
ଏକା ଏକା ମୋର ଯାଉଛି ଦିନ ।

ହୋଇଛି ରଜନୀ, ଉଠିଛ ଚାଁଦ
ନାଚେ ଦରିଆ,
କାହା ପାଇଁ ମୁହିଁ ସାଧବଝିଅ
ଏକାକୀ ତୋ ତୀରେ ହୋଇଛି ଠିଆ ?

ଫେରିଯିବି ଘରେ ? କି ସୁଖ କହ
　　　　　　　　କନକପୁରେ ?
ମନର ମଣିଷ ନ ମିଳେ ଯଦି
ବୁକୁର ବେଦନା ରହେ ବୁକୁରେ ?

ସାତ ଭାଇ ମୋର ସେ ଦେଶେ ଯାଇ,
　　　　　　　　ସେଚ ମାଣିକ,
ଆଣିଲେ ମାନିଁତି ସାଧବ [illegible]ଙ୍କ
ଜାଣିଁତି କେସନେ ଶେଠ ବଣିକ ।

ସେ ମାଣିକ ସତେ ମିଳେ କାହାକୁ,
　　　　　　　　ମିଳେ ନାହିଁ ରେ,
କନକପୁରର ଚମକ ଦେଖି
ହୀରା-ନୀଳା ଦେଇ ତାକୁ ପାଇ ରେ ?

କେ ଅଛ ଦେବତା କହ ହେ କହ,
　　　　　　　　ପାଇବା ପଥ,
ଭୁଆସୁଣୀ ଯାହା ଦେବାର ଦେବ,
ରକତ ଦେଇ ମୁଁ ପାଳିବି ବ୍ରତ ।

ମୋ ପରି କି ଆଉ ତରୁଣୀ କେହି,
　　　　　　　　ପାଇଛି ତାକୁ ?
କିପରି ଲଭିଲା ? ଭୋଗେ କିପରି ?
କହିଲେ ଦେବି ଏ ଜୀବନଟାକୁ ।

ଆଉ କେ ଯୁବତୀ ଶୁଣେ କି ତାର,
　　　　　　　　ବଦନୁ କଥା ?
କିପରି ସେ ବାଣୀ ? ଅମିୟ ସେ କି ?
ଶୁଣି ଲୁଚିଯାଏ ପରାଣ-ବଥା ?

ଆଉ କେ ଯୁବତୀ ବାହୁରେ ତାର
　　　　　　　　ପଡ଼େ କି ଢ଼ଳି ?
କିପରି ସେ ସୁଖ ଜାଣିବି ନିକି ?
ଭାବିଲେ ହୃଦୟ ହୁଅଇ ଦଳି ।

ବିଜନ ବେଳା, ବିଜନ ବେଳା,
ସାଧବଝିଅର ଏ ଦୁଃଖ ହେଲା !
ମାଣିକ ଖଟରେ ବୋହିଲା ଲୁହ
କହୁନାହୁଁ କାହିଁ ବୋଇତ ଗଲା,
ବୋଇତ ଗଲା !

[ ଦୁଇ ]

ସେ ଆଖି ଦୁଇଟି ସମାନ ମାଣିକ କାହିଁ,
ଘାଟେ ଘାଟେ ମୋର ବୋଇତ ତାହାରି ପାଇଁ,
ଛାଡ଼ି ମୁଁ ଆସିଲି ସେ କେଉଁ ସାଗରକୂଳେ,
ସାଧବପୁଅ ମୁଁ ଦିନ କାଟେ ତାରେ ଧ୍ୟାୟି ।

ଅଳପେ ଚାହିଁଲା, ଲାଜେ ମୁଖ ଦେଲା ପୋତି
ନଖେ ମିଶାଇଲା ଗଳାହାର ମଣି ଜ୍ୟୋତି,
ପୁଣି ସେ ଚାହିଁଲା, ପୁଣି ମୁଁ ଚାହିଁଲି ଥରେ,
ହସି ଲାଜେ ପୁଣି ନୁଆଁଇଲା ନାସା-ମୋତି ।

ସେତିକି ଚାହିଁବା, ସେତିକି ମୋ ଦେଖାଦେଖି
ବୁକୁରେ ସେ ଛବି ଯାଇଛି ଗଭୀରେ ଲେଖି,
ଯାହା ଭାବେ ତା'ର କଥାହିଁ ପଡ଼ଇ ମନେ
ଯହିଁ ଚାହେଁ ସେଇ ନୟନ ଉଠଇ ରେଖି ।

ଟିକିଏ ଚାହିଁଲା, କେତେ ସେ କହିଲା କଥା,
ଥରେ ସେ ଅନାଇଁ କେତେ ଯେ ଦେଉନି ବ୍ୟଥା,
ଉଦାସୀ ସାଧବପୁଅ ମୁଁ, ମୋ ଆଖେ ନୀର,
ଭାବଇ ତା' ବିନୁ ଜୀବନେ ନାହିଁଛି ପନ୍ଥା ।

କଥା କହିବାର ଥିଲା ନାହିଁ ଅବସର,
ଚଳିଲା ତରୁଣୀ ପଛ କରି, ନିଜ ଘର,
ପଛେ ରଖିଗଲା ମୁଗ୍ଧ ତରୁଣ ମତେ
କରି ମତେ ନବ-ପିପାସାରେ ଜରଜର ।

ବେଳାର ଜନତା କରମେ ତାହାର ଲାଗେ,
ଉଦାସେ ବୋଇତ ଭାସଇ ବାରିଧି ଭାଗେ;

ନୂତନ-ପ୍ରଣୟ-ବିକଳ ସାଧବପୁଅ
ଚାହିଁରହିଲା ଯେ ରୂପସୀ ଚଳିଲା ଆଗେ ।

ବୋଇତେ ଆସିଲି, ଟେକାଇ ଦେଲି ମୁଁ ପାଲ,
ସ୍ୱଦେଶେ ଫେରିବା ପାଇଁ ହୋଇଥିଲା କାଳ,
ସେଇଦିନୁ, ପ୍ରତି ଘାଟେ ମୁଁ ଖୋଜୁଛି ପରା
ସେ ନୟନମଣି ଅୟୁତ ମଣିରେ ସାର ।

ସାଧବପୁଅ ମୁଁ ବୋଇତରେ ମୋ ଜୀବନ,
ସାଗର ଲହରୀ ଗଣି ସରେ ଯଉବନ,
ଧ୍ରୁବତାରା ଚାହିଁ ଶୁଖଇ ଆଖିର ପାଣି
କାନେ ଚିର କଟୁ ସୁନା ରୁପା ଝଣଝଣ ।

ପିତା ମୋ ଦେଶର କୁବେର ନଗର-ଶେଠ,
ଘରେ ଧରେ ମଣି-ପ୍ରଦୀପ କନକ-ପୀଠ,
ଦାସ-ଦାସୀ ଦେହେ ସୁନାଛିଟା ପାଟଶାଢ଼ୀ,
ଯାଚକମାନଙ୍କ ସେବା ହୁଏ ଅବିରତ ।

ପାରବଣେ ଯେତେ ପୁରବାଳା ଆସି ଘରେ
ଶୋଭନ୍ତି ଅଗଣା ବଦନ-କମଳ ଦଳେ,
କିଶୋରୀ ଯେତେକ ଦୋଳାଇ ମୋହନ ବେଣୀ
ଦୋଳାଇ ଦିଅନ୍ତି ଯୁବାଜନେ ମରମରେ ।

ଦେଖିଥିଲି ତାହା କିଶୋର ବୟସେ ପରା,
ତା ପରେ ଜୀବନ ବୋଇତେ ହେଉଛି ସରା,
ବାପାଙ୍କ ବଚନ ମାନି ମୁଁ ବଣିକପୁଅ
ଘାଟେ ଘାଟେ ଆଜି ବୁଲାଉଛି ମୋ ପସରା ।

ଯଉବନ ଗଲା ଅ-ସାଥୀ ସାଗର ପରେ
ସାଥୀ-ଖୋଜା ପ୍ରାଣ ଶମିବ କାହାର ବଳେ ?
ଘାଟୁ ଘାଟେ ତରୀ ଭିଡ଼ି ମୋ ଜୀବନ ଗଲା,
ପରାଣ-ତରୀ ମୋ ଭିଡ଼ିବି କା' ପଦତଳେ ?

ଯେ ଦିନୁ ସେ ମଣି ଦେଖିଲି ଏ ନୟନରେ
ପ୍ରଣୟର ନିଆଁ ଜଳଇ ହୃଦୟତଳେ,
କେ ଦେବ ସେ ମଣି ? ଗଳାରେ କରିବି ହାର,
ଲିଭିବ ହୃଦୟେ ବିପୁଳ ଦହନ, ଖରେ ।

ନଙ୍ଗର ପକା ତ, ନଙ୍ଗର ପକା ରେ ମାଝି,
ଏଇ ତ ସେ କୂଳ, ସେଇ ତ ସଉଧରାଜି,
ସେଇ ବେଳା, ସେଇ ଦେଉଳେ ପତାକା ଉଡ଼େ,
କେତେ ଘାଟେ ବୁଲି ଫେରି ମୁଁ ଆସିଛି ଆଜି ।

କେତେ ଦେଶୁଁ କେତେ ଆଣିଛି ମୁଁ ଉପହାର
କାବେରୀ ଦେଇଛି ଧବଳ ହୀରକ ହାର,
ଚୋଳରୁ ଆଣିଛି କନକ କୁସମ ମାଳା,
ସବୁ ଦେବି ଥୋଇ ଚରଣ-କମଳେ ତାର ।

ତା ସାଥେ ଦେବି ଏ ତରୁଣ ହୃଦୟ ମମ,
ତା' ଚରଣତଳେ ବିନୟିତ ଦାସ ସମ,
କହିବି– ''ଏ ମୁଖ ପାଇଁ ମୁଁ ଜୀବନ ଦେବି''
କହିବି– ''ତୋ ସେବା ଜୀବନେ ଧରମ ମମ ।''

କୂଳେ ଭିଡ଼ ତରୀ, ଆସ ରେ ମାଳଦା, ମାଝି,
ବହିଆଣ କୂଳେ ମାଣିକ ବଣିଜ ରାଜି,
ପେଣ୍ଡରେ ପଇଠ କରି ତମେ ଏଥି ରହ
ଯାଏଁ ମୁଁ ନଗରେ କପାଳ ମୋ ଖୋଜି ଖୋଜି ।

ବୁଲିବି ଯାଉଛି ନଗରର ପଥେ ପଥେ
ଦେଖିବି ଯଦି ସେ ଯାଉଥାଏ କାହିଁ ରଥେ,
ଦେଖିବି ଯଦି ସେ ବାତାୟନେ ଥିବ ଚାହିଁ
ଦେଖିବି ଯଦି ସେ ଚାହାଣିରେ ଜାଣେ ମତେ ।

ମାଳାକାର ହେବି ତା' କବରୀ ହାର ରଚି,
କାଚରା ହେବି ମୁଁ ଦେବାକୁ ତା' କର ଖଚି,
ସୁନାରି ହେବି ତା' ଚରଣ-ବଳୟ ଲାଗି,
ନାପିତ ହୋଇ ତା ଚରଣ ମାଜିବି ବସି ।

ଏଇ ଯେ ସେ ବେଳା; ପାବନ ତା ପଦ ଲାଗି,
ଆଖି ଆଗେ ମୋର ସେ ଦିନ ଉଠଇ ଜାଗି,
ମନେହୁଏ ଏଇ ଉଷର ବାଲୁକା ପରେ
ଶୁଅଁତି ମୁଁ ଥରେ ତା' ପଦ-ପରଶ ଲାଗି ।

କାହିଁକି ବା ଯିବି ? ଚିହ୍ନିବ ସେ କି ଗୋ ମତେ ?
ବିଦେଶୀ ମୁଁ, ଖାଲି ନୟନ ମିଶିଛି ପଥେ,
ଏଥିରେ କି ଆଶା ? ମୂଢ଼ ପରି ହୁଏ କିପାଁ ?
ମୋ ପରି ତରୁଣ ନ ଥିବେ ନଗରେ କେତେ !

ତଥାପି ମାନୁନି ମନ ମୋ ବାସନା ଖାଲି,
ଆଉ ଥରେ ଦେଖେଁ ପରାଣର ସେ ସଂଖାଳି,
ଥରେ ଆଉ ଖାଲି ଆଖେ ଆଖି ଯାଉ ମିଶି,
ଆଶା ନ ଦେଖିଲେ— ବୋଇତ ମୋ ଦେବି ଚାଳି ।

[ ତିନି ]

ଦେଖା ହେବ ନାହିଁ
ଯେ ଦୂର ପ୍ରଣୟୀ
ତା'ରେ ମୁଁ ସଁପିଲି ମନ,
ଯା' ପାଇଁ ରଖିଲି
ତା ହାତେ ନ ପଡ଼ି
ଶେଷ ହେବ ଯଉବନ ।

ଆଉ ନିତିଦିନ
ତନୁ ପ୍ରସାଧନ
ନାହିଁ ଲାଗେ ମନ ସଖି,
କାହାର ଭରସା
ପାଇଁ ସାଜି ଖୋଷା
ବାତାୟନେ ଆଖି ରଖି ?

କଳିକା ଫୁଟଇ
କୁସୁମ ଝଡ଼ଇ
ପୁଣି ତ କଳିକା ଉଠେ,
ମୋ ମନ-ଲତାର
କୁସୁମ ଆଶାର
କଳିକାରୁ ତଳେ ଲୁଟେ ।

ମାଟିର ଶିବ ଯେ
ନିତି ନିତି ପୂଜେ
ମନାସିଲି ଦେବ ଦେବୀ,

ମାଣିକ ପ୍ରଦୀପ
ଜାଗରେ ଜାଳିଲି
ଠାକୁରାଣୀ ପଦ ସେବି ।

ମରୁଛି ବିଫଳେ
ଭାସି ଆଖିଜଳେ,
ନୟନେ ଦେଖିଲି ନାଇଁ
ଆଉ ଥରେ ହେଲେ,
ତରୁଣ ଯେ ଗଲେ
ସେ ଦିନ ବୋଇତ ବାହି ।

ଆଉ କି ଆସିବେ
ନୟନେ ଦିଶିବେ,
ତଥାପି ଏ ପୋଡ଼ା ମନ
କହେ କାନେ କାନେ
ଆଶାର ଛଳନେ
'ମିଳିବ ହଜିଲା ଧନ' ।

ସେହି ସେ ଆଶାରେ
ରହିଛି ଧରାରେ
କହୁଛି ତୁମରେ କଥା,
ମାଣିକ ରତନ
ଦାସୀ ପରିଜନ
ନେବେ କି ପରାଣ-ବଥା ?

ଜଳଧି ବେଳାରେ
ଅବା କେଉଁଠାରେ
ଦେଖୁ ଯଦି ମତେ କହି
ଦୁଃଖ ମୋର ହର,
ମାଳୁଣୀ ଲୋ ମୋର,
ତୋଷିବି ବଧାଇ ଦେଇ ।

ଗଭୀର ନିଶୀଥେ
ଉଠି ମୋର ପୀଠେ
ଡେଜିବୁ ମଳିନ ଦୀପ

ଉଠାଇବୁ ମୋତେ
କହିବୁ ଗୁପତେ
କପୋଳେ ଛୁଇଁଣ ଟିପ—

''କିଶୋରୀ ଦେଖ ଲୋ,
ତୋ ରାଜକୁମାର
ବାତାୟନ ତଳେ ଠିଆ,
ବାଟରୁ ଫେରାଇ
ଆଣିଅଛି ଧାଇଁ
କହି ତୋ ବ୍ୟଥିତ ହିଆ ।''

ଏହି ସଖୀପଣ
କରି ଏ ଜୀବନ
ମାଳୁଣୀ ରଖ ତୁ, କହେ
ଥାଉ ପ୍ରସାଧନ
କୁସୁମ ଭୂଷଣ,
ଜୀବନ ତ ନାହିଁ ଥୟେ ।

[ ଚାରି ]

କୁସୁମ ହାରେ ଗୁନ୍ଥି ଯୁବା ତରୁଣୀ
ବଙ୍କା ବଙ୍କାଇ ଚଲେ ଧୀରେ ମାଳୁଣୀ ।
କରକେ ଧରିଅଛି ଫୁଲ ଚାଙ୍ଗୁଡ଼ା
ସେ ଫୁଲେ ଅଛି କେତେ ହୃଦ-ମାଗୁଣି ।

ମୁଣ୍ଡରେ ଝରାକାଠି ଖୋଷାରେ ଖୋସା
ପାଦରେ ଝୁମ୍ପା ଭରିଦେଇଛି ଯୋଷା ।
ପୃଥୁଳ ବାହୁ ଭରି କୁଟିଛି ଚିତା
ନୟନେ ଖଞ୍ଜରୀଟ ହୋଇଛି ପୋଷା ।

ନାକକେ ନୋଥ, ନାକଚଣା ଆରକେ
ଦଣ୍ଡି-ଝଲକା ଓଠେ ବାଜି ଝଲକେ ।
ଅଧର ଘନ ନାଲି ବିଡ଼ିଆ-ରାଗେ
ଚଳଇ ନାରୀ, ପାନ ଜାକି ଗାଲକେ ।

କପାଳେ କଳା-ଚିତା ପରେ ଟିକିଲି
ମହଣ ଦେଇ ଟାଣେ ଦେଇଛି କିଲି,
ମହଣ ଦେଇ ପୁଣି କାଢ଼ିଛି ମାଙ୍ଗ,
ଖେଳାଇ ଢେଉ, କେଶ ଦେଇଛି ଭିଡ଼ି ।

ବାହୁରେ ତାଡ଼, ଗୋଡ଼େ ପାହୁଡ଼ ବଙ୍କା
ସରଣୀ କମ୍ପେ ଯେବେ ଚାଲେ ଅବଙ୍କା,
ଧରଣୀ-ନିଦ ଭାଙ୍ଗେ ଚରଣ ମୁଦି
ଶିଖାଇ ତରୁଣୀଙ୍କୁ ଚଳନ-କଳା ।

ନଗର-କିଶୋରୀଏ ତା ପଥ ଚାହିଁ
ଗବାକ୍ଷ ତେଜି କାହିଁ ଯାଆନ୍ତି ନାହିଁ,
ଉଚ୍ଛୁର ହେଲେ ମାନ କାହିଁରେ କିବା
ସେ ମାନ ଭାଙ୍ଗେ ଗଭା ଯତ୍ନେ ସଜାଇ ।

ବରାଙ୍ଗୀ ଏକେ ଏକେ ବରାଦ ଏକ
କେ ଚାହେଁ ସୂର୍ଯ୍ୟମୁଖୀ, କେ କୁରୁବକ
କାହାର ଅବା ଲୋଡ଼ା କଦମ୍ବ-କଢ଼ି,
କରବୀ କାମିନୀ ବା କାହାର ସଖି !

ମାଳାରେ ହେଲେ ଜଣକର ଆଦର,
କବରୀ-ସାଜ ମାଗିଥାଏ ଅପର ।
କେ ମାଗେ ନୀପ ପୁଷ୍ପ ଦେବାକୁ କାନେ,
କୁସୁମ-ଗୁଚ୍ଛେ କା'ର ଶରଧା ବଢ଼ା ।

ତରୁଣୀ କେହି ତାରେ କରିଛି ଅଳି
ଦେବାକୁ ଏ ଆଷାଢ଼େ କଦମ୍ବକଳି,
ନିତିକି ନିତି, ଯେଣୁ ଆସିବେ ପ୍ରିୟ
ବରଷା ଯାପି ଯିବେ ପ୍ରବାସେ ଚଳି ।

କିଶୋରୀ କେହି ମାଗିଥିଲା କେତକୀ
ଗଲା ବସନ୍ତେ ଭଲେ ହଂସ-ଗତିକି
ଯୋଗାଇ ନ ପାରିଲା, ବଢ଼ିଛି ମାନ,
ମନା ହୋଇଛି ଯିବା ତାର କତିକି ।

କେ ବଧୂ ବୋଲେ, 'ଅୟି ମାଳୁଣୀ ସଖି'
କହିବି ଗୋଟେ କଥା ପାରିବ ରଖି ?
ପୂର୍ଣ୍ଣିମା ଦିନ ସେ ଗୋ ଆସିବେ ଘରେ
ବଉଳ ମାଳା ଏକ ଗୁନ୍ଥି ଦେବ କି ?

କାହାକୁ ନାହିଁ ବୋଲି କହଇ ନାହିଁ,
ହସି ଚତୁରୀ କହେ ଆଣିବା ପାଇଁ,
କାମିନୀ ମନ ସେ ତ ବୁଝିଛି ଭଲେ
ଭୁଲାଇ ରଖିଥାଏ ଆଶା ଦେଖାଇ ।

ଯାଉ ଯାଉ ସେ ରାଜପଥେ ଚତୁରୀ
କିଶୋରୀଗଣ ହୋଇ ଅତି ଆତୁରୀ
ଡାକନ୍ତି ହାତ ଠାରି ଗବାକ୍ଷ ପଛୁ
'ମାଳୁଣି, ରାଣ ଆଗ ଆସ ଏ ପୁରୀ ।'

କେ କହେ 'ବେଳ ଗଲା କବରୀ ସାଜି
ପାରିବି ନାହିଁ ତୋର କୁସୁମେ ଆଜି';
ଆଉ କେ ବୋଲେ, 'ତୋର କେତେ ଲୋ ଆୟୁ
ଏକ୍ଷଣି ଖୋଜୁଥିଲି ପରାଗ-ରାଜି ।'

ସକଳ ରୂପସୀର ମନକୁ ଧରି
ମାଳୁଣୀ ଜିଣିଅଛି ସାରା ନଗରୀ
ତରୁଣ-ତରୁଣୀଙ୍କି ରଖିଛି ହାତେ
ତା ନାମେ ତାଙ୍କ ବୁକୁ ଉଠଇ ଥରି ।

ତଥାପି ପ୍ରିୟ ନାରୀ ସବୁରି ଘରେ,
ବିଶ୍ୱାସ ସବୁ କିଶୋରୀର ତା ପରେ,
ତା ବକ୍ଷେ କେତେ ବକ୍ଷ-ଗୋପନ କଥା,
ତା ମୁଖୁ କେତେ କାନେ ପୀୟୂଷ ଝରେ ।

[ ୨ ]

କିଶୋରୀମେଳେ ଶ୍ରେଷ୍ଠ ସାଧବବାଳା
ମାଳୁଣୀ ନିତି ତା'ରେ ଦିଅଇ ମାଳା,
ଯତନ କରି ଜୁଡ଼ା ଦିଅଇ ବାନ୍ଧି,
ହେବାକୁ ଦେଖଣାଙ୍କ ହୃଦୟ-କାରା ।

ତା ପାଇଁ ବଗିଚାରେ ଭିନ୍ନ ବ୍ରତତୀ
ପୃଥକ ପୁଣି ତାର ସଲିଳ ଘଟୀ,
ପୃଥକ ହୋଇ ଫୁଟେ ତା ପାଇଁ ଫୁଲ
ସରସ ସବୁଠାରୁ ତାରେ ମାଳାଟି ।

ଦିନେ ମାଳୁଣୀ ଭୁଜେ ଫୁଲର ହାର
ଅନନ୍ତ କରି ବାନ୍ଧିଦେଲା ବାଳାର,
ଘଡ଼ିକେ ଡାକ ଦେଲା କାଟିଲା ବୋଲି
ରକତ-ଦାଗ ବହୁ କଷ୍ଟେ ବାହାର ।

ଚିକ୍‌କଣ କେଶେ ଫୁଲ ରହଇ ନାହିଁ,
କବରୀ ଭାର, ଦେଲେ ମାଳା ଗୁଡ଼ାଇ,
ଗଳାରେ ଦେଲେ, କାଢ଼ିଦିଏ ଘଡ଼ିକେ,
କୋମଳ କାନ୍ଧ ଦୁଇ ଯାଏ ବଥାଇ ।

ଏଣୁ ମାଳୁଣୀ ବଡ଼ ବିପଦେ ପଡ଼େ
ସଜାଇବାକୁ ତାକୁ ନିୟତ ଡରେ,
କୁସୁମ କୋମଳ ଯା' ଶରୀର-ଲତା,
ପିନ୍ଧାଇବାକୁ ତାକୁ ତା' କର ଥରେ ।

ସାଧବଝିଅ ପାଶେ ଚଳେ ମାଳୁଣୀ
ଅପେକ୍ଷା କରିଥିବ ବର-ତରୁଣୀ,
କରରେ ଧରିଅଛି ଫୁଲଚାଙ୍ଗୁଡ଼ା
ସେ ଫୁଲ ତଳେ କେତେ ହୃଦ-ମାଗୁଣି ।

[ ୩ ]

ଭେଟିଲା ଦୂରଦେଶୀ ସାଧବସୁତ
ଏକାକେ ତାକୁ । ତାର ଅଧର-ପୁଟ
ସହସା ଶୁଣାଇଲା ''ଶୁଣ ତ ଟିକେ,
ଦେଖୁଛ ବେଶ-ବାସୁଁ ବିଦେଶୀ ମୁଁ ତ !''

କରୁ ଚାଙ୍ଗୁଡ଼ି ଆଣି କଟିରେ ଥୋଇ
ମାଳୁଣୀ ଅନାଇଲା ଚକିତ ହୋଇ,
ଦେଖିଲା ରୂପବନ୍ତ ତରୁଣ ଆଗେ
ଲାଜେ ତା ଆଖି ଟିକେ ଯାଉଛି ନୋଇଁ ।

ସାଧବପୁଅ କହେ 'ମାଲୁଣୀ ପରା
ଦିଶୁଛ, ଖାଲି ନେଇ ଫୁଲ-ପସରା
ବୁଲ, ନା ଆଉ କିଛି କର ଗୋ ନାରୀ,
ଗରଜ ଅଛି ମୋର କହ ତ ତ୍ୱରା !

ଚତୁରୀ ମାଲୁଣୀ ସେ କହିଲା ହସି,
''ଖାଲି କି ଫୁଲ ବିକେ ? ଲଗାଏ ରଶି,
ଏ ଫୁଲ ଦେଇ ଯୁବା-ଯୁବତୀ ହୃଦେ,
କୁସୁମ ହାରେ କେତେ ହୃଦୟ କଷି ।

ମୋ ଲାଗି ଏ ନଗରେ କିଶୋରୀଦଳ
ଦେଖନ୍ତି ନିରଜନେ ମୁଖ ପ୍ରିୟର,
ମୋ ଫୁଲ ଦିଏ ଭାଷା ତରୁଣ-ପ୍ରେମେ
ପ୍ରଥମ ଉପହାର ତରୁଣୀଙ୍କର ।

କି କାମ ଅଛି''-ବୋଲି କହିଲା ନାରୀ,
''ଚାହିଁ ତ ଥିବେ ମୋତେ ସାଧବ-ବାଳୀ—''
ଚମକି ଅନାଇଲା ବିଦେଶୀ ଯୁବା
ପଚାରେ ''ସାଧବରେ ତୁ ସେବାକାରୀ ? ''

''କାହିଁକି ?'' ପଚାରିଲା ମାଲୁଣୀ ପୁଣ
ତରୁଣ କହେ ''ଦେଖାଇବି ମୋ ଗୁଣ
ମାଳା ମୁଁ ଗୁନ୍ଥିପାରେ ବିଚିତ୍ର କରି
କବରୀ ସାଜିପାରେ ଅତି ନିପୁଣ ।''

''ବିଦେଶୀ ମାଳାକାର ? ଆସ ଗୋ ତେବେ''
ବୋଇଲା ନାରୀ, ''ନିଶ୍ଚେ ଗୁଣ ଚିହ୍ନିବେ
ସାଧବକନ୍ୟା, ଆଉ ନ ଚିହ୍ନୁ କେହି
ଚିହ୍ନାଇଦେବି, ରହ ମୋ ଘରେ ଯେବେ ।

ଗୁନ୍ଥିବ ମାଳା କାଲି ଯତନ କରି
ସାଧବକନ୍ୟା ପାଶେ ନେବି ମୁଁ ଧରି,
ଆସ କୁଟୀରେ''— ଲେଉଟିଲା ଘରକୁ
ସାଧବପୁଅ ଚଳେ ଶିବ ସୁମରି ।

[ ପାଞ୍ଚ ]

ରାଜାପୁଅ ବଡ଼ ହଟିଆ
ଏବେ କରିଛି ହଟ
ସାଧବସୁତାକୁ ଉଆସେ
ନେବ, ଏଇ ତା' କଣ୍ଠ ।
ସାତ ରାଣୀଙ୍କର ଏକ ସେ
ପୁଅ, ନୃପତି-ଆଖି
ଅତି ସେରଡାରେ ସରିଛି,
ମନ୍ଦ ନାହିଁ ଛି ବାକି ।
ଯାହା ସେ ଚାହିବ, ପାଇବ;
ଯାହା କହିବ ହେବ,
ନାହିଁ କରି ହେବ ବଇରି
ଏତେ ଦମ୍ଭ କା' ଥିବ ?
ଗର୍ଭିଣୀକୁ ଚିରି ଦେଖିଛି
ଶିଶୁ ଖେଳେ କିପରି,
ଅଟାଳିରୁ ଫିଙ୍ଗି ମନିଷ
ଦେଖେ ପତନ-ଶିରୀ ।
କୁଳବାଳା ତ୍ରାସ ନଗରେ
କଟୁଆଳ ତା' ଭୟେ,
ନିଜେ ଦିଏ ପାପ ଆହାର,
ଅବା ନୀରବ ରହେ ।
ପାରିଧିକି ଯାଉଁ କେବେ ସେ
ନଈ-ତୁଠେ ଦେଖିଲା
ସାଧବଝିଅର ସଙ୍ଗିନୀ ସଙ୍ଗେ
ସ୍ନାହାନ ଲୀଳା ।
ପରିଚୟ ବୁଝି ଫେରି ସେ
ଘରେ ଧରିଛି ହଟ
ବିଭା ହେବ ତାକୁ, ନଚେତ
ନିଶ୍ଚେ ଛାଡ଼ିବ ଘଟ ।
ସାଧବଙ୍କୁ ଡାକି ରାଜନ
ପୁଚ୍ଛା କରନ୍ତେ ମାନେ

କହିଲେ ସେ– ''ଆମ୍ଭ ଆମେ କି
ଯୋଗ୍ୟ ରାଜଗହଣେ ?
ମାଆ ତାର କଥା ଦେଇଛି
ଆଗୁଁ ଶ୍ରୀନୀଳାଚଳେ
ଚେଲିତାକୁ ପୁର ସାଧବ-
ଶ୍ରେଷ୍ଠୀସୁତ ସଙ୍ଗରେ ।
ସେ ଥାନୁ ବୋଇତ ଆସିଛି
ଖୋଜି ବୁଝିବି ଠିକ,
କିପାଇଁ ଏ ମଲା କାଳେ ମୋ-
କଥା ହେବ ଅଳୀକ ?''
ଏ କଥା କାନରେ ପହଞ୍ଚୁ
ଗରଜିଲା କୁମାର,
ଦେଖିବି, କିଏ ସେ ପୁରୁଷ
କେତେ ସାହସ ତାର !
ମୋ ଆଖି ଆଗରୁ ଘେନି ସେ
ଯିବ ନାରୀ-ମାଣିକ,
ସିଂହ ଥାଉଁ ହେବ କାନନେ
ବିଲୁଆ କି ମାଲିକ ?
ପୁରପାଳେ ଡାକି ବରଗି
ଦେଲା ପାଇକ ଶତ,
ଛକି ଦେଖିବେ ସେ ସାଧବ-
ଘର ଗତ ଆଗତ ।
ସୁତା ତା'ର କାହିଁ ଯିବାରେ
ହେଲେ ସନ୍ଦେହ କାଳେ
ତତକାଳେ ଦେବେ ସମ୍ବାଦ
ଧାଇଁ ରାଜକୁମାରେ ।

[ ଛଅ ]

''ବୋଇତରେ, ଘରେ, ବେଳାଭୂମେ
ଦେଖୁଥିଲି ସପନ ଯାହାର
ଦରିଆ ମୁଁ କାଟି କାଟି ଆଜି
ଆସିଅଛି ନିକଟେ ତାହାର ।

ଚାରି ଆଖି ହେବ କି ତା' ସାଥେ
ଉତ୍ତର କି ଦେବ ସେ ଆଖିରେ ?
ଫେରିବି ବା ବିଫଳ ବାସନା
ଯହୁଁ ଆସିଥିଲି ସେହି ତୀରେ ?
ବନ୍ଦାଇ କି ନଯାଏ ବୋଇତ
ବେଳାକୁ ସେ ଭାଇଙ୍କ ଗହଣେ
ନଦୀଘାଟେ ସଖିଗଣ ସାଥେ
ନଯାଏ କି ସେ ଅବଗାହନେ ?
କାହିଁ ହେଲେ ଦେଖିବି ମୁଁ ଥରେ
କ୍ଷଣେ ହେଲେ ସେହି ରୂପଶିଖା
ଆସିଛି ମୁଁ ବହୁ ଦେଶ ଡେଇଁ
ଏହି ମୋର ହୃଦୟର ଭିକ୍ଷା ।
ମୁଁ ଯେ ତା'ର ଅତି ଅଭାଜନ,
ଏ କଥା କି ବତାଇବ କିଏ ?
ମୁଁ ଯେ ହୀନ ଖତଗଦା କୀଟ,
ରୂପବତୀ ପ୍ରଜାପତି ସିଏ ।
ତା ଚରଣ ଦାସ ହେବି ଯଦି
ଏ ଜୀବନ ସଫଳ ମଣିବି
ତା ତନୁର ମୃଦୁ ସ୍ୱେଦବାରି
ବିଞ୍ଚି ଧୀରେ ଅଲକ୍ଷ୍ୟେ ହରିବି ।
ତାହାଲାଗି ଅଗୁରୁ ଚନ୍ଦନ
ବାଟି ଗୋଳି ରଖିବି ଯତନେ
ତାହା ଲାଗି କୁସୁମ-ଭୂଷଣ
ରଚିବି ମୁଁ ଭକତର ମନେ ।
ବସନ୍ତର ନିଶୀଥ ମଳୟେ
ତା ତନୁର ମୃଗମଦ-ରାଗ
ଭାସି ଯେବେ ଆସୁଥିବ, ମୁଁ କି
ନ ପାଇବି ସେ ଦାନର ଭାଗ ?
ଅଲକ୍ତକ ଚରଣେ ଫୁଟାଇ
କୋକନଦ, ଚାଲିବାର ବାଟେ

ଚାଲିଯିବ ଯେବେ ସେ ମେଲାଇ
ମୁକ୍ତ-ବେଣୀ-ମେଘ ସ୍ନାନଘାଟେ,
ଧରି ପଛେ ପ୍ରସାଧନ ତାର
ଯିବାକୁ କି ନୋହିବି ଭାଜନ
ମୋଠାରୁ କି ଭଲ ସେବା ଦେବେ
ତା ଘରର ଯେତେ ଭୃତ୍ୟଜନ ?
ମାଳୁଣୀ ତୁ ଦିଏ ଏ ମାଳାଟି
ଆଜି ନେଇ କିଶୋରୀକି ତୋର
ଯଦି ତାର ହୋଇବ ପସନ୍ଦ,
କହିବୁ ମୁଁ ମାଳୀ କଳିଙ୍ଗର ।
ସଞ୍ଜ ଆସି ହୋଇଗଲା ଏବେ,
ଫୁଟିଲେଣି ତାରକା ଗଗନେ
ଆରତିର ବାଜଣା ବାଜଇ
ନଗରର ଦେଉଳ ପ୍ରାଙ୍ଗଣେ ।
ରତନର ଦୀପ ଜଳିବଣି
ସାଧବର କିଶୋରୀର ଘରେ
ଶୋଇଥିବ ଅଳସେ ପରା ସେ
ତନୁ ଫିଙ୍ଗି ହଂସୁଲି ଶେଯରେ ।
ଦୀପାଲୋକେ ଦୀପ୍ତି ଶ୍ରୀଅଙ୍ଗର
ଜଳୁଥିବ ଅଗ୍ନିଶିଖା ସମ
ତାର ତନୁ ପରଶରେ ଯେହ୍ନେ
ବାସଭୂଷା ଦିଶେ ମନୋରମ ।
ଲମ୍ୱ ନେତ୍ରେ ଏଣେତେଣେ ଚାହିଁ,
ସଖୀ କା'ରେ କହୁଥିବ କଥା,
ସ୍ମିତ ମୁଖେ ପଢୁଥିବ ବିଛୁ,
ଉପାଧାନ ଚୁମ୍ୱୁଥିବ ମଥା ।
ଅବା କର ଥୋଇ କପାଳରେ,
ନିରଜନେ ଭାବୁଥିବ କା'ରେ
କିଏ ସେହି ଭାଗ୍ୟଧର ଭବେ ?
ମୁଁ କି,— ମୁଁ କି,— ମୁଁ କି ହୋଇପାରେ ?''

[ ସାତ ]

''ନୂଆ ହାତ କା'ର ଲାଗିଥିଲା ପରି
ଲାଗଇ
ମାଳୁଣୀ ତୁ କହ, ଗଲାଣି ମୋ ସବୁ
ରାଗହିଁ ।
ଏତେ ଡେରି କଲୁ, ମନେ ମନେ ଥିଲି
ରାଗି ଯା,
ଦେଇଥାନ୍ତି ତତେ ଦୁଆର-ବାସନ୍ଦ
ତାଗିଦା ।

ଫୁଲହାର ଦେଖି, ଗଲି ସବୁ ରାଗ
ଭୁଲି ମୁଁ,
ମୋ ରାଣ ଲୋ ତତେ, ଠିକେ ସବୁ କଥା
ବୋଲିବୁ ।
ମୋ ମରମ କଥା, ତୋତେ ସିନା ଜଣା
ମାଳୁଣୀ
ନିଜ ରକତର, ମା' ବି ସେ କଥା
ଜାଣିନି ।

ସମୁଦ୍ରର ଘାଟୁ ଫେରି ମୁଁ ସେଦିନ
ସଞ୍ଜରେ
କାନ୍ଦିବାର ଦେଖି, ସେଇ ସେ ଦୁଆର-
ବନ୍ଧରେ,
ଠିଆହୋଇ ମତେ କୋଳ କରି ଆଖି
ପୋଛିଲୁ
ଏତେ ଦିନେ ଆଜି, ଆଖେ ଲୁହ କିପାଁ—
ପୁଛିଲୁ ।

ବହୁ ପ୍ରବୋଧନା, ସାଧନାରେ ତତେ
ପ୍ରାଣର
ନୂତନ ପ୍ରମାଦ ବଖାଣିଲି, ମଣି
ଦୋସର ।

ସେ ଦିନୁ ତ ଜାଣୁ ତିନୋଟି ବରଷ
ଗଲାଣି
ନୟନର କେତେ ନୀର ବାନ୍ଧିହୋଇ
ମଲାଣି ।

ସାଜିବାକୁ ଫୁଲେ, ଏ ଛାର ଶରୀର
ଡାକେ କି
ତୁ ଜାଣୁ ଲୋ ଖାଲି, ତାଙ୍କ କଥା, ପାଇ
ଏକାକୀ;
କହି ତତେ ହୁଏ ସୁଖୀ ଦଣ୍ଡେ, କ୍ଷଣେ
ଦିନରେ
ସେହି ତ ଏକଇ ସୁଖ ମୋର ଏ ଜୀ-
ବନରେ ।

କେତେ ଥର ତତେ ପଚାରିଛି ଅତି
ଆଗ୍ରହେ
ବାଟଘାଟେ କେବେ ହେଲେ ଦେଖା ତାଙ୍କ
ବିଗ୍ରହେ,
ତୁରିତେ କହିବୁ, ଦୂରୁ ହେଲେ ଦେଖା-
ଇବୁ ଲୋ,
ସାହୁକାର ହୋଇ ଜୀବନେ ଜୀବନେ
ଥିବୁ ଲୋ ।

ମୁରୁକି ହସୁଛୁ, ଚଂଚଳେ ଚାହିଁଛୁ
ଆଜି ଯେ,
ନୂଆ ମାଳା ପୁଣି ଆଣିଛୁ ଯତନେ
ସାଜି ଯେ !
ଆଶାର କଥା କି ଶୁଣାଇବୁ କି ଲୋ
ଶ୍ରବଣେ ?
କହ, ନିଜେ କେତେ ବାନ୍ଧିବି ଧଇର୍ଯ୍ୟ-
ବନ୍ଧନେ ?”

''ଆସିଛନ୍ତି ସତେ ?'' ମାଲୁଣି ଚତୁରୀ
ଭାଷଇ,
''ତୁମେ ଜାଣ, ତମ ଲୋକ ନ ଆସେ କି
ଆସଇ,
ମୁଁ କିସ ଜାଣେ ମା' ? ପେଟଦାଉ ଆମ
ମାଲିକ,
ଖଟି ଖଟି ସଞ୍ଜେ, ପାଇବି ଚାଉଳ
ଗଣ୍ଡିକ ।

ବଣିକ ସାଧବ, ଶେଠ ସୌଦାଗର
ବିଷୟେ
ପଶିବୁ ଗରବେ ଆମେ କହ କେଉଁ
ଆଶୟେ ?
ସେଦିନ ଉଚ୍ଛୁର ହେଲା ବୋଲି ମାଆ
ସେଥର
ମନେଅଛି କେଡ୍ଡେ ଝିଙ୍ଗାସିଲେ ? ତୁମେ
ସେକର—

ମେଲାରେ କଉଡ଼ି ଖେଳୁଥିଲ ସାଙ୍ଗ-
ସଙ୍ଗତେ
ସେତେବେଳେ ମୁହିଁ ନ ଥିଲି ତୁମର
ଜଗତେ ?
ଏବେ କାମଲାଗି''—ଥନଥନ ଲୁହ
ବୁହାଇ;
ସାଧବର ସୁଧା-ହୃଦୟା ବାଳିକା
କହଇ,

''ମାଲୁଣୀ, ତୁ ସବୁ ଦୋଷ ମୋର ଦିଏ
ପାଶୋରି
ହାତ ତୋ' ଧରୁଛି, କରିନାହିଁ କିଛି
ବିଚାରି ।

ନିଏ ଏ ସୁନାର ହାର''– ''ଛିଇ-ଛି, ଏ
ବି କଥା !
ଥଟ୍ଟା କରୁଥିଲି ସିନା ମୁଁ ଦେବାକୁ
ବାରତା ?

କିସ ନ ନେଇଛି, ତୁମଠୁଁ ପୁଣି ଯେ
ମାଗିବି ?
ପେଟ ପୂରେ ଯାକୁ ଦେଖିଲେ, ତାକୁ କି
ରାଗିବି ?

ଶୁଣ ଧନମଣି, ଯାଏ ମୁଁ ହେଲାଣି
ଅନ୍ଧାର,
ସଞ୍ଜେ ବଗିଚାରେ କାଲି ଦେଖିବୁ ସେ
କୁମାର ।''

## [ ଆଠ ]

### (ରାଗ-କାଳୀ)

ଶୁଣ ସାଧବ ଖବର ଶୁଭ ବଧାଇ ନେଲେ ଦେବି
ତବ ମାନସୀ ନବ ବ୍ରତତୀ ତନୁରେ ଗୁଡ଼ାଇବି ।

କି ମନ୍ତ୍ର ଫୁଙ୍କି କାହାଠୁ ଶିଖି ରଚିଲ ଫୁଲହାର
ଛୁଇଁଲାକ୍ଷଣି ସେ ବାଳାମଣି ଭୋଗିଲା ଶୀତ୍କାର ।

ଉଠି ଆସନୁ, ବରବଦନୁ ସ୍ମିତ-ମୁକୁତା ବୁଣି
ପଟାରେ କର ଧରି ମୋହର ''ସତ କୁହ ମାଲୁଣି,

କିଏ ସେ ଦେଲା ? ଧନେ ମିଳିଲା ଚିଜ ଏ ନୁହେଁ କେବେ
ପରଶପ୍ରୀତି ଦେଇ ଗୁଁଥିଛି ମନେ ଯେପରି ଭାବେ ।

ଆମ ନଗରେ ସାହସଭରେ କିଏ ପେଷିବ ମାଳା,
ବିଦେଶୀ କେହି– ସତେ କି ସେହି ?'' କହିଚାଲିଲା ବାଳା ।

ତାକୁ ଉତ୍ତରେ ଧରି ଓଠରେ ହଲାଇ ଦେଲି ଧୀରେ
ଇଙ୍ଗିତ ପାଇ ସୁଖ ତା ବହି ଭାସିଲା ଆଖି-ନୀରେ ।

ତହିଁ ତା ମୃଦୁ ଭୁଜରେ ମଧୁ ଆଶ୍ଳେଷ ଦେଇ ଗାଢ଼େ
ପଡ଼ି ମୋ ବୁକେ ମଧୁର ଦୁଃଖେ ନୟନୁ ନୀର ଛାଡ଼େ ।

ଫୁଲି ଫୁଲି ସେ ଅଫୁଟା ଭାଷେ କହଇ ମୁହଁ ପୋତି
"ମାଳୁଣି ନାନୀ, ମିଳାଅ ଆଣି ଏତିକି ମୋ ମିନତି ।"

ବହୁତ ବୋଧ କରି ଅବୁଝ- ଟାକୁ ଫେରୁଛି ଏଇ
ସାଧବପୁଅ ସଜାଡ଼ ହୁଅ ଗୋପନେ ଯିବି ନେଇ ।

ଫୁଟିଲେ କଥା ଯିବ ଏ ମଥା କୁଟୁମ୍ବ ହେବେ କାଟ
ରାଜା କହିଲେ, ମିଶେ ମୁଁ ହେଲେ ପଶନ୍ତି କି ଏ ବାଟ ?

ବାଳୁତବେଳୁ ଆଶ୍ରି ଏ ବାହୁ ବଢ଼ିଛି ଯେ ସଂଖାଳି
ତା' ଯୁବାକାଳ ଅର୍ଦ୍ଧୋଳି-ଢାଳ କେମନ୍ତେ ନ ସମ୍ଭାଳି ?

ତରୁଣୀ ମନ, ହେଲା ଲଗନ ଯହିଁ ସେ ପ୍ରାଣ ତାର
ଦେହ ଭୂଷଣ, ସୁଖ ସୃଜନ, ତା' ବିନୁ ସବୁ ଛାର ।

ଶେଠନନ୍ଦନ ମନରେ ଘେନ ନିଜରେ ଭାଗ୍ୟବନ୍ତ
ଯେ ଦିଏ ଧରା ଧରେ କି ଧରା ତା'ପରି ଶୋଭାବନ୍ତ ?'

ତନୁ ପାତଳ ଓଠ ପାଟଳ ଝଳା-ସୁବର୍ଣ୍ଣ ଗାଲ
ବାୟସ କୃଷ୍ଣ କୁଟିଳ କେଶ ନିତମ୍ବ ଚୁମେ ତା'ର ।

କଖାରୁ ବୀଜ ପରି ସଲଜ ସୁନ୍ଦର ଦୁଇ ଆଖି
ଅଦରକାରୀ ବୋଲି ସେ ଗୋରୀ କଜ୍ଜଳ ନୁହେଁ ମାଖି ।

ଉରୁ-କୁସୁମ- ଭାର-ସରମ ଫଳେ ସେ ନଇଁ ଚାଲେ
କେତକୀଦଳ ଉଡ଼ିଯିବାର ଦେଖିବା ଲୋକ ଭାଳେ ।

ସେ ଅଚୁମ୍ବିତ କୁସୁମ ତୁ ତ ପାଇବୁ ତୋର କରେ
ଭୋଗି ନିଷ୍ଠୁର ସାଧବପୁଅ, ନୋହିବୁ ତା' ଉପରେ ।

ପୁରୁଷ-ମନ ଭ୍ରମର ସମ ଫୁଲରୁ ଫୁଲେ ଉଡ଼େ
ନୂତନ ଆଶେ ମୋହରେ ପଶେ ଖଟରୁ ଖଟକୁ ଢେ଼ ।

ତାହା ନ କର ସାହୁ-କୁମର ରମଣୀ କୁହୁକିନୀ
ପୀରତି ଦେଲେ ଏକା ସେ ହେବ ସହସ୍ର ମାୟାବିନୀ ।

| | | |
|---|---|---|
| ନାରୀ ତ ବୀଣା | ଚାହେଁ ବାଇଣା | ବାୟକ ପୁଂସ କଣ୍ଠରେ |
| ପାରିଲେ ବାଇ, | ଗୀତ ଫୁଟାଇ | ତା ଦେହୁ ନିରନ୍ତରେ । |
| ଏତିକି ମନେ | ରଖିଥା ଦିନେ | ବୁଝିବ ବୁଢ଼ୀ-କଥା |
| ସଂଖାଳି ମୋର | ହେବ ତମର, | ଘୁଞ୍ଚୁ ତା ପ୍ରାଣ ବ୍ୟଥା । |

[ ନଅ ]

ମୋ ସ୍ୱପ୍ନ-ରାଜସୁତ ଦୁଆରେ ଠିଆ
ଡାକେ ଘରେ କିପରି,
ଛନକା ପଶି ମୋର ଚମକେ ହିଆ
ମୁଁ କି ତାଂକର ସରି !

ସାଧବପୁଅ ଭୋଗେ ଦୁଃଖ ମୋ ଲାଗି
ପ୍ରତିଦାନ କି ଦେବି
କି ଗୁଣ ଅଛି ମୋର,—ମୁଁ ଯେ ଅଭାଗୀ
କେହ୍ନେ ପଦ ସେବିବି ?

ମିଳିବ କେବେ ଦେଖା, ଅବା କିପରି
ସଁପି ଦେବି ଚରଣେ
ନିଜକୁ, ନିଜର ଯା ଅଛି ମୋହରି
ତାଂକ ସୁଖ ବର୍ଦ୍ଧନେ ।

ସେ ପ୍ରାଣପ୍ରିୟ ପୀଡ଼ା ଉପଶମନେ
ଦେବି ଛାତି-ରକତ
ତାଂକର ସୁଖ ଖାଲି ହେବ ଜୀବନେ
ମୋର ବାର-ବରତ ।

କିପାଇଁ ସିନ୍ଧୁ, ନଈ ଆସିଲେ କାଟି,
ତାଂକ ଦେଶେ ନଗରେ
ମୋ ପରି ଥିବେନି କି କୋଟିକି କୋଟି,
ମୁଁ କି ଲେଖା ରୂପରେ ?

ତାଙ୍କର ଏ କରୁଣା ଶୁଝେଁ କିପରି,
ମୁଁ ତ ସବୁରେ ହୀନ

ସେବାରେ ତାଙ୍କ, ଯେହ୍ନେ ଯାଏ ମୁଁ ସରି,
ହୁଏ ଚରଣେ ଲୀନ ।

ମୁଁ ରହେ ଘରେ ଭଲଦାସଦାସୀରେ
ଅଥାନରେ ସେ ରହି
ବୁଲନ୍ତି ଲୁଚି, ଦାସ ନାହିଁ ସାଥିରେ,
ତାଙ୍କ ଦୁଃଖ କି କହି !

ମାଲୁଣୀ, ନେଇ ଯା'ଲୋ ରତନ ମୁଦି,
କଣ୍ଠ ମାଣିକ-ହାର
ରାଜାର ଥାଟେ ତାଂକୁ ରଖିବୁ ବୁଝି,
ସେ ଯେ ରାଜକୁମାର ।

ସଜାଇଦେବୁ ତାଂକୁ ବାସ-ଭୂଷଣେ
ଯେବେ ଆସିବେ ପାଶେ,
କହିବୁ, ପାଏ ସୁଖ ଆରେକ ଜଣେ,
ତାଙ୍କ କେଳେଶ ନାଶେ ।

ଘୋଡ଼ାରେ ଚଢ଼ି ସୁନା-ମୁକୁଟ ନାଇ
ଚାଲିଯାଆନ୍ତେ ପଥେ,
ଦେଖନ୍ତି ଆଖେ ବାତାୟନରୁ ଚାହିଁ
କିବା ସୁଖ ସେ ମୋତେ !

ରାଜାର ପୁଅ ଡରେ, ଲୁଚି ଗୋପନେ
ମତେ ଦେବେ ଦର୍ଶନ;
ବାଧୁଛି ବଡ଼ ଏହା ମୋର ମରମେ,
ଏ ତ ନୁହେଁ ଶୋଭନ !

ପୁରୁଷ ପରି ମତେ ଲଢ଼ି ସେ ନେବେ
ଲୋକ-ଲୋଚନ ଆଗେ,
ଦେବତା ପରି ମତେ ଅଭୟ ଦେବେ,
ତୁମ୍ଭି ପ୍ରଣୟ-ରାଗେ ।

ବିଳାସେ ହେବି ତାଙ୍କ ହୃଦୟ-ହାର
ଅସ୍ତ୍ର ହେବି ବିପଦେ,

କି ଲାଭ ହୁଏ ଯଦି ମୁଁ ତାଙ୍କ ଭାର,
ବେଢ଼ି ତାଂକ ଶ୍ରୀପଦେ ?

ଆଚ୍ଛା ମାଲୁଣୀ, ଦେଖା ହେଉଲୋ ଆଗେ
ଦେଖା ହେଲେ କହିବି,
ସେ ଯଦି ଚାହୁଁଥିବେ ମୋ ଅନୁରାଗେ,
ବିଶ୍ୱେ କା'କୁ ଡ଼ରିବି ?

[ ଦଶ ]

ଶୁଣ ବାୟୁ, ଶୁଣ ହେ ଆକାଶ,
ଶୁଣ ଜନ, ବନ, ତରୁଲତା,
ଜୀବନର ସକଳ ବିଳାସ
ବିଳାସର ସବୁ ମଧୁରତା ।
ମୁଁ ଯେ ପ୍ରାଣେ ଭୋଗୁଛି ନିବିଡ଼େ
ତେଣୁ ପ୍ରାଣ ଭାସେ ଦୁଇ ତୀରେ ।

ଏ ଧରାର ସାର ଯେ କିଶୋରୀ
ସେ କିଶୋରୀସାର ଯେ ହୃଦୟ
ସେ ହୃଦୟ ସାର ପ୍ରୀତି-ଝରୀ,
ହାତେ ମୋର ଦେଖ, ସୁଧାମୟ ।
ପିଇଛି ମୁଁ ମନତୋଷେ ତହିଁ
ଆନ ମତେ ଦିଶୁଛି ଏ ମହୀ ।

ତୁମେ କେହି ଦେଖିଛ ତ କହ
ତାହାପରି ଅଛି କେ ଜଗତେ,
ତାହାପରି ପେଲବ ହୃଦୟ,
ତା ସମାନ ରୂପ ଚିତ୍ରପଟେ ?
ଅନୁପମ ସରସ ସୁନ୍ଦର
ମୋରହିଁ ସେ, ଏକାନ୍ତ ମୋହର !

ଓଠେ ଜଳେ ନିଆଁ ତା ଚୁମ୍ବନେ
ପୁଲକିତ ତନୁ ତାର ବାସେ

ଆଲୋକିତ ହିଆ ତା ମିଳନେ,
ନରବାଣୀ କୋମଳ ତା ଭାଷେ ।
ଚାଲିଲେ ସେ ଫୁଲ ଫୁଟେ ତଳେ
ଘନୀଭୂତ ମଳୟ ତା' କରେ ।

କାଟି କାଟି ସପତ ଜଳଧି
ଡେଇଁ ଡେଇଁ ଦେଶ, ନଈ, ନାଳ,
ଆସିଲି ମୁଁ ଖୋଜି ଯେଉଁ ନିଧି
ପାଇଛି ମୁଁ; ତୁଳା କାହିଁ ତାର !
ଇନ୍ଦ୍ରଧନୁ ପରି ସେ ସୁନ୍ଦର
ମେଘ ପରି ସର୍ବଶୁଭଂକର ।

ଏଇ ଦେଖ ଆସେ ଉପବନେ,
ଦେଖ ତାର ମୃଦୁ ମଧୁ-ଗତି,
ସୁନାମେଘ ପ୍ରଦୋଷ ଗଗନେ
ଭାସି ଅବା ଯାଏ ପ୍ରାଚୀପ୍ରତି ।
ତା ତନୁର ସୁନାକାଠି ଲାଗି
ହୀନ ମାଟି ହୁଅଇ ଶୋଭାଙ୍ଗୀ ।

ଆସ ସଖି, ଜପ ହୃଦୟର,
ନୟନର ପରମ ଦର୍ଶନ,
ସ୍ୱାଦୁ, ଶୁଭ, ସୁରଭି,ସୁନ୍ଦର
ଆନନ୍ଦର ଚିର-ପ୍ରସ୍ରବଣ ।
ବାବନ୍ଦୂକ କରୁ ତୁହି ମୋତେ
ତୋରି କଥା କହୁଛି ଜଗତେ ।

କହୁଅଛି ଡାକି ଏହି କଥା,
ମୁଁ ଯେ ଅତି ଭାଗ୍ୟବାନ୍ ଭବେ ।
କଲେ କିଏ କରୁଥାନ୍ତୁ ଥଟ୍ଟା
ମୁହିଁ ଜାଣେ ମୋର ଗଉରବେ ।

ଧରଣୀର ସାର ଯେ ସୁନ୍ଦରୀ
ସେ ଯେ ମୋର ପ୍ରାଣ ସହଚରୀ,
ସେ ଯେ ମୋର ସର୍ବ ଶୁଭଂକରୀ
ମୋ ସାଗରେ ନବ ସୁନାତରୀ ।

## [ ଏଗାର ]

ଭୁଜେ ଭୁଜ ଭିଡ଼ାଭିଡ଼ି, ହୃଦେ ହୃଦ ଧରି
ଚରଣେ ଚରଣ ଥାପି ନିବିଡ଼ ସୋହାଗେ,
  ଚୁମ୍ବନ୍ତି ସେ ପରସ୍ପରେ ଜଗତ ବିସ୍ମରି,
  ଛାଡ଼ି ପୁଣି ଚୁମ୍ବଦେନ୍ତି ଗାଢ଼ ଅନୁରାଗେ ।
    ଇନ୍ଦ୍ରିୟେ ଇନ୍ଦ୍ରିୟେ ହୁଏ ପ୍ରାଣ ବିନିମୟ
    ମୁଖେ ନ ଆସଇ ଭାଷା, ଭରା ଯେ ହୃଦୟ !

ନ ଦେଖିବେ, ନ ପାଇବେ ଯେହ୍ନେ ଆଉ ଆନେ
ସେହି କ୍ଷଣ ପରେ, ନବ ଯୁବକ ଯୁବତୀ
  ତେଣୁ ଚାହୁଁଥାନ୍ତି ପ୍ରିୟେ ଏକ ପୋଷେ ପାନେ
  କରିବାକୁ ଚିର ସେହି କ୍ଷଣ ମଧୁରତି ।
    ସୁଖ ସଙ୍ଗେ ଗୁନ୍ଥା ଚିର ହଜିବାର ଭୟ
    ତେଣୁ ତାଙ୍କ ଚିତ୍ତ ଥିଲା ଆଶଙ୍କା-ଅଥୟ ।

ମନ୍ଦିର-ଗମନ ଛଳେ ସାଧବନନ୍ଦିନୀ
ଦ୍ୱାର ଖୋଲି ଯାଏ ଚାଲି ଗୃହ ଉପବନେ
  କେବେ ବା ଅନ୍ଧାର ରାତି, କେବେ ବା ଚାନ୍ଦିନୀ,
  ସମୟର ଜ୍ଞାନ କାହିଁ ପ୍ରଣୟିତ ମନେ ?
    ଘାନେ କାଳେ ପଦେ ଦଳି ଚାହେଁ ସେ ମିଳନ
    ବନ୍ଧି ନଇ ମାନେ କାହିଁ ତଟର ଶାସନ ?

ପ୍ରଥମେ ଯେ ଦିନ ସାଧୁସୁତା ଦେଖେ ଦୂରୁ
ପ୍ରାଚୀରର ଆରପଟେ ବାନ୍ଧବ ସଙ୍ଗତେ
  ବିଦେଶୀ ସାଧବ ଯୁବା,– ତା' କାନ୍ତ କପାଳୁ
  ସ୍ୱେଦବାରି ବହିଗଲା ଭ୍ରୂଲତାର ଅନ୍ତେ;
    'ଏଇ ତ ସେ'– କହି କହି ଆପଣାକୁ ଆପେ
    ସୁଖଭୟେ, ଆଶଙ୍କାରେ ବକ୍ଷେ କର ଥାପେ ।

ତା'ପର ସଂଧ୍ୟାରେ ହେଲା ପ୍ରଥମ ମିଳନ
ଉପବନ ଏକ କୋଣେ ! ସାଧବକୁମାରୀ
  ଠିଆଥିଲା ପଛ କରି ସଲଜ୍ଜ ଲପନ
  ବୃକ୍ଷ ଡାଳେ ଧରି, ଅତି ଶଂକିତେ ବିଚାରୀ

କେଜାଣି ବା କି ହୋଇବ !—ଆନନ୍ଦର ପୂର୍ବ
କରିଥାଏ ଜନେ ନାନା ଶଂକାରେ ଅଥର୍ବ ।

ତାକୁ ସେ ଶଂକାରୁ କରି ଉଦ୍ଧାର; ଅଭୟ
ଦେଲା ସେ ସୁନ୍ଦର ଯୁବା, ପାଶେ ଆସି ତାର
ସ୍ନେହେ ଧରି ପ୍ରିୟାକର ପ୍ରେମ-କଂପ-ମୟ,
ନିକଟ ଆସନେ ଏକ ବସାଇ, ଗଳାର
ମଣିମୟ ହାର କାଢ଼ି ଧଇଲା ଦି'କରେ
ଧୀରେ ଧୀରେ ପିଂଧାଇଲା ବରାଙ୍ଗୀର ଗଳେ,

ସରମରେ ସୁକୁମାରୀ ନ ଟେକେ ବଦନ,
ପାଶେ ଘୁଁଚି ତେଣୁ ଯୁବା ଟେକେ ମୁଖ ତାର,
ଦ୍ୱିତୀୟା ଚନ୍ଦ୍ରମା ସମ ହସି, ତା ଲପନ
ତରୁଣୀ ଛଟକେ ଘେନିଯାଏ ଅନ୍ୟ ଆଡ଼;
ଦୁଇ ହାତେ ବନ୍ଦୀକରି ସାହସୀ ତରୁଣ,
ଥାପିଲେ ସେ ମୁଖ ବକ୍ଷେ, ଲଜ୍ଜାରେ ଅରୁଣ ।

ସେ ହେଲା ପ୍ରଥମ ଦେଖା; ପ୍ରତି ରଜନୀରେ
ତା ପରେ ମିଶିଲେ ବେନି ପ୍ରାଣୀ ବାରେ ବାରେ
ଅତ୍ୟନ୍ତ ଗୋପନେ ଗୁପ୍ତ ସଂକେତ-ସ୍ଥଳୀରେ ।
ଦିନ ସାରା ଚାହିଁଥାନ୍ତି ମିଳନର କାଳେ;
ବୈଶାଖେ ଧରଣୀ ଯଥା ଅପେକ୍ଷେ ସଂଧ୍ୟାରେ
ବିପନ୍ନ ନାବିକ ଲୋଡ଼େ ଯେସନ ବେଳାରେ ।

ଦେଖା ହେବାବେଳୁଁ ବିଦାୟର ବେଳ ଯାଏ
ବେନି ମଧ୍ୟେ ନାହିଁ ଥାଏ ତିଳ ବ୍ୟବଧାନ,
ଡେଣା ଛନ୍ଦାଛନ୍ଦି ବେନି ପକ୍ଷୀ ଥିଲା ପ୍ରାୟେ
ରହି, କରୁଥାନ୍ତି ପ୍ରୀତି ଦାନ ପ୍ରତିଦାନ ।
ବେନିଏ ଚାହାନ୍ତି ମିଶି ଏକ ହେବେ ପରା
ଚୁମ୍ବନ, ଆଶ୍ଳେଷ ତା'ର ଚେଷ୍ଟା ପରଂପରା ।

କ୍ରମେ ପଦେଅଧେ କଥା ତୁଣ୍ଡରୁ ବାହାର
'ଆସ' 'ବସ' 'ଚାଲିଯିବ' ? 'ଆସିବ ନା କାଲି'?
କ୍ରମେ ବାଣୀ କରୁଁ ତାଙ୍କ ପ୍ରଭାବ ପ୍ରସାର
ମୂକତାରୁ ହେଲା କ୍ରମେ କଥା, ଥଟ୍ଟା, ଗାଳି ।

ପ୍ରଗଲଭ ଓ ଚିରକାଳ ରମଣୀ-ରସନା,
ତରୁଣକୁ ଖନା କରେ ତା ବଚ-ରଚନା ।

ବିଦେଶେ କି ଭୋଜନର ସଉଖ୍ୟ-ସମ୍ଭବ ?
ଭାବି, ସୁଗୃହିଣୀ ପରି ଉତ୍ତମ ମିଷ୍ଟାନ୍ନ,
ତରୁଣୀ ଲୁଚାଇ ଆଣି ଖୁଆଏ ସାଧବ-
ପୁଅକୁ, ସୋହାଗେ ପୁଣି ସୁବାସିତ ପାନ
ଗୁଞ୍ଜିଦିଏ ପ୍ରିୟ ଓଠେ ଦୁଇଖଣ୍ଡ କରି,
ଓଠେ ଓଠେ ନିଅନ୍ତି ତା ହୋଇ ଛଡ଼ାଛଡ଼ି ।

କ୍ଲାନ୍ତି ଛଳକରି ସୁକୁମାରୀ ପଡ଼େ ଢଳି
ବେଳେବେଳେ ଯୁବା କୋଳେ ମୃତ ପକ୍ଷୀସମ,
ଦେଖେ ଯୁବା ପ୍ରିୟା ଗଣ୍ଡ ଜୋଛନାରେ ଝଳି,
ବକ୍ଷେ ଛାୟା-ଆଲୋକର କ୍ରୀଡ଼ା ମନୋରମ ।
ପ୍ରାଣର ପରମ ପ୍ରେୟ ସେ ନବ ରୂପସୀ-
ଗଣ୍ଡେ ଚାହୁଁ ଚାହୁଁ ଡେରି ହୋଇଯାଏ ନିଶି ।

ଏମନ୍ତେ ତରୁଣ-ପ୍ରୀତି ଉଚ୍ଛନ୍ନ, ଉଦ୍‌ବେଳି,
ଚାଲିଲା ଗୋପନେ କିଛିକାଳ ବାଧାହୀନ,
ସ୍ୱେଚ୍ଛାଚାରୀ ମୃଗସମ, ପ୍ରଣୟୀଯୁଗଳ
ଲଘୁପଦ କ୍ଷେପି କାଟିନେଲେ କିଛି ଦିନ ।
ଲଘୁ କରିବାରେ ଗୁରୁଭାର ଜୀବନର,
ନିଜରେ ଦେବାଠୁ କିବା ଅଛି ଶ୍ରେଷ୍ଠତର ?

ଜୀବ ହୁଏ ଶିବ, ଦେଲେ ନିଜେ ବହୁ ପାଇଁ
ପ୍ରେମିକ ହୁଅନ୍ତି, ଦେଲେ ଦୁଇ ପରସ୍ପରେ,
ବହୁ-ହିତ-ସୁଖ ମହାଜନେ ସିନା ପାଇ,
ପ୍ରୀତି ଦେଇ ସେହି ସୁଖ ଭୁଞ୍ଜନ୍ତି ଅପରେ ।
ପ୍ରୀତି, ପୂଜା ଶୁଭକର୍ମ ଏକ ଉପାଦାନ
ସ୍ଥାନଭେଦେ ଦିଶେ ଥିବାପରି ବ୍ୟବଧାନ ।

ଇଚ୍ଛନ୍ତି ଯୁବତୀ ଯୁବା ଦେବେ ଆଉ ନେବେ
ଦେହ,ହୃଦ, ପ୍ରାଣ, ଅଶ୍ରୁ, ଅନ୍ତର, ବାହାର;
ସାଧବଙ୍କ ସୁତ ସୁତା ମିଳିଯାନ୍ତି ଯେବେ
ବହୁ ଅପେକ୍ଷାରେ, ତାଙ୍କ ପ୍ରାଣର ଜୁଆର

ମିଶିବାକୁ ପରସ୍ପରେ ଧାବଇ ଉତ୍‌କୂଳ,
ଚୁମ୍ବକ, ଅୟସେ ଯଥା କରଇ ଆକୁଳ ।

ନବୀନ ମିଳନ ସୁଖେ ମଗ୍ନ ବେନି ଜନ,
ଅନଭିଜ୍ଞ ଦୁହେଁ, ଭାବୁଛନ୍ତି ସେହି ଶେଷ,
ଦିନେହେଲେ ନ କରନ୍ତି ମନେ ବିଚାରଣ
ଯାପରେ ଭବିଷ୍ୟେ ଅଛି ସୁଖ ଅବା କ୍ଲେଶ ।
ଥିବ କି ଏ ସ୍ନେହ ଚିର ?—ବାଳା ନ ପଚାରେ;
ଆଶଙ୍କାର ଚିହ୍ନ ନାହିଁ ତରୁଣ ଆତ୍ମାରେ ।

ପରସ୍ପରେ ଭୋଗି ଦୁହେଁ ଥାଆନ୍ତି ବିଭୋର;
ଦିନେକ ମାଳୁଣୀ ଦେଲା ଚମକ ସଂବାଦ,
ଜଗୁଥିବା ଛକି ଛକି ରାଜ-ଗୁପ୍ତଚର
ଜାଣି ଏଥି ଯୁବକର ଗମନ ଅବାଧ ।
ସେଦିନ ମିଳନବେଳେ ଯୁବତୀ ପ୍ରସ୍ତାବେ
''ଚାଲ ଘେନି ମତେ ଲୁଚାଇଣ ତବ ନାବେ ।''

ଦିନେ ଦୁହେଁ ଲୁଚି ହେଲେ ଦାଣ୍ଡକୁ ବାହାର,
କୃଷ୍ଣ ନିଶୀଥରେ, କରି ଆଗରୁ ଯୋଗାଡ଼
ପାଦେ କଲା ବିଶ୍ୱସ୍ତା ଯେ ମାଳୁଣୀ ଜୁହାର;
ଦୁର୍ଗା ସ୍ମରି କଲେ ଦୁହେଁ ଶୁଭେ ପାଦ-ଚାର ।
କିଛି ଦୂର ଯାଇଛନ୍ତି, ଶୁଭିଲା ପଶ୍ଚାତୁଁ
ଆସିବାର ତାଂକଆଡ଼େ ଦ୍ରୁତ ଘୋଡ଼ାଚାପୁ ।

## [ ବାର ]

''ଧର୍ ଧର୍, ମାର୍ ମାର୍
ବାଁଧ,—ନାହିଁ କର ଖୁଣ,
ଆଜ୍ଞା ଅଛି ଟୋକୀଟାକୁ
ନାହିଁ କର ଟାଣଟୁଣ ।
ବିଦେଶୀର ହାତେ ଏ ଯେ,
ଲମ୍ବା, ଲଘଂ ତଲୁଆର,
ଠେଙ୍ଗା ଖାଲି ଆମ ହାତେ,
ଭୁଲ୍‌କଲା ସରଦାର୍ ।''

ସରଦାର କହେ ହାକି
''ମାଲ ତମେ ଶହେ ପରା,
ତଲୁଆର କି କରିବ ?—,
ଅଟକାରେ ଘୋଡ଼ା ଗଲା !
ଅଶ୍ୱାର୍ ଯିଏ ଅଛ,
ତଲୁଆର୍ ଖୋଲିନିଅ
ଘୋଡ଼ା ଅଟକାଇ ଆଗେ
ପାଇକଙ୍କୁ କାମ ଦିଅ ।''
ଖସାଖସ୍ ଖସାଖସ୍
ଘୋଡ଼ା ଛୁଟେ ବାଲି ପରେ
ଗରଜେ ଦରିଆ ଆଗେ,
ବୋଇତ ନାଚଇ ଜଳେ ।
ସାଧବର ସୁକୁମାରୀ
କନ୍ୟା ଘେନି କଳିଙ୍ଗର—
ସାଧବତନୟ ଛୁଟେ,
ଦୁହେଁ ଝାଳେ ସରସର ।
ତରୁଣ କହଇ ମୁଖ—
ଲେଉଟାଇ 'ଭୟ ନାହିଁ',
ତରୁଣୀ କହଇ ମୁଖ-
ଟୋଳି , 'ଭୟ କାହିଁପାଇଁ ?'
ତରୁଣ କହଇ ''ଆମେ
ହେଲେ ଆସି ବୋଇତରେ'',
ତରୁଣୀ କହଇ''ରାଜା,
ପାଇକ ଯେ ଆସି ଲଢ଼େ !''
କହୁଁ କହୁଁ ଦେଲେ ଛକି
ରାଜା ପାଁଚ ଅଶ୍ୱାର୍
''ନାରୀ ଛାଡ଼ି ଚାଲିଯାଅ''
ହାଁକେ ଉଚ୍ଚେ ସରଦାର ।
''ପ୍ରାଣ ଥିଲାଯାଏ ନୁହେଁ''
ତରୁଣ ପ୍ରଣୟୀ କହେ,
ଘୋଡ଼ା ତାର ପୁଡ଼୍କାରି
ଥଯେ ଭୂମେ ନାହିଁ ରହେ ।

ସରଦାର କହେ ଡାକି
"ପାଇକେ ଟୋକାକି ଦେଖ,
ଟୋକା ତ ନ ଶୁଣେ କଥା
ହାଣକୁ ଦେଖାଏ ବେକ ।
ତାହିଁ ହେଉ- ଲାଗିଯାଅ ।"
ଶୁଣୁ ଶୁଣୁ ପାଇକାଳି
ଟାଣି ତଳେ କିଶୋରୀକି
ହେଲେ ଠିଆ ବାନ୍ଧି ଧାଡ଼ି ।
କ୍ଷଣିକ ଛନକା ଘୁଞ୍ଚୁ
ନୀବୀ ତଳୁ କାଢ଼ି ଛୁରା
ଗରଜେ ସାଧବଝିଅ
"ଛୁଅଁ ତ ପାମରଗୁରା !"
ଘୋଡ଼ା ଲେଉଟାଇ ଏଣେ
ଝମକାଇ ତଲବାର
ସାଧବ ତନୟ ଧାଏଁ
ଯିବ, ଯହିଁ ପ୍ରିୟା ତାର ।
ତଲୁଆରେ ତଲୁଆରେ
ଲାଗେ ଧକ୍କା ଝଣାଝଣ୍,
ଅନ୍ଧକାରେ ଫୁଟି ଉଠେ
ଶାଣ ଲୌହୁଁ ଅଗ୍ନିକଣ ।
ସାଧୁ ସୁତା ଧାଇଁ ଆସେ,
ଅଟକାନ୍ତି ପାଇକାଳି
ସାଧୁ ସୁତ ଧସିଯାଏ,
ହୁଏ ଖଡ୍ଗେ ମରାମରି ।
ଶେଷରେ ଗଲାଣି ଜଣା
ତଲୁଆର ଚୋଟ ବାଜି
ସାଧୁ ସୁତ ଦେହ, ବାସ
ରକତେ ଗଲାଣି ଭିଜି;
ଦୁଇ ପ୍ରଣୟୀର ଚୋଟେ
ପାଞ୍ଚ ଛଅ ରାଜା-ଲୋକ
ଗଡ଼ିଲେଣି ତେଣେ ତଳେ,
ବନି ବହେ ଭକ୍‌ଭକ୍ ।

ଏକା ଏକା ଶହେ ସାଥେ
କେମନ୍ତେ ଲଢ଼ିବେ ଆଉ,
ଅଶକଟେ ଗଲେ ଢଳି
ଦୁହେଁ ଦୁହିଁ ନାମ କହୁ ।
ଚକିତେ ଛଡ଼ାଇ ଛୁରା
ଟେକି ନେଉ ଘୋଡ଼ାପରେ
କିଶୋରୀ ଚମକି ହେଲା
ଉଭା ପୁଣି ତେଜଭରେ ।
କହଇ କରୁଣ ବାଣୀ,
''ଶୁଣ ବାବା ସରଦାର,
ନିଅ ମୋର ହୀରାନୀଳା,
ବହୁ-ମୂଲ୍ୟ କଣ୍ଠ-ହାର ।
ତାଙ୍କ ପାଖୁ ଛାଡ଼ି ମତେ
ନିଅ ନାହିଁ''—କହି ଧାଏଁ;
''ଆଜ୍ଞା ନାହିଁ'', ''ମୁଣ୍ଡ ଯିବ''
ବୋଲି, ଶତ୍ରୁ ଅଟକାଏ ।
ଅଟକାଇ ଏଥରକ,
ଦେଲେ ବାନ୍ଧି ମୁଖ ହାତ
ଥୋଇ ଘେନି ଗଲେ ଅଶ୍ୱେ,
ଲୁହେ ଓଦା ସାରା ବାଟ ।
କି କି ହେଲା ବୋଲି ଏଣେ
ବୋଇତରୁ ଆସୁଁ ଜନେ
ରାଜା-ଅଶ୍ୱବାର ସବୁ
ପଳାଇଲେ ଏଣେତେଣେ ।
ଦେଖିଲେ ସେମାନେ ସାଧୁ-
ସୁତ ପଡ଼ି ଅନ୍ଧକାରେ
ଅଧାଚେତା, ଡାକୁଅଛି
''ଅଛି ତ ସେ ମୋ ପାଶରେ ?''

[ ତେର ]

ପ୍ରଭଂଜନ ପରେ ଶାନ୍ତ ହେଲାପରି ଧରା,
ଜଣାପଡ଼େ ସେ ନଗର । ପାଇକ ପହରା

ଚାରିଆଡ଼େ, ଚୁପି ଚୁପି ହୋନ୍ତି କୁହାକୁହି
ନଗ୍ରଜନେ ଲୁଚ, ଘର ପଛପଟେ ରହି ।

ସାଧବ ଖାଇଛି ହଣା, ବିଦେଶୀ ଯୁବାର
ଲୋକବାକ ବନ୍ଦୀ, ଦୁଇ ବୋଇତ ତାହାର
ହୋଇଅଛି ଦଗ୍ଧ, ସାଧୁସୁତ, ସାଧୁସୁତା
କାହିଁ ଛନ୍ତି, କାହିଁ ଗଲେ, ମିଳେ ନାହିଁ ପତ୍ତା ।

ଏହିପରି ନାନା କଥା ଉଠେ ଲୋକମୁଖେ
କେ କହଇ ଥଟ୍ଟାକରି, କହେ କେହୁ ଦୁଃଖେ ।

ମାଳୁଣୀଟା କାନ୍ଦେ ଉଚ୍ଚେ ପୁଷ୍କରିଣୀ ଘାଟେ
ଶୁଣି ଠିଆହେଉଛନ୍ତି ଯିବା ଲୋକ ବାଟେ ।
''କାଣୀ କୁଜୀ ଘର କରି ରହନ୍ତି ସୁଖରେ
ସୁନାକାଠି ମୋର ମଲା ଏତେ କଲବଲେ !

କାହାପାଇଁ ଫୁଲ ଆଉ ଗୁନ୍ଥିବି ଯତନେ,
କିଏ ପଣତରେ ଗୁନ୍ଥିଦେବ ଖୁସି ମନେ
ପିଠାପଣା, ଧନଦ୍ରବ୍ୟ, ଯାହା ଯେଉଁ ଦିନ;
କା' ହାତକୁ ଚାହିଁବେ ଗୋ ଆଉ ଦୀନ ହୀନ !

ପିଲାକାଳୁ କୋଳକରି, କରିଲି ମନିଷ
ବିଧାତା ତୁ ଅମୃତକୁ କରିଦେଲୁ ବିଷ ।
ଜପି ଜପି ଯୁଗ-ଯୁଗ ଯାହାକୁ ସଂଖାଳି
ପାଇଥିଲା, କ୍ଷଣକେ ସେ ହାତୁ ଗଲା ଖାରି ।

ଦୂରୁଁ ଯେ ଦରିଆ କାଟି ଆସିଥିଲା ଧାଇଁ
ଦଣ୍ଡେ ହେଲେ ମୋ ଧନକୁ ଭୋଗକଲା ନାଇଁ ।
କାହିଁକି ଦୁହିଁକି ବିଧି କରାଇଲୁ ଦେଖା,
ଏକ ଆନ ପାଇଁ କରି ରହିଲେ ଅପେକ୍ଷା,

ମିଶିଲାବେଳକୁ ତାକୁ ଫିଙ୍ଗିଲୁ ଛିଣ୍ଡାଇ,
ତୋ ବେଭାର ବିଧାତା ରେ ବୁଝାପଡ଼େ ନାଇଁ ।
ଏକ ଆନ ପାଇଁ ଯେହ୍ନେ ହୋଇଥିଲେ ଗଢ଼ା,
ମିଶିଲାବେଳକୁ ବିଧି କଲୁ ଛଡ଼ା ଛଡ଼ା ।

କାହିଁ ଗଲେ କେ କହିବ,ଜଣାପଡୁ ନାଇଁ;
କେ କହେ ବନ୍ଦୀ ସେ ଦୁହେଁ ଦୂର ଗଡ଼େ ଯାଇ ।

କେ କହେ ବି ହଣାହେବେ,—ଆହା ହାତ କା'ର,
ତାଙ୍କ ଗଳେ ଚଳାଇବ ପୁଣି ତଲବାର !

ବନ୍ଦୀ ହୋଇଥିଲେ ସେ ତ ଆହୁରି କଷଣ
ଭୋକେ ଶୋଷେ ପଡ଼ିଥିବ,କାନ୍ଦି ଅନୁକ୍ଷଣ ।
ନିତିଦିନ ଭୋକୀଙ୍କି ଯେ ଅନ୍ନ ଦେଉଥିଲା
ତାକୁ ବିଧି କେଉଁ ପାପେ ରଖିବୁ ଭୋକିଲା !

ପାପୀ ଅତ୍ୟାଚାରୀ ଯେହୁ ବଞ୍ଚି ସୁଖ କରେ,
ଦେବଶିଶୁ ଦୁହେଁ ମୋର ଭୋକ-ଶୋଷେ ମଲେ ।
ବୃଦ୍ଧା କାଳେ ଏୟା ମତେ ଦେଖିବାକୁ ଥିଲା
ଶୁଣିଲାବେଳରେ ଛାତି କିଆଁ ନ ଫାଟିଲା ।''

[ ଚଉଦ ]

ଗହନ ବନ-ଭୂଇଁ, କୁଆଡ଼େ କେହି ନାହିଁ
ରହିଛି ଗଡ଼ ତହିଁ ଅମୁହାଁ,
ହୁଅଁତି କୁହାକୁହି ବନ୍ଦିନୀ ତହିଁ ବାଳା,
ଜଗାଳି, ରାଜାଘର ଛାମୁଆ ।

ଉପରେ ନିରଜନେ ଅନ୍ଧାର ଘରକଣେ
ପଡ଼ିଛି ଅନାହାରେ, ଅବେଶେ,
କହିଛି ରଜାପୁଅ ''ଯେ ଯାଏଁ ନ ମଗିଛି
ସେ ଯାଏଁ ନ ଛାଡ଼ିବ'' କେବେ ସେ ।

ଦିନକେ ଥରେ ଖାଲି ଚେଟୀଏ ଯାଇ ପାଶେ
ମାଗଇ ଅଙ୍ଗୀକାର ସରାଗେ,
ଲୋକରେ ଶୁଣାଶୁଣି ଫେରଇ ସେ ବିଚାରି
ପ୍ରହାର ଖାଇ ନିତି ବିରାଗେ ।

ଜଗିଛି ରାଜାପୁଅ କୋପେ ପ୍ରତାପେ ଜିଣି
ଯିବ ସେ ହାତେ ଧରି ମାଣିକ,
ରୂପର ବିପଣୀରେ ସଦମ୍ଭ ଠାଣିରେ ସେ
ଦେଖାଇ ହେବ ବଡ଼ ବଣିକ ।

ଦିନେକ ନିଶୀଥରେ ସକଳେ ନିଦଭୋଳ
ଅନ୍ଧାର ଘୋର ସେହି ବିପିନେ,

କାହୁଁ ସେ ବଇରାଗୀ ନୀରବ ନିଶି ଭାଙ୍ଗି
ଗାଇଲା ଗାଥା ଅତି କରୁଣେ ।

"କାହିଁ ରେ ଗଲୁ ପ୍ରିୟା ଦୋସର ପ୍ରାଣ ମୋର
ବଞ୍ଚିଛୁ ମରିଛୁକି ନ ଜାଣି,
ମୁଁ ଅନ୍ଧ, ଅନ୍ଧକାରେ ହଜିଲା ଚିଜ ଖୋଜେ
ଆକୁଳେ କରୁଅଛି ଭ୍ରମଣି ।

ନଗରୁ ନଗରେ ମୁଁ ଖୋଜିଲିଣି ରେ କେତେ
ଖୋଜିଛି ବନ, ବିଲ, ପ୍ରାନ୍ତର,
ଚାଲି ତଳିପା-ମାଂସ ହେଲାଣି ଆସି ଶେଷ,
ହେଲିଣି ଅନାହାରେ ଦୁର୍ବଳ ।

କ୍ଷଣକ ଲାଗି ହେଲେ ଦେଖାଇ ଦିଅନ୍ତା କେ
ସେ ଦୁଇ ଆଖି ସୁଧା-ବହନ୍ତୀ
ସକଳ ଦୁଃଖ ମୋର ଉଭେଇଯାଆନ୍ତା ରେ,
ଚାହିଁ ଚାହିଁ ମୁଁ ସୁଖେ ମରନ୍ତି ।

ସାଧବପୁଅ ମୁହିଁ ତା ଲାଗି ଝୁରି ହୋଇ
କାଙ୍ଗାଳ ପରି ବୁଲେ ମହୀରେ,
ମରିବା ଆଗୁଁ ଖାଲି ଏତିକି ଜାଣନ୍ତା ସେ
ତାକୁ ମୁଁ ଭୁଲି ନାହିଁ ନାହିଁ ରେ ।

ମୋ ଛାର ପାଇଁ ସିନା କୁସୁମ-ସୁକୁମାରୀ
ପାଇଲା ଏତେ ଏତେ କଷଣ,
ସେ ଯେଣୁ ପାଶେ ନାହିଁ, ମଶାଣି ମତେ ମହୀ,
ବଁଚିବା ମତେ ଅତି ଭୀଷଣ ।

ରାଜାର କଟୁଆଳେ ଛଡ଼ାଇ ନେଲେ କାହିଁ
ଏ ବାହୁପାଶୁ କାଢ଼ି ତାହାରେ,
କି ଟାଣେ ଧରିଥିଲା ଶେଷ ନିମିଷଯାଏଁ
ମୋ ଗଳା, କୋମଳ ତା' ବାହାରେ ।

'ବିଧାତା ଏହା କଲୁ'— କାତରେ କହୁ ପ୍ରିୟା
କାହିଁ ଯେ ଘେନିଗଲେ ଚଣ୍ଡାଳେ,
କେହି ନ ପାରେ କହି ଖୋଜିଲି ସାରା ମହୀ
ଜୀବନେ ଅଛି କିନା ବିଚାରେ ।

ବୋଇତ ମୋର ନେଲା ରାଜାର ପୁଅ ଭାଙ୍ଗି,
ଶଶୁରେ ମାରି, ନେଲା ସମ୍ପତ୍ତି,
ପଳାଇ ପ୍ରାଣ ରଖି କେବଳ ମୁହିଁ ମୂଢ଼
ଅନୁଭବୁଛି ଗାଢ଼େ ବିପତ୍ତି ।

କୁଆଡ଼େ ଯିବି ଆଉ କାହିଁବା ଖୋଜିବି ମୁଁ
ନିଶୀଥେ ଗହନ ଏ କାନନେ''—;
କହୁଁ ଉପରେ ଶୁଭେ ଖୋଲିବା ବାତାୟନ,
ରମଣୀସ୍ୱର କ୍ଷୀଣ କମ୍ପନେ ।

ଚମକି ଚାହିଁଲା ସେ ଚକିତେ ଉପରକୁ,
ଶୁଭିଲା ଉପରେ କେ ଭାଷିଲା,
''ଏଇ ଯେ ମୁହିଁ ପ୍ରିୟ କୋଳକୁ ପୁଣି ନିଅ''
କହି ସେ ତନ୍ୱୀ ତଳେ ଖସିଲା ।

ଭାଷ ନ ହେଉ ଶେଷ ସରିଲା ତା ନିଶ୍ୱାସ,
କରକା ପଡ଼ି ଯେହ୍ନେ ଗଳଇ,
ଭୂତଳେ ହୋଇ ଛେଚି ପଡ଼ିଲା ସେ ମୂରୁଛି;
ସାଧବପୁଅ ଧାଇଁ କୋଳଇ ।

କୋଳେ ସେ ଚାକି ଚୁମ୍ବ ଦିଅନ୍ତେ, ନବ ଶବ
ବାହୁରେ ଧରେ ତାକୁ ଆଶ୍ଳେଷେ,
''ମତେ ଗୋ ସାଥେ ନିଅ''— କହି ସାଧବପୁଅ
ପଡ଼ିଲା ଢଳି ମଧୁ ଆବେଶେ ।

ଶବଦ ଶୁଣି ନିଦେ ଚକିତେ ଉଠି ସର୍ବେ
ଆସିଲେ ଘେନି ହାତେ ମଶାଲ,
ରାଜାର ପୁଅ ମିଳି ଦେଖନ୍ତି କୋଳାକୋଳି
ଦୁଇଟି ଶବ ପ୍ରୀତି-ରସାଳ ।

ପାଷାଣ ପରି ହୋଇ ରହିଲେ ଚାହିଁ ମହୀ
ବଚନ-ହୀନ କଲା ସେ ଛବି,
ଜୀବନ ବାଧା ଡେଇଁ ମିଳନ-ସିନ୍ଧୁ ପାଶେ
ମରଣ-ପଥେ ପ୍ରୀତି-ଜାହ୍ନବୀ ।

———

# କମଳାୟନ

## ପ୍ରଥମ ସର୍ଗ : ଢଭାର ଓ ଗୋପବନ୍ଧୁ

ସହସ୍ର ନିରନ୍ନ କାନେ ହେଲା ପ୍ରଚାରିତ
ସଂବାଦ,--ତଣ୍ଡୁଳ ହୁଏ ଢଭାରେ ବଣ୍ଟିତ ।
ଦୂରସ୍ଥାନୁଁ ପାଇ ଗନ୍ଧ ଘୃତ ଶର୍କରାର
କ୍ଷିପ୍ରେ ଚଳେ ଯେହ୍ନେ କୃଷ୍ଣ ପିପୀଲିକାଧାର,
ତଣ୍ଡୁଳ-ବଣ୍ଟନ ଶୁଣି ଦୁର୍ଭିକ୍ଷିତ ଦଳ
ଧାଆଁନ୍ତି ସେପରି, ଡାକିହାକି ପରସ୍ପର ।
ଦାଣ୍ଡେ ବସିଥିଲେ କେହୁ, ଯାଉଥିଲେ କେହି
ଆଣିବେ କରଜ ଧାନ ଜମି ବଂଧା ଦେଇ
ଦୂର ଗ୍ରାମ-ଧନୀଠାରୁ; ଶୋଇଥିଲେ କେବା
ଦୁର୍ବଳ ନିରନ୍ନ-ନିଦ୍ରା; ଜଠରାଗ୍ନି ସେବା
କରୁଥିଲେ କେବା ଘରେ ବନ୍ୟ ଶାଗ, ମୂଳେ,
ଘୂରୁଥିଲେ କେବା ସେବଯାଏଁ ନଦୀକୂଳେ,
ବିଲେ, ବଣେ, ପ୍ରକୃତିରୁ ସାଉଁଟି ସାଉଁଟି
ମିଳିଯାଏ ଯଦି ଖାଦ୍ୟ ମାତ୍ର ଏକ ମୁଷ୍ଟି ।
ତଣ୍ଡୁଳ-ବଣ୍ଟନ କଥା ଢଭାର ଗ୍ରାମରେ
ଲାଗିଲା ସହସ୍ର ସେହି ବୁଭୁକ୍ଷୁ ପ୍ରାଣରେ,
ଲାଗେ ଯେହ୍ନେ ବଂଦୀକର୍ଣ୍ଣେ ମୁକ୍ତିର ଖବର,
ଅନ୍ଧକାର ପଥେ ଆବିର୍ଭାବ ଆଲୋକର,
ଲାଗେ ଯେହ୍ନେ ଶଂକାକୁଳ ପଥେ ପାନ୍ଥ ଜନେ,
ଲାଗେ ବା ଦକ୍ଷିଣା ବାୟୁ ବସଂତ ଆଗମେ
ଯେହ୍ନେ ଶୀତ-ଜଡ଼ୀଭୂତ ଦୀନ ଜନତାରେ ;—
ଚାଲିଲେ ନିରନ୍ନ ଦଳ ଅବିଚ୍ଛିନ୍ନ ଧାରେ ।

ଢଭାରରେ ଦୁର୍ଭିକ୍ଷପୀଡ଼ିତ ଜନତା

ନିର୍ବଳ, ନିର୍ବସ୍ତ୍ର, ନିଃସ୍ୱ, ନିର୍ଲଜ୍ଜ, ନିଗନ,
ନିରାଶ, ନିସ୍ତେଜ, ନିରବଲମ୍ବନ, ନିର୍ଗୁଣ
ଦୁର୍ଭିକ୍ଷଦଳିତ ସେହି ଓଡ଼ିଆ ଜନତା

ମାନବିକ ପତନର ମୂର୍ତ୍ତିମନ୍ତ କଥା ।
ସରୁ ସରୁ କର, ଜାନୁ, ସ୍ଫୀତ ପଦୋଦର
ରୁକ୍ଷ କେଶ, ପରିସ୍ଫୁଟ ଚକ୍ଷୁର କୋଟର,
ମଳିନ ଗ୍ରନ୍ଥିଳ ବାସ ନିବାରେ ସରମ,
ନେଇ ଅବା ସଦ୍ୟ ଫେରାଇଛି ତାଙ୍କୁ ଯମ ।
ଚାଲିଛନ୍ତି ଶିଶୁଦଳ ନିତମ୍ବ-ବିହୀନ,
ପିତାମାତା କର ଧରି । ମାତା, ପୟୋହୀନ,
ବିଶୁଷ୍କ ବକ୍ଷୋଜେ ଗୁଞ୍ଜି ମୁଖ ଶାବକର
ଚାଲିଛନ୍ତି ଧୀରେ ଧୀରେ । ଜ୍ୱାଳା ଜଠରର
ନାହିଁ ସହିପାରି ଆଉ, କେହି ପଥପାଶେ
ଦେଖି କିଛି ଭକ୍ଷଣୀୟ ଧାଏଁ ତାହା ଆଶେ ।
ଆସୁଛନ୍ତି ପୁଣି ପଥେ କିଶୋର କିଶୋରୀ
ଯାହାଙ୍କର ଅଙ୍ଗବିଭା ନେଇଅଛି କୋରି
ଦୀର୍ଘ କ୍ରୂର ନିରନ୍ନତା; ଶରୀର ଶିରାଳ
ଖେତ-ଶୂନ୍ୟ କ୍ଷେତ୍ର ପରି ଖାଲି ହିଡ଼ମାଳ ।
ଧୂଳିଗୋଡ଼େ ଏ ବୀଭତ୍ସ ବୁଭୁକ୍ଷୁ ଜନତା
ଧାଇଁଛି ଡଭାର ଗ୍ରାମେ, ମୁଖେ ନାହିଁ କଥା,
ତାଳମାଳ ତଳେ ତଳେ, ବିଲ ହିଡ଼େ ହିଡ଼େ
ନାନା ବଙ୍କାଟଙ୍କା ପଥେ ଚାଲିଛନ୍ତି ଭିଡ଼େ ।
ଦାରୁଣ ଆଶଙ୍କା,—ହୋଇଗଲା ପରା ଡେରି,
ଆସିବାକୁ ହେବ ଅବା ରିକ୍ତ ହସ୍ତେ ଫେରି !

ସୁଛାୟ ତୋଟାରେ ତେଣେ ସ୍ୱେଚ୍ଛାସେବୀଦଳ
ତଣ୍ଡୁଳ ପ୍ରଦାନେ ତୋଷି ଭିକ୍ଷୁ ଦଳ ଦଳ,
ଲେଉଟାନ୍ତି ତାଙ୍କୁ ଗୃହେ । ଲେଉଟିବେ କାହୁଁ;
କଞ୍ଚା ଖାଇ ସେ ତଣ୍ଡୁଳ, ପାଇବାକୁ ଆଉ
ଆଗନ୍ତୁକ ଦଳେ ପୁଣି ମିଶନ୍ତି ସତ୍ରାସେ ।
ପେଟ ତ ପୋଡ଼ଇ, ମନ ହୁଏ ଏକ ଗ୍ରାସେ
ଖାଇବାକୁ ଗଦାୟିତ ସମଗ୍ର ତଣ୍ଡୁଳ,
ବୁଭୁକ୍ଷୁ ମାନିବ କେହ୍ନେ କଥାର ଆଗୁଳ ?
ନ ପାରନ୍ତି ପଶି ଯେହୁ ଭେଦି ଘନ ବ୍ୟୂହ,

ଦାଣ୍ଡେ କାହିଁ-ପଡ଼ିଥିବା ତଣ୍ଡୁଳ ସମୂହ
ଗୋଟି ଗୋଟି ଖୁଣ୍ଟି ଖୁଣ୍ଟି ଖାଆନ୍ତି ନିଖାରି
ପାରାବତ, ପିପୀଲିକା ମୁଖରୁ ନିବାରି ।

କ୍ରମେ ରବାହୂତ ଦଳ ଅଧିକୁଁ ଅଧିକ
ହେଉ, ବଢ଼େ ହଟ୍ଟଗୋଳ । ଭିକ୍ଷୁକ, ଧନିକ
ତିଳ, ସୋରିଷର ପରି ମିଶୁଁ ପରସ୍ପରେ,
ବାଛିବାର ଚିନ୍ତା ଘାରେ ସ୍ୱେଚ୍ଛାସେବୀଦଳେ ।
ଜଣେ ଜଣେ ହୋଇ ନାନା ସ୍ଥାନେ ଆବିର୍ଭାବ
ଭିନ୍ନ ଭିନ୍ନ ସ୍ୱେଚ୍ଛାସେବୀଙ୍କର ହୃଦ-ଭାବ
ଦ୍ରବୀଭୂତ କରି, ନେବା ଶସ୍ୟ ବାରମ୍ବାର—
କ୍ରମେ କ୍ରମେ ଜାଣିଲେଣି ସ୍ୱେଚ୍ଛାସେବୀବାର ।
ଦଳପତି ଆଦେଶରେ ବଢ଼ାଇ ମଣ୍ଡଳି
ଦୃଢ଼ କରି ବାକ୍ୟ ଆଉ ହସ୍ତର ଅର୍ଗଳି,
ଜନତାକୁ ରଖି ଦୂରେ, ଦଳ ପରେ ଦଳ
ଆଣି ବିତରନ୍ତି, କର୍ମ ହେବାକୁ ସରଳ ।

ଏକାଳେ କେ ଏକ କର୍ମୀ କେଉଁ ଅଭାଗ୍ୟରେ
ସର୍ବନେତ୍ର ତଳେ ତିରସ୍କାରେ ଉଚ୍ଚସ୍ୱରେ,—
'ଏ ଚାଉଳ ତାଙ୍କ ପାଇଁ ଯିଏ ଉପବାସୀ,
ତାଙ୍କ ପାଇଁ ନୁହେଁ, ଯିଏ ଥିଲାବାଲା ଚାଷୀ ।
ଦିଶୁନାହିଁ ତିଳେ ତମେ ନ ଖାଇଲା ପରି;
ଦେହ ଅଛି, ନିଜେ ପୋଷିପାର ଖଟି କରି,
ଦୁଇ ଦିନ ହେଲା ଦେଖେଁ ତମେ ବାରମ୍ବାର
ନେଉଛ ଚାଉଳ ଏଠୁ, ଭଲ କାରବାର
ନୁହେ ତ ଏ, ଉଠିଯାଅ ଏଠୁ ଏଇକ୍ଷଣି
ଆସିବନି ଆଉ ଏଥେ, ନିଅ ଯା ନେଲାଣି ।'

ତିରସ୍କୃତ ଗ୍ରାମ୍ୟ ମଲ୍ଲ

ତିରସ୍କୃତ ହୋଇ ସର୍ବଜନ ସମକ୍ଷରେ
ଲୋକଟି ଚାହୁଁଛି ମୂଢ଼ ପରି ସରମରେ;
ଏକାଳେ ଶୁଭିଲା ସମସ୍ୱରେ ଜନତାରୁ,
''ବାବୁ, ବାବୁ, ଦିଅ ତାଙ୍କୁ ଆମରି ଭେଦାରୁ,
ଆଖଡ଼ାର ଗୁରୁ ସେ ଯେ ଏ ଖଣ୍ଡମଣ୍ଡଳେ
ଭାଙ୍ଗିଛି ସଭିଙ୍କ ଅଣ୍ଟା ଚିର ଦୁର୍ଭିକ୍ଷରେ,

କିଏ ଆଉ ଚାନ୍ଦା ଦେଇ ପାଇକର ପାଠ
ଶିଖିବ ତାଙ୍କଠୁଁ ? ଏବେ ଧରିବାରୁ ବାତ
ଅତି ମନ୍ଦ ହୋଇଅଛି ଅବସ୍ଥା ତାଙ୍କର,
ନ ହେଲେ ସେ କାହା ପାଖେ ପାତନ୍ତେ କି କର ?
ତାଙ୍କୁ ଦେଲେ ତମ ଦାନ ହେବ ସାରଥକ
ଭାବନି ତାହାଙ୍କୁ ଆନ ପରି ପ୍ରବଞ୍ଚକ ।''

ଏ କଥା ନସରୁ, ଏକ ଅଲକ୍ଷିତ ସ୍ଥାନୁ
ଡାକେ କେ କୋମଳ ସ୍ୱରେ (ଦୟାର୍ଦ୍ର ପରାଣୁଁ
ବାଣୀ ବହିଆସେ ଯେହ୍ନେ ଶୀତ ବାରିଧାର)
''କମଳ, କମଳ, ବନ୍ଦକର ତିରସ୍କାର,
କ୍ଷମା ମାଗି, ଦିଅ ତାଙ୍କୁ ଯଥେଷ୍ଟ ତଣ୍ଡୁଳ;
କହ ପୁଣି ନ ଆସିବେ କାଲି ଏତେ ଦୂର,
ଆମ ଲୋକ ପହଞ୍ଚାଇ ଦେବ ତାଙ୍କ ଘରେ
ଲେଖି ରଖ ନାମ ତାଙ୍କ ଭିନ୍ନ ପୁସ୍ତକରେ ।''

କିଏ ସେ ସେ ? ନୀରବିତ ବିମୁଗ୍ଧ ଜନତା,
କର୍ଣ୍ଣେ ଶୁଣେ ଶାନ୍ତ ହୋଇ ପ୍ରାଣବନ୍ତ କଥା;
ସହସ୍ର ନୟନେ ପୁଣି, ସୌମ୍ୟ ସେ ବଦନ
ଦେଖେ;—ବିକ୍ଷୋଭିତ ହୃଦେ, ଅପୂର୍ବ କମ୍ପନ ।

ଗୋପବନ୍ଧୁ

ସେ ଯେ ଗୋପବନ୍ଧୁ, ସଖା ଦୀନ ଜନତାର,
ପର ଦୁଃଖ ଲାଗି ହୃଦ, ହୋଇ ଅଶ୍ରୁଧାର
ବହେ ଯା'ର ଅବିରତ । ଦେଖିଲେ ସକଳେ
ଯାଉଅଛି ତିନ୍ତି ଗଣ୍ଡ ଧାର-ଲୋତକରେ,
ଚାହିଁଛନ୍ତି ଏକ ଦୃଷ୍ଟେ ଭିକ୍ଷୁ ତିରସ୍କୃତେ;
ତା ପାଶେ ଯେ ସ୍ୱେଚ୍ଛାସେବୀ, ଚାହିଁଛି ସେ ଉଚ୍ଚେ ।
ସେ ଦୃଶ୍ୟ, ସେ ମର୍ମ-ବାଣୀ, ଅଶ୍ରୁ ସେ କରୁଣ
ବିଚଳିତ କଲା ସର୍ବେ, ବୟସ୍କ, ତରୁଣ ।

କ୍ରମେ କ୍ଷୀଣ ହୋଇଆସେ ଜନତାର ଧାର,
ଫେରିଲେଣି ନିଜ ନିଜ ଗ୍ରାମେ ଯେ ଯାହାର
ଶସ୍ୟ-ଭାଗଧରି ବସ୍ତ୍ରେ । ସଞ୍ଜ ହେଉ କ୍ରମେ
କ୍ଲାନ୍ତ ସ୍ୱେଚ୍ଛାସେବୀଦଳ ଦିବସର ଶ୍ରମେ
ସାଙ୍ଗ କରି ବିତରଣ-କର୍ମ-ସେଦିନର,

ସ୍ଥିର କରି ଖାତା-ପତ୍ର ଦଉ-ତଣ୍ଡୁଳର,
ସକଳେ ନୀରବେ ଗୋପବନ୍ଧୁ ଚାରିପାଶେ
ଠିଆହେଲେ, ଉପଦେଶ, ଆଦେଶର ଆଶେ ।

ଭାଷିଲେ ସେ ଶୋକାକୁଳ, '' ଦେଖୁଛ ତ ପିଲେ,
ତମ ଦେଶ-ଜନନୀର ବାସ୍ତବ ଛବିରେ !
କମଳ, କରିଲ ଯା'କୁ ଭ୍ରମେ ତିରସ୍କାର
ଓଡ଼ିଆ ଜାତିର ତାକୁ ପ୍ରତୀକ ବିଚାର ।
ସେଇମାନେ ଗଢ଼ିଥିଲେ ଉତ୍କଳ ସାମ୍ରାଜ୍ୟ
ଗଙ୍ଗାଠାରୁ ଗୋଦାବରୀ ବିସ୍ତୃତ ଯେ ରାଜ୍ୟ ।
ପାହାଡ଼କୁ ଚୂନା କରି ଗଢ଼ିଲେ ଦେଉଳ,
ସାଗରକୁ ଲଘି ଗଲେ ଦୂର ଉପକୂଳ ।
ସେହି ସେ ଓଡ଼ିଆ ଆଜି ଦୀନ,ବାତଗ୍ରସ୍ତ,
ପେଟଭୋକେ ଘାସ ଖାଏ, ଧାଏଁ ଇତସ୍ତତଃ;
ରାଜ୍ୟ ତାର ଛିନ୍ନଭିନ୍ନ, ଅନ୍ୟ-ଅଧିକୃତ,
ଘୃଣିତ ସେ ପ୍ରକାଶ୍ୟରେ, ହୁଏ ତିରସ୍କୃତ
ଦାରିଦ୍ର୍ୟ, ଅଜ୍ଞତା ପାଇଁ; ବିଦେଶୀ ଶାସନ,
ନିଶ୍ଚିନ୍ତେ ଦେଖୁଛି ଆମ ଜୀବନ, ମରଣ ।
କି ଯାଏ ତାହାର, ଆମେ ମଲେ ବା ଜିଇଁଲେ,
ଏବ ଓଡ଼ିଆର ପୂର୍ବ-ପୁରୁଷେ କି ଥିଲେ,
କାହିଁକି ସେ ଯିବ ଖୋଜି ? ତା ଶାସନ-ରଥ
ଆମର ଖଜଣା-ଚକ୍ରେ ଚାଲେ ଯେ ଯାବତ
ସନ୍ତୁଷ୍ଟ ସେ, ନିଶ୍ଚିନ୍ତ ସେ । ଏ ଘୋର ପତନୁ
କିଏ ସେ ଜାତିରେ ତବ, ଉଠାଇ, କଦନୁ

ଅଧଃପତିତ ଉତ୍କଳ

ଦେବ ତାରେ ପରିତ୍ରାଣ ? ମନୁଷ୍ୟ-ଜୀବନ,
ନୁହେଁ ଖାଲି ପଶୁ ପରି ଆତ୍ମ-ଆୟୋଜନ,
ଦିନ ପରେ ଦିନ ଖାଲି ଖାଦ୍ୟ ଅନ୍ୱେଷଣ,
ଅଥବା ଇନ୍ଦ୍ରିୟ-ସୁଖେ ବଂଶ-ପ୍ରଜନନ ।
ଜାନ୍ତବ-ଇନ୍ଦ୍ରିୟ-ତୃପ୍ତି ଉର୍ଦ୍ଧ୍ୱେ ବିଚରଣ
କରି, କଲେ ମହତ୍ତର ସୁଖାନୁଗମନ,
ଫୁଟଇ ଦେବତ୍ୱ, ନର ମାଟିର ଶରୀରେ,
ସେହିହିଁ ସଭ୍ୟତା ଏହି ମାଟି-ଧରଣୀରେ ।

ସେ ଜାତି ସେତିକି ଉଚ୍ଚ,'ଛନ୍ତି ଯେ ଜାତିରେ
ଯେତେ ବେଶି ଲୋକ, ପଦ ଯାହାଙ୍କ ମାଟିରେ
ଥିଲେ ମଧ, ଉତ୍ତମାଙ୍ଗ ଲାଗେ ବ୍ୟୋମସ୍ତରେ,
ଦୈନନ୍ଦିନ ବାସନାର ବହୁତ ଉପରେ,
କ୍ଷୟନ୍ତି ଶରୀର ଯେବା ସମାଜ-କଲ୍ୟାଣେ
ଧର୍ମ, ସେବା, ବିଜ୍ଞାନର ଯଜ୍ଞ ସମାଧାନେ ।
କାହାନ୍ତି ସେ ଲୋକ ଏଥି ? ସର୍ବେ ସ୍ୱାର୍ଥପର,
ଅନ୍ୟ ଦୁଃଖ ପାଇଁ କା'ର ନାହିଁ ଅବସର ।
ସର୍ବେ ମତ୍ତ କ୍ଷଣିକର ଆଶୁ ସୁଖସ୍ୱାଦେ
ଜାତିର ମରମ-ବ୍ୟଥା କା'ରେ ନାହିଁ ବାଧେ ।
ଆଶା ଖାଲି ତୁମପରି ତରୁଣକୁଳରୁ
କିଏ ଯଦି ହୋଇପାରେ ଜାତି-କଳ୍ପତରୁ,
ନିଜର ସମସ୍ତ ଦେଇ ମାନବସେବାରେ,
ଇଚ୍ଛାଥିଲେ ନରପୁତ୍ର ସବୁ କରିପାରେ ।''

ନୀରବିଲେ ଗୋପବନ୍ଧୁ, ଲୋତକର ଧାର
ଗଣ୍ଡ ସିକ୍ତ କରି ବହେ । ସ୍ୱେଚ୍ଛାସେବୀବାର
ପୁଣ୍ୟଶ୍ଳୋକ ସେ ପୁରୁଷ ବାଣୀର ପରଶେ
ଉଦ୍‌ବୁଦ୍ଧ ହୋଇଣ କ୍ଷଣେ ପୁଣ୍ୟ ଆଦରଶେ
ହେଲେ ଅଶ୍ରୁ-ସିକ୍ତ-ନେତ୍ର । ପିଲାଙ୍କ ଅବସ୍ଥା
ଲକ୍ଷ୍ୟ କରି ଗୋପବନ୍ଧୁ ଫେରାଇଣ କଥା
ପଚାରିଲେ ଛୋଟ ଛୋଟ ମାମୁଲି ଜିଜ୍ଞାସା,
ଖାଇବା ପିଇବା, ଘରେ ଲେଖିବାର ଭାଷା,
ନାମ ଧରି ଏକେ ଏକେ ପଚାରି ପଚାରି
କ୍ଷଣକେ ସେ ବେଦ-ଋଷି ହୋଇଲେ ଅଟଳି ।
ଉଦ୍‌ବେଳିତ, ଅଶ୍ରୁସିକ୍ତ ସ୍ୱେଚ୍ଛାସେବୀଦଳ
ଗଲେ ଏବେ ଯେଝା ପଥେ ହସି କରକର ।

ଶାନ୍ତ ଜ୍ୟୋତ୍ସ୍ନା-ନିଶୀଥିନୀ । ସୈନ୍ଧବ ପବନ
ତାଳ-ନାରୀକେଳ-କୁଞ୍ଜେ ମର୍ମର ରଚନ
କରେ ଯାହା ଶବ୍ଦ ସୃଷ୍ଟି; ନଚେତ ସେ ଗ୍ରାମେ,
ମଗ୍ନ ସର୍ବେ ନୀରବିତ ଦିନାନ୍ତ ବିଶ୍ରାମେ ।

ଗ୍ରୀଷ୍ମକାଳ । ଗ୍ରାମଜନେ ମୁକ୍ତ ନଭ ତଳେ,
ଅଳିନ୍ଦେ, ଅଙ୍ଗନେ, ଅବା ଦାଣ୍ଡବାଲି ପରେ
ଯେ ଯହିଁ ପାଇଲା ସ୍ଥାନ, ପଡ଼ିଛନ୍ତି ଶୋଇ
ସିନ୍ଧୁବାତ ନିଏ ତାଙ୍କ କ୍ଳାନ୍ତି-ସ୍ୱେଦ ବୋହି ।
ସ୍ୱେଚ୍ଛାସେବୀ ଶିବିରେ ବି ସରବେ ଶୟାନ
ନିର୍ବାପିତ ସର୍ବଦୀପ, ସବୁ ଶୂନ୍‌ଶାନ ।
ପ୍ରସାରିତ ବଂଶପଟି, ଯେ ଯହିଁ ତା' ପରେ
ଗାଢ଼ ନିଦ୍ରା ଅଭିଭୂତ, ଦିନ-ଶ୍ରମ ପରେ
କିଶୋର, ତରୁଣଦଳ । ତାଙ୍କ ସ୍ନିଗ୍ଧ ମୁଖ
କରିଛି ସୁନ୍ଦରୋଜ୍ଜ୍ୱଳ, ଶୀତାଂଶୁ ମୟୂଖ ।
ବୃକ୍ଷଲତା ପତ୍ରେ ପତ୍ରେ ଶୀତାଂଶୁ କିରଣ
ପଡ଼ି କରେ ଚକଚକ । ଶ୍ୱେତ-କୃଷ୍ଣ-ବର୍ଣ୍ଣ
ଛାୟା-ଆସ୍ତରଣ ବିଛା ପ୍ରତି ତରୁ ତଳେ;
କ୍ରମେ ମାଟି, ବାୟୁ, ଆର୍ଦ୍ର ଶୀତ-ଚନ୍ଦ୍ର-କରେ ।

ଜ୍ୟୋତ୍ସ୍ନା, ନିଦ୍ରା, ନିଶୀଥର ଶାନ୍ତ ରଙ୍ଗାଳୟେ
ଶାନ୍ତିହୀନ କିନ୍ତୁ ଜଣେ; ତନ୍ଦ୍ରିଳ ସମୟେ
ବିଶ୍ୱ ଯେବେ ନିଦ୍ରାମଗ୍ନ, ସେ ଯେ ସଚେତନ
ରହି ଗୋଷ୍ଠୀଛଡ଼ା, କରେ ପଦ ସଂଚାରଣ ।
ଦେଖୁଛି ସେ ଜ୍ୟୋତ୍ସ୍ନା-ଲୀଳା, ଊର୍ଦ୍ଧ୍ୱେ ମହାନଭେ
ଯିବା ଗ୍ରୀଷ୍ମ ମେଘମାଳା ଶ୍ୱେତ ମହୋତ୍ସବେ
ଉଠି ପାଖ ସିନ୍ଧୁଜଳୁ, ଉତ୍ତରାଭିମୁଖେ
ଧୀରେ, ନିଶ୍ଚିନ୍ତରେ, ଯେହ୍ନେ ଶ୍ୟାମ ବନ ବୁକେ
ଖେଳି ଖେଳି ଯାଉଛନ୍ତି ଶ୍ୱେତହସ୍ତୀ ଦଳ
ଛୋଟ, ବଡ଼, ମାଈ, ପୁଂସ, ଭୀମ ଦନ୍ତାବଳ ।
ଚାହୁଁଛି ସେ ଥରେ ଥରେ ନିକଟେ ଶୟାନ
ବନ୍ଧୁବର୍ଗେ, ଶୁଣେ ପୁଣି ଏକତନ୍ତ୍ରୀ ଗାନ
ଗାଇ ଗାଇ ଗଲା କେହ୍ନେ ଟେଣ୍ଟୋଇ ଆକାଶେ,
କେବେ ଭୁକିବାର ଗ୍ରାମଶ୍ୱାନ ଶୂନ୍ୟ ଆଶେ ।

ସବୁ ସେ ଦେଖୁଛି, କିନ୍ତୁ ହୁଏ ଯେହ୍ନେ ଜଣା
ଅନ୍ତରେ ଚାଲିଛି କେଉଁ କ୍ଷୁବ୍ଧ ବିଚାରଣା

ଯା' ଯୋଗୁଁ ସେ ଦେଖି ମଧ କିଛି ଦେଖୁନାହିଁ
ଯା' ଯୋଗୁଁ ନୟନେ ତାର ଆଜି ନିଦ୍ରା ନାହିଁ ।
କିଏ ସେ ସେ ?
ନାମ ତା'ର କମଳଲୋଚନ,
ବ୍ରାହ୍ମଣବଂଶଜ, ବୟ ନବ ଯଉବନ ।
ସୁଗଠିତ ଗୌର ବପୁ,— ପାତଳ, ମାଂସଳ
ଆୟତ ନୟନଯୁଗ୍ମ,— ପ୍ରତିଭା ଉଜ୍ଜ୍ୱଳ ।
ସଦା ହସହସ ମୁଖ, କ୍ଷିପ୍ର ହସ୍ତପଦ
ନିରଳସ, ବନ୍ଧୁମେଳେ ବିଶେଷ ନର୍ମଦ ।
ଛାତ୍ର ସେ, ଦେଇଛି ଏବେ ମାଟ୍ରିକ୍ୟୁଲେଶନ,
ବୁଦ୍ଧିମାନ୍,— ନୁହେଁ କିନ୍ତୁ ଗ୍ରନ୍ଥ-ପରାୟଣ ।
ଘରେ'ଛନ୍ତି ପିତା, ମାତା, ଭଗିନୀ ଓ ଭାଇ;
ଦରିଦ୍ର କୁଟୁମ୍ବ,— କିନ୍ତୁ ନିଶ୍ଚିନ୍ତରେ ଥାଇ
ହସେ, ଖେଳେ, ଗୀତ ଗାଏ, କଳି, ଥଟା କରେ
ପୁଣି ଭଲ ମୂଲ୍ୟ ପାଏ ପରୀକ୍ଷା-ପତ୍ରରେ ।
ନିଜେ ସେ ନିଜେରେ ପୂର୍ଣ୍ଣ, ଆପଣା ଖିଆଲେ
କମଳଲୋଚନ ମହାପାତ୍ର ନିତ୍ୟ ଚାଲେ ।
ପରୀକ୍ଷାର ଶେଷେ କିଛି ନ ଥିବାରୁ କାମ
ସାଙ୍ଗମେଳେ ଆସିଲା ସେ ଛାଡ଼ି ଘର, ଗ୍ରାମ
କେବଳ ନୂତନ କୌତୂହଳ ସନ୍ଧାନରେ,
ଲୋକ-ସେବା ଗନ୍ଧ ନାହିଁ ଥିଲା ତା ମନରେ ।
କିନ୍ତୁ ସେଦିନର ଦୃଶ୍ୟ, ଭ୍ରମେ ତିରସ୍କାର
କରିବା ସେ ଗ୍ରାମ-ମଲ୍ଲେ, ଦୁର୍ଦ୍ଦଶା ତାହାର,
ପ୍ରାଣସ୍ପର୍ଶୀ ଗୋପବନ୍ଧୁ-ବାଣୀ ତାହାପରେ,
ସୃଜିଛି ତୋଫାନ କମଳର ହୃଦୟରେ ।
ଯୌବନର ବହୁ-ପଥ ସ୍ୱପ୍ନ-ଉପବନେ
ଖେଳୁଥିଲା ଯେହୁ, ଏକ ଅକସ୍ମାତ୍ କ୍ଷଣେ
ଦେଖିଲା ସେ ତା ସମ୍ମୁଖେ ମାତ୍ର ଦୁଇ ପଥ;
କେଉଁ ପଥେ ଯିବ ?— ନାହିଁ ଭାବନାର ଅନ୍ତ ।
ଘରେ ତା'ର ବୃଦ୍ଧ ପିତା, ଇସ୍କୁଲ ଶିକ୍ଷକ
ସ୍ୱଳପ ବେତନ, ନାନ୍ଥ କୁଟୁମ୍ବ-ପାଳକ ।

ତରୁଣ କମଳଲୋଚନର ଆନ୍ତରିକ ବିକ୍ଷୋଭ

ଦୀର୍ଘ ଦାରିଦ୍ର୍ୟର ଶେଷେ, କେତେ ବର୍ଷ ତଳେ
ଗୃହୀତ ହେବାରୁ ପାଠ୍ୟ-ପୁସ୍ତକ ରୂପରେ
କିତାପ ତାଙ୍କର କିଛି, ବଦଳିଛି ଭାଗ୍ୟ
କୁଟୁମ୍ବ-ଚାଳନ-ନନ୍ଦ ହୋଇଛି ସୁନାବ୍ୟ ।
ବଡ଼ଭାଇ ଶ୍ୟାମଚନ୍ଦ୍ର ଧରିଛି ଚାକିରି
ପୁରୀରେ,– ରହଇ ଘେନି ତାର ପିଲାପିଲି,
ତା ଟଙ୍କା ନିଅଣ୍ଟ ତାକୁ ବୋଲି ସେ ପ୍ରଚାରେ
ଘରଭାର ସମସ୍ତହିଁ ବାପାଙ୍କ ମଥାରେ ।
ବିଧବା ଭଗିନୀ ଘରେ, ତଳେ ସାନଭାଇ
ପିତା ମଲେ, ନାହିଁ ଥିବ କିଛି କାହାପାଇଁ ।
ପିତାଙ୍କର ବଡ଼ ଆଶା, ପଢ଼ିବ କମଳ
ବହୁ ପାଠ, ହେଲାଯାଏଁ ସରକାରଙ୍କର
ବିଶିଷ୍ଟ ଚାକର, ଘରେ ସମ୍ମାନ ଓ ଧନ
ଭରିଯିବ; ତାହା ପରେ କନ୍ୟା-ପିତାଗଣ
ଆସିଯିବେ ଏକେ ଏକେ କୁଟୀର ଦୁଆରେ,
ଏକ ହସ୍ତେ କନ୍ୟାରତ୍ନ, ଆରେକ ମୁଠାରେ
ମହାମୂଲ୍ୟ ଯଉତୁକ, ବାଛିବେ ସେ ଏକ
ଯେ ଦେବ ତାହାଙ୍କୁ ଲକ୍ଷ୍ମୀ, ସାମାଜିକ ଟେକ ।
ମନିଷ କରିବ ସାନଭାଇରେ କମଳ
ହେବ ମାତା, ଭଗିନୀର ଏକାନ୍ତ ସମ୍ବଳ ।
ପିତାଙ୍କର ଏହି ଆଶା, ପରୋକ୍ଷ ବଚନେ
ପ୍ରବେଶିଛି ବହୁକାଳୁ କମଳ ଶ୍ରବଣେ ।

କୂଳେ ଉଠି ହଂସ ଯେହ୍ନେ ଝାଡ଼ିଦିଏ ପାଣି
ପକ୍ଷୁ ତା'ର, କମଳ ଏକଥା ସବୁ ଜାଣି
ହୁଏ ଖୁସି; ଦିଏ କିନ୍ତୁ ପୋଛି ସ୍ମୃତିପଟୁ,
ସ୍ୱଇଚ୍ଛାରେ ଘୂରାଏ ତା ଜୀବନର ନଟୁ ।

ଆଜି କିନ୍ତୁ ଦେଖାଇଲା ଗୋପବନ୍ଧୁ-ବାଣୀ
ଯେ ପଥ, ଯେ କ୍ଲେଶମୟ କରୁଣ କାହାଣୀ
ଶୁଣାଇଲା ତା ଜାତିର, ମାନବସେବାର
ଦେଖାଇଲା ଯେ ଆଦର୍ଶ ନିଜକୁ ଦେବାର

ସହସ୍ର କଲ୍ୟାଣ ଲାଗି ଅକୁଣ୍ଠିତ ଚିତ୍ତେ,
ଭରିବା ଜୀବନ ଶାନ୍ତ ଅଧ୍ୟାତ୍ମ ସଙ୍ଗୀତେ-
ସଂଯମ, ଶୁଶ୍ରୁଷା, ଶୁଦ୍ଧି, ସମବେଦନାର,—
ଊର୍ଦ୍ଧ୍ୱେ ଉଠି କ୍ଷୁଦ୍ର ସ୍ୱାର୍ଥ ଇନ୍ଦ୍ରିୟ-ଚର୍ଚ୍ଚାର,
ଅନୁଦ୍‌ବେଗ ଚିତ୍ତ ତା'ର କରେ ଆନ୍ଦୋଳିତ
କେଉଁ ପଥେ ହେବ ତା'ର ରଥ ସଂଚାଳିତ !
ସ୍ନେହମୟ ନନାଙ୍କର ଯେତେ ମଧୁ ଆଶା
କି ଯୁକ୍ତିରେ ଦଳିବ ସେ ? ନ ଆସଇ ଭାଷା ।
ଛୋଟଭାଇ ମଦନଶ୍ରୀ, ବିଧବା ଭଗିନୀ,
ସ୍ନେହମୟୀ ମାତା, ଶାନ୍ତ, ଅଳପ-ଭାଷିଣୀ;
ଏମାନଙ୍କୁ ଫିଙ୍ଗି ଦେଇ ଦାରିଦ୍ର୍ୟ ଝଂଜାଳେ
ପରସେବା କରିବ ସେ କି ପୁରୁଷକାରେ ?
ଧନର ପ୍ରାଚୁର୍ଯ୍ୟ ଥିଲେ ନାହିଁ ଥିଲା କଥା,
କୁଟୁମ୍ବ କରନ୍ତେ ଆପେ ନିଜର ବ୍ୟବସ୍ଥା ।
କରନ୍ତା ସେ ଏହିଠାରୁ ସନ୍ନ୍ୟାସ ଗ୍ରହଣ
ଦେଶପାଇଁ, ବିଶ୍ୱପାଇଁ, ଛାଡ଼ି ଅଧ୍ୟୟନ ।
ଛାଡ଼ି ସୁଖ ସାଂସାରିକ, ଗୋପବନ୍ଧୁ ପଦ
ଅନୁସରି ଅରଜନ୍ତା ଅଧ୍ୟାତ୍ମ ସଂପଦ ।
ସେ ଭାଗ୍ୟ ତାହାର କାହିଁ ?ଶୋଚଇ କମଳ,
ରୁଚି-ବିପରୀତ ଭାଗ୍ୟ ସଦା ଦରିଦ୍ରର ।
ବିକ୍ଷୋଭିତ ଚିତ୍ତ ଘେନି ପଦ ସଂଚାରଣ
କରୁଁ କରୁଁ ଅତ୍ର-ତତ୍ର କମଳ ଏସନ,
ଶୁଣିଲା ସେ ଅଲକ୍ଷିତ ସ୍ଥାନୁ କେ ଡାକଇ
'କମଳ', 'କମଳ' ବୋଲି;— ଦେଖିଲା ଆସଇ
ସେ ମୂର୍ତ୍ତି ତାହାରି ଆଡ଼େ ଟୋଟା ଅନ୍ଧକାରୁ;
ନିକଟ ହେଲାରୁ ଦେଖେ ଏ ଯେ ମୂର୍ତ୍ତି ଚାରୁ
ଗୋପବନ୍ଧୁଙ୍କର, ମଥା ହୋଇଛି ଆବୃତ
ଖଦଡ଼ର ଉତ୍ତରୀରେ, ହୋଇଛି ବିସ୍ତୃତ
ପୁଣି ତାହା ଚରମରେ, ଅନାବୃତ ଯହିଁ
ଗୌର ଦେହ ଜ୍ୟୋତ୍ସ୍ନାସ୍ପର୍ଶେ ମୃଦୁ ଝଟକଇ ।
ଅକସ୍ମାତ୍ ଏ ଦର୍ଶନେ ପୂର୍ବ ଚିନ୍ତାଗଣ
ଲୋଷ୍ଟ୍ର କ୍ଷେପେ ପକ୍ଷୀସମ କଲେ ପଳାୟନ,

ନୂତନ ଆଶଂକା ତାର,— ଗ୍ରାମମଲ୍ଲ ପାଇଁ
ଆଉ କିଛି ଭର୍ତ୍ସନା ବା ଅବଶେଷ ଥାଇ ।
କିନ୍ତୁ ଗୋପବନ୍ଧୁ ଆସି ସମ୍ମୁଖେ ତାହାର
ପଚାରିଲେ ଧୀର କଣ୍ଠେ, ''ରାତି ଯେ ବାଆର
ବାଜିଲାଣି, ଶୋଇ ନାହଁ ତମେ ଯେ କମଳ,
— ଦେହ କିଛି ଖରାପ କି ?''
ଦିଏ ସେ ଉତ୍ତର
''ନାହିଁ ସାର୍, କେଉଁ କାରଣରୁ ନୋହୁ ନିଦ
ଦେଖିବାକୁ ଗ୍ରାମ-ଶୋଭା, ଶାନ୍ତ, ଜ୍ୟୋତ୍ସ୍ନା-ସ୍ନିଗ୍ଧ
ବୁଲୁଛି ମୁଁ ମାତ୍ର ଏଇ, ଶୋଇବି ଏଥର;
ଆପଣ ନାହାନ୍ତି ଶୋଇ ! ହେଲାଣି ଶୀତଳ
ଅତ୍ୟଧିକ ରାତ୍ରି-ବାୟୁ, ଯାଆନ୍ତୁ ଭିତରେ
ଶୁଖିଯାଉଛନ୍ତି ସାର୍; ଏ କେତେ ଦିନରେ ।''

କିଶୋରର ଅନାବିଳ ଏ ସମବେଦନା
ଅନାବିଳ ଗୋପ-ପ୍ରାଣେ ଭାବୋର୍ମି-ରଚନା
କରୁଁ, ଅଶ୍ରୁ ଝରିପଡ଼େ ଦୁଇ ନୟନରୁ
ମେଘର-ବିଦ୍ୟୁତ୍ ଯେହ୍ନେ, ବିଦ୍ୟୁତ୍ ତଳରୁ
ଟାଣୁଁ, ଶତହ୍ରଦା ହୁଏ ଗଗନେ ସଂଜାତ;
କମଳର ବାମସ୍କନ୍ଧେ ରଖି ଦକ୍ଷ ହାତ
ଭାଷିଲେ ସେ, କରୁଣାର ଜୀବନ୍ତ-ପ୍ରକାଶ,—
''କମଳ, ଜାଣନି ବତ୍ସ, ଦେଇଛି ସନ୍ନ୍ୟାସ
ବହୁକାଳୁ ଦୈନନ୍ଦିନ ସ୍ୱାଚ୍ଛନ୍ଦ୍ୟ, ସଂଭୋଗ
ଯେଦିନୁ ବୁଝିଲି ପ୍ରାଣେ ମୋ ଜାତି ଦୁର୍ଯୋଗ,
ଶାସକ ଓ ପ୍ରକୃତିର ନିର୍ମମ ପ୍ରହାରେ
କେମନ୍ତେ ମାନବ ସଂଘ ମରେ ହାହାକାରେ ।
ସେହି ସେ ମାନବ ଯଦି ଧର୍ମେ, ଇତିହାସେ
ହୋଇଥାନ୍ତି ଆପଣାର, ଜାତ ତାଙ୍କ ଆଶେ
ହେବା ସ୍ୱାଭାବିକ ସମବେଦନା ଗଭୀର
ତେଣୁ ଉତ୍କଳର ଦୁଃଖେ ମୋର ଆଖେ ନୀର ।
ବେଳେବେଳେ ଦୁଃଖ କରେ ଏତେ ମୁହ୍ୟମାନ,
ବିନିଦ୍ର ହୁଅଇ ନିଶା, ଦେବତାରେ ଧ୍ୟାନ
କରି, ମାତ୍ର କଟାଏ ମୁଁ ପ୍ରହର ପ୍ରହର

କରୁଣ ପ୍ରାର୍ଥନେ ଭରି ବିକଳ ଅନ୍ତର ।
ଦେଖି ଦେଖି ଏ ଦେଶର ମାନବ ଦୁର୍ଦ୍ଦଶା
ହରାଉଛି ବେଳେବେଳେ ଈଶ୍ୱର-ଭରସା ।
ଯେ ମାଟିରେ ଜଗନ୍ନାଥ ଯୁଗ-ଯୁଗଧରି
ଆସୁଛନ୍ତି କୋଟି ଜନେ ମୁକତି ବିତରି,
ଶୁଣୁଛନ୍ତି ଆର୍ତ୍ତଜନ ବିକଳ ପ୍ରାର୍ଥନା,
ସେ ମାଟିର ପୁତ୍ରକନ୍ୟା ଏତେ କଦର୍ଥନା
ଭୋଗଇ କିପାଇଁ, ମୁଁ ଯେ ନ ବୁଝେ କମଳ,
ନାନା ବ୍ୟର୍ଥ ଭାବନାରେ ଚିତ୍ତ ମୋ ବିକଳ ।
ସହାୟ-ସମ୍ବଳହୀନ କେତେ ବା ଯୁଝିବି
କେତେ ଢୋକ ଦେଇ ଅବା ଜାତି ବଞ୍ଚାଇବି;
ସମସ୍ୟା ପ୍ରଚୁର, ସାଧୁ-କର୍ମୀ ଦେଖା ନାହିଁ,
ଚାରିଆଡ଼େ ଛୋଟ ଅହମିକାର ଲଢ଼ାଇ ।
ତୁମର ବାପାଙ୍କୁ ଜାଣେ, ସାମାନ୍ୟ ଶିକ୍ଷକ
ହେଲେ କି ହୋଇଲା, ଜଣେ ମନୁଷ୍ୟ-ଗଠକ;
ସାଧୁ, ଦକ୍ଷ, ଧର୍ମ-ଭୀରୁ, କାର୍ଯ୍ୟ-ପରାୟଣ
ଛାତ୍ରଙ୍କ ମଙ୍ଗଳାକାଙ୍‌କ୍ଷୀ, ଉଦାର ମନନ ।
ଏହିପରି ଦୁଇଗଣ୍ଡା ଗୁରୁ ଏ ଦେଶରେ
ଥିଲେ ଉଠିଯାନ୍ତା ଜାତି ବହୁତ ଉପରେ ।
ବେଶି କିଛି ନୋହି, ଖାଲି ହୁଅ ପିତା ସମ
ତମ ପ୍ରତି ଏଇ ମୋର ଆଶିଷ ପରମ !''

ପିତାଙ୍କର ପରଶଂସା ଗୋପବନ୍ଧୁ ଭାଷେ
ଶୁଣିଣ କମଳ-ଦୁଇ-ନେତ୍ର ଜଳେ ଭାସେ,
ଭାବାବେଗେ ନଇଁ ଧରେ ଗୋପବନ୍ଧୁ ପଦ,
କହିବାକୁ ଯାଉଥିଲା ତାଙ୍କୁ କେତେ ପଦ,
ବାଷ୍ପରୋଧ କଲା କଣ୍ଠ, କାନ୍ଦେ କଇଁକଇଁ
ଟୋଳିନେଲେ ତାକୁ ବକ୍ଷେ ଗୋପବନ୍ଧୁ ନଇଁ,
ନିଜ ଉତ୍ତରୀୟେ ପୋଛିଦେଲେ ଅଶ୍ରୁ ତାର
ପୋଛୁ ପୋଛୁ ବୁଝାଇଲେ, ''କମଳ, ସଂସାର
କାନ୍ଦିଲା-ଲୋକର ନୁହେଁ; ସେ ବିଜୟୀ ନର
ଭାବକୁ ନିରୋଧି ଯେହୁ ହୁଏ କର୍ମପର,
ଆତ୍ମବଳେ ବଳୀୟାନ୍, ଦଳେ ବାଧାବିଘ୍ନ,

ସ୍ଥିତପ୍ରଜ୍ଞ, ଏକନିଷ୍ଠ, ସୁଦୃଢ଼-ପ୍ରତିଜ୍ଞ ।
ହୁଅ ସେହିପରି ବତ୍ସ, କାର୍ପାସ କୋମଳ
ହୁଏ ଯେହ୍ନେ ଟାଣସୂତ୍ର, ଅଭ୍ୟାସ ଅଟଳ
ଧୀରେ ଧୀରେ ସେହିପରି ଗଢ଼ିବ ବ୍ୟକ୍ତିତ୍ୱ
ବଢ଼ୁ ବଢ଼ୁ ଆପେ ଜଣାଯିବ ବହୁ ତତ୍ତ୍ୱ ।
ଯାଅ ଏବେ ପଡ଼ ଶୋଇ, ମୁହିଁ ମଧ ଯାଏଁ
କାଲି ତମେ ନିଜେ ଯିବ ସେହି ମଲ୍ଲ ଗାଏଁ
ନେବ ଆଉ ଜଣେ ସାଥେ, ଦୁହେଁ କରି ଭାର
ଦେବ ନେଇ ଯେତେ ତାର ତଣ୍ଡୁଳ ଦର୍କାର ।''

## [ ଦ୍ୱିତୀୟ ସର୍ଗ: କଲେଜ-ଜୀବନ ]

''ଦଶମ୍ଵଦ କମଳର ଏ ପତ୍ର ହେ ନନା,
ପଢ଼ି, ମୁଁ ଆଶଙ୍କା କରେଁ, ହୋଇବ ବିମନା ।
କିନ୍ତୁ ଅନୁରୋଧ, ଜାଣି ଉଦ୍ଦେଶ୍ୟ ମୋହର,
ନୋହି ବିରକତ, ମତେ ଲେଖିବେ ସଅଳ
ଆପଣଙ୍କ ମତାମତ, କେଉଁ ପଥେ ଯିବି
ସାର୍ଥକତା କିପରି ଏ ଜୀବନେ ଲଭିବି ?
କଲେଜ ଯାଉଛି ସିନା, ଶୁଣୁଛି ଲେକ୍‌ଚର
ପରୀକ୍ଷା-ସାଫଲ୍ୟ ଲାଗି ଅଛି ବି ତତ୍ପର,
ଯେଦିନୁ ଲଭିଲି କିନ୍ତୁ, ଗୋପବନ୍ଧୁ ସଙ୍ଗ,
ଶୁଣିଲି ତାଙ୍କର ବାଣୀ; ପ୍ରକୃତ ପ୍ରସଙ୍ଗ
ମୋ ଦେଶର ଅକସ୍ମାତ୍ ହେଲା ହୃଦୟଙ୍ଗମ
ସେଦିନୁ ଅଶାନ୍ତି ଉପଜାତ ଚିତ୍ତେ ମମ ।
କି ହେବି ଜୀବନେ, ତା'ହିଁ ଭାବେ ଦିନ ରାତି
ହେବି କି ଗୃହସ୍ଥ, ପୁତ୍ର କନ୍ୟା ଗୃହ ପାତି,
ଅବା ହେବି ଦେଶଲାଗି ଦରିଦ୍ର ସନ୍ନ୍ୟାସୀ,
ସର୍ବତ୍ୟାଗୀ,—ନୋହି ଧନ-ଯଶ-ଅଭିଳାଷୀ ।
ଜାଣେ ନନା, ବହୁ ଆଶା ରଖିଛ ମୋଠାରେ
ନାନା ବେଳେ ବୋଉ ମଧ କହିଛି କଥାରେ,
କେମନ୍ତେ ଚାକିରି କରି ଆଣିବି ସମ୍ପତ୍ତି,

କମଳର ପିତାଙ୍କୁ ପତ୍ର

ବଢ଼ାଇବି ସମାଜରେ ବଂଶ-ପ୍ରତିପତ୍ତି,
ଘର, ଜମି କରି ବୋଲାଇବି 'ବଡ଼ଲୋକ'
ଅନ୍ୟେ ଚାହିଁଥିବେ ହାତୁଁ ପାଇବାକୁ ସ୍ତୋକ ।
ଜାଣୁଛି ମୁଁ ନନା, ତମେ ଘୋର ଦାରିଦ୍ର୍ୟରେ
ଆମକୁ ଜିଆଇଁ ରଖି, ଶେଷ ବୟସରେ
ଶାନ୍ତିରେ କାଟିବ କାଳ, ରଖିଅଛ ଆଶା
ଆମର ସମୃଦ୍ଧି ଦେଖି । ନାହିଁ ପାଏ ଭାଷା
କେମନ୍ତେ ତମର ସେହି ଆଶା ସ୍ୱାଭାବିକ
ଭାଙ୍ଗିବି, ହେଲେହେଁ ତାହା ମୋ କର୍ତ୍ତବ୍ୟ ଠିକ ।
କିନ୍ତୁ ନନା, ଏଣେ ପୁଣି ବିଚାରଇଁ ମନେ
ପଦ, ସମ୍ପଦ କି ସବୁ ମାନବ-ଜୀବନେ ?
ଡକାଇତ ଅର୍ଜେ ଧନ, ଅର୍ଜେ ବାରନାରୀ
ମରନ୍ତି ପ୍ରତ୍ୟହ ଶତ ଶତ ପଦ-ଧାରୀ,
ସମାଜ ଭାବଇ ଏମାନଙ୍କ ମରଣରେ—
ମୃତ୍ୟୁ ଅବା ସଫା କଲା ଧରା-ପ୍ରାଙ୍ଗଣରେ !
ପାଠ ପଢ଼ି ରଖିବି କି ଇତର ଆଦର୍ଶ,
ଅବା ଯିବି ଉପରକୁ, ଦିଅ ପରାମର୍ଶ ।
କେତେବାର ଶୁଣାଇଛ ଗୀତାର ସନ୍ଦେଶ
ତ୍ୟାଗେ ମାତ୍ର ତିଷ୍ଠିପାରେ ବ୍ୟକ୍ତି, ଜାତି, ଦେଶ;
ଭୋଗରୁ ବିରୋଧ ଜନ୍ମେ, ଉପୁଜେ ସମର
ଦୃଷ୍ଟାନ୍ତ ଦେଖାଅ ଦଶା ନବ୍ୟ ୟୁରୋପର ।
ତୁମ କଥା ନନା ସେବେ ମର୍ମେ ନ ପଶଇ
ବଞ୍ଚୁଥିଲି, ସ୍ୱକେନ୍ଦ୍ରିକ, ମନେ ମନେ କହି;
''ଏସବୁ ସୁନ୍ଦର ଦିଶେ ବାର୍ଦ୍ଧକ୍ୟର ମୁଖେ
ଯା'ର ନାହିଁ ଶକ୍ତି, ଭୁଞ୍ଜିବାକୁ ଧରା ସୁଖେ ।
ଭୋଗୋନ୍ମୁଖୀ କରିବାରୁ ସମସ୍ତ ଇନ୍ଦ୍ରିୟ
ଶ୍ୱେତାଙ୍ଗ ଜୀବନ ଦେଖ କେମନ୍ତ ସକ୍ରିୟ ।
ଜ୍ଞାନେ, କର୍ମେ, ଧର୍ମେ; ଯୁଦ୍ଧେ ସକଳ ବ୍ୟାପାରେ
ସମସ୍ତଙ୍କ ପୁରୋଗାମୀ ଶ୍ୱେତାଙ୍ଗ ଧରାରେ ।
ଶ୍ରେଷ୍ଠ ମାରଣାସ୍ତ୍ର ରଚେ ଯେଉଁ ଶ୍ୱେତକର;
ସେ ପୁଣି ଫୁଟାଏ ଶ୍ରେଷ୍ଠ ସାହିତ୍ୟ-କମଳ ।

ସେହି ହସ୍ତ ପୁଣି ଘୋର ଅଗମ୍ୟ ଜଙ୍ଗଲେ
ଆଫ୍ରିକା ବା ଭାରତର, ସ୍ନେହେ ସୃଷ୍ଟି କରେ
ସୁନ୍ଦର ସୁସଭ୍ୟ ନର ତୁଚ୍ଛ ଉପାଦାନୁ,
ଯୁଗ-ଯୁଗ ଥିଲା ଯାହା ବନ୍ୟ, ଖର୍ବ, ସ୍ଥାଣୁ ।
ଆମେ ତ୍ୟାଗଧର୍ମୀ ଜାତି,—କି ଦଶା ଆମର ?
କି କହିବା ଗୋଟି, ଗୋଟି, —ସବୁ ଲଜ୍ଜାକର ।

ନନା ଭୁଲ କହୁଛନ୍ତି, ଭାରତୀୟ ଜାତି
ଉଠେ ଯଦି କେବେ ପୁଣି, ଉଠିବ ସେ କାଟି
ପ୍ରାଚୀନର ମାୟାଜାଲ, ସମ୍ମୋହ ଧର୍ମର,
ଆତ୍ମ-ଘାତୀ ଆଦରଶ ଛଦ୍ମ ବୈରାଗ୍ୟର ।
ବୀରଭୋଗ୍ୟା ବସୁନ୍ଧରା,—ଭୋଗ ଲକ୍ଷ୍ୟ କରି
ଜୀବନ ଗଢ଼ିଲେ ଯାଇ ଶ୍ୱେତାଙ୍ଗର ପରି
ଭାରତ ଛିଣ୍ଡାଇପାରେ ଦାସତ୍ୱ ଶୃଙ୍ଖଳ;
କି କରିବେ କୋଟି କୋଟି ଛଦ୍ମ ତ୍ୟାଗୀ-ଦଳ ?

କିନ୍ତୁ ନନା, ଯେଉଁ ଦିନ ଦେଖିଲି ତଭାରେ
ଜଘନ୍ୟ ମାନବ-ଦୁଃଖ ଦୁର୍ଭିକ୍ଷ-ଜ୍ୱାଳାରେ,
ଦେଖିଲି, ସ୍ପର୍ଶିଲି ପୁଣି ଗୋପବନ୍ଧୁ-ପ୍ରାଣ
ମାନବସେବାରେ ତିଳ ତିଳ ରକ୍ତଦାନ
ଶୁଣିଲି ହୃଦୟ-ଭାଷା, ଅନୁକମ୍ପାମୟ,
ଦେଖିଲି ମାନବଦୁଃଖେ-ମୁକ୍ତ-ଅଶ୍ରୁ-ଚୟ;
ଭାବିଲି ଏପରି ଦୁଃଖ ଥାଉଁ ଏ ଧରାରେ
ସ୍ୱାର୍ଥ-କେନ୍ଦ୍ର ଭୋଗର କି ଅର୍ଥ ଥାଇପାରେ ?
ପ୍ରତିବେଶୀ ଯଦି ମୋର ରହିଛି ଉପାସେ
ତା ନିଶ୍ୱାସ ପଡୁଥିବ ନିଶ୍ଚେ ମୋର ଗ୍ରାସେ ।
ଶ୍ରେଷ୍ଠ ଭୋଗ, ଦୁଃଖଦୈନ୍ୟମୟ ଏ ଜଗତେ
ପରଲାଗି କ୍ରୁଶ ବହି; ଢାଳିବା ରକତେ ।
ଜଣେ ଦୁଃଖୀ ଥିଲା ଯାଏ ବିଶ୍ୱ କେଉଁ ଜଣେ
ସୁଖଭୋଗ, ନର-ଅଶ୍ରୁଦିଗ୍ଧ ବୋଲି ମଣେ ।
ତେଣୁ ନନା ଚାହୁଁଛି ମୁଁ ହେବି ଗୋପବନ୍ଧୁ,
ଚେଷ୍ଟିବି, ଅଶେଷ ଦୁଃଖ ନେବି ଅନ୍ୟ ସ୍କନ୍ଧୁ,
ସାମାଜିକ ହେବାଠାରୁ ପିଲାପିଲି କରି,

ଗୃହତ୍ୟାଗୀ ସନ୍ନ୍ୟାସୀର ପଥ ନିଏଁ ବରି,
ଦେଖିବି ମୁଁ, ସ୍ୱାର୍ଥ-ସ୍ପର୍ଶ-ଶୂନ୍ୟ ଅଙ୍ଗୁଳିରେ
ଦୈନ୍ୟ ପୋଛି, ରୋପି ପାରେଁ ସମାଜ ଶରୀରେ
ଯଦି କିଛି ସନାତନ କଲ୍ୟାଣର ବୀଜ,
ସେଇ ହେବ ଅଧମର ଶ୍ରେଷ୍ଠ ମସଜିଦ ।
ଦିଅ ଅନୁମତି ନନା ବୋଉ; ତମ ମନେ
ଦୁଃଖ ଦେଇ, ଶୁଭଙ୍କର କିଛି ନାହିଁ ମଣେ ।
ଏଇ ମଧ ଉପଦେଶ ଗୋପବନ୍ଧୁଙ୍କର-
''ନନାଙ୍କୁ ଜଣାଇ ଯାହା କରିବାର କର ।''
ଆଶା କରେଁ ତମେ ମତେ ଦେବ ଉପଦେଶ;
କା'ର ସେବା କରିବି ମୁଁ,—ଘର ଅବା ଦେଶ ?
ସେଇ ମେସେ ଅଛି ନନା,—ସ୍ୱଚ୍ଛ ଜଳପାନି
ପାଏ ଯାହା, ଅଣ୍ଟୁ ନାହିଁ, ଘରକଥା ଜାଣି
ତମୁକୁ କିମିତି ଅବା ମାଗିବି ସାହାଯ୍ୟ,
କ୍ଷେତରୁ ଅଛ କି ପାଇ ବର୍ଷକ ଆହାର୍ଯ୍ୟ ?
ଗୋଟା ଦୁଇ ଆରମ୍ଭିଛି ତେଣୁ ଟିଉସନ,
ଭାବୁଛି ମେଣ୍ଟିବ ତହୁଁ ଆର୍ଥିକ କଷଣ ।
ଘରର ସକଳ କଥା ଲେଖି ଦେବ ଭାଷା
ଶୁଣାଶୁଣି ଭାଇନାଙ୍କ ବଦଳିର ଆଶା
କଟକକୁ ହେବ ପରା । ଦଶରା ବେଳରେ
ନିଶ୍ଚେ କିଛିଦିନ ଯାଇ କଟାଇବି ଘରେ ।
ବୋଉଙ୍କୁ କହିବ ମୋର କୋଟି ନମସ୍କାର
ଅପାକୁ ନ ଦେଇ ସବୁବେଳେ ହାଣ୍ଡିଶାଳ
ଘରେ ଘରେ ପଢ଼ା, ନନା, ମୋହର ବାସନା
କ୍ରମେ ସେ ହୋଇବ ଦିନେ ସ୍ୱାଧୀନ-ଜୀବନା ।
ମଦନର ଗଣିତରେ ରଖିଥିବ ଆଖି
ଭଲ ସେ କରିବ ଆଉ ଯେତେ ପାଠ ବାକି ।
ଗ୍ରାମର କଥା ବି ପତ୍ରେ ଲେଖିବ, କି ହେଲା
ପଙ୍କୋଦ୍ଧାର ପୋଖରୀର ? ଆଉ କଲେ ହେଲା
ହେବ ଆର ବରଷକୁ ଗ୍ରାମେ ବିସୂଚିକା,
ବାଧ୍ୟ କରି ସମସ୍ତଙ୍କୁ ଦେବ ମଧ ଟିକା ।''

ମାଟ୍ରିକ୍‌ରେ ବୃତ୍ତି ପାଇ ତରୁଣ କମଳ
କଲେଜ୍ ଜଏନି କଲା । ପିତାଙ୍କ ସମ୍ବଳ
ନାହିଁ ତାକୁ ଦେବାପାଇଁ ନାମ-ଲେଖା ବ୍ୟୟ,
ମାଗି-ଯାଚି କରି କିଛି କିଞ୍ଚିତ ସଞ୍ଚୟ
ପଠାଇଲେ ବାଧ କରି, ଅନିଚ୍ଛାରେ ତାର,
ଚାହୁଁ ସେ ନଥିଲା ହେବ ନନାଙ୍କର ଭାର ।
କେଉଁମତେ କଟକରେ ଆସି ସେ ଶେଷରେ
ନେଇଛି ଆଶ୍ରୟ ଏକ ଦରିଦ୍ର ମେସ୍‌ରେ ।
ନାହିଁ ବସ୍ତ୍ର ଆଡ଼ମ୍ବର, ଶୟନ-ବିଳାସ
ମଶିଣାରେ ଦିଏ କାଟି ଦିନର ପରାସ,
ଜୋତାହୀନ ପଦେ ବୁଲେ ରାସ୍ତାରେ ରାସ୍ତାରେ;
ଅର୍ଥାଭାବୁଁ, ଜାଣି ଜାଣି ମାରଇ କ୍ଷୁଧାରେ
ବେଳେବେଳେ । କିନ୍ତୁ ଯେବେ ଯହିଁ ହେବ ସଭା
କମଳର ଉପସ୍ଥିତି ନିଶ୍ଚେ ଆଗ ସଦା ।
କ୍ଲାସେ ଓ ବାହାରେ ଯାହା ଯେଉଁଠି ଲେକ୍‌ଚର
ସବୁ ଶୁଣେ ମନ ଦେଇ, ପଠନ-ତତ୍ପର
ଯେତେ ପାରେ ସେତେ ଗ୍ରନ୍ଥ । ଚଳେ ଚୁପ୍‌ଚାପ,
ନାହିଁ କାହା ପ୍ରତି ଉଷ୍ମା, ନାହିଁ ଅନୁତାପ !
ବେଳେବେଳେ କିନ୍ତୁ ଦେଖି ଧନୀ ଛାତ୍ରଙ୍କର
ସାଡ଼ମ୍ବର ବ୍ୟବହାର, ବକ୍ଷେ କମଳର
କୁହୁଳି ଉଠଇ ଏକ କ୍ରୋଧାଗ୍ନି ଦୈବତ,
ଉଚ୍ଚ ନୀଚ ସହ୍ୟ କରି ନ ପାରେ ତା ରକ୍ତ ।
କା' ଆଗେ କହିବ ଦୁଃଖ ? ଚୁପ୍‌ଚାପ ରହି
ତିମି ମେଳେ ମୀନ ସମ କମଳ ଚଳଇ ।
ମୋଟା ମୋଟା ଦରମାର ଅଧ୍ୟାପକବାର,
କେବଳ ଶ୍ୱେତାଙ୍ଗ-ଅନୁକୃତିର ପ୍ରଚାର,
ଇଂରେଜୀ-ଭାଷଣ ହେଲା ଚିହ୍ନ ଉତ୍କର୍ଷର,
ଟେନିସ୍-ପାଟବ ବଡ଼ ଚିହ୍ନ ପୌରୁଷର,
କାହିଁ ସେହି ଜ୍ଞାନାଶ୍ରମ, ସାଧନାର ପୀଠ
କାହିଁ ଅଧ୍ୟାପକ, ଶୁଦ୍ଧ, ଶାନ୍ତ, ଗ୍ରନ୍ଥ-କୀଟ,
କାହିଁ ଜ୍ଞାନ-ଚର୍ଚ୍ଚା, ଯା'ର ସ୍ୱପ୍ନ ଚିତ୍ତେ ଭରି

ଆସିଥିଲା ସେ କମଳ କଟକ-ନଗରୀ ?
ଦେଖି ଶୁଣି ସବୁ ଘଟା, ସବୁ ଆଡ଼ମ୍ବର
ଅଜ୍ଞାତ ଦର୍ଶକ ସମ ଚଳଇ କମଳ ।

ହଠାତ୍ ଦିନକେ କିନ୍ତୁ ସମଗ୍ର କଲେଜେ
କମଳ ହୋଇଲା ଜଣା,—ତୀବ୍ର ଖରାତେଜେ
ଚାହେଁ ଯେହ୍ନେ ବିଳମ୍ବରେ ଉଠିଥିବା ଜନ,
ଚାହିଁଲେ ସକଳେ ତେହ୍ନେ ଏ ଅଗ୍ନି ପ୍ରଚ୍ଛନ୍ନ ।
ଥିଲା ଏକ ତର୍କ-ସଭା, ତର୍କର ବିଷୟ
'ଡାରବିନ୍ ବିବର୍ତ୍ତନ', ପ୍ରଯୁଜ୍ୟ କି କହ
ମାନବ-ସମାଜ ପ୍ରତି'—ଉତ୍କୃଷ୍ଟ ତାର୍କିକ
ପାଇବେ ବଧାଇ ଶେଷେ ଦ୍ୱାଦଶ-ମୌଦ୍ରିକ ।
ସମଗ୍ର କଲେଜେ ଆଜି ପଡ଼ିଛି ଚହଳ
ଛାତ୍ର ଅଧ୍ୟାପକେ ପରିପୂର୍ଣ୍ଣ ବଡ଼ ହଲ୍
ଦୁଇ ତିନି ନବବୟା-ଛାତ୍ରୀ-ଉପସ୍ଥିତି
ତରୁଣଙ୍କ ପ୍ରାଣେ ଆଣେ ଅସଂଯତ ସ୍ଫୀତି ।
ଜଣାଶୁଣା ବାଗ୍ମୀଦଳ ବସିଗଲେ ଆଗେ
ଶ୍ରୋତୃବୃନ୍ଦ ଉପବିଷ୍ଟ ତାଙ୍କ ପୃଷ୍ଠଭାଗେ
ସମ୍ମୁଖେ ତରୁଣୀ ଛାତ୍ରୀ, ଅଧ୍ୟାପକବାର;
ମଧ୍ୟେ କିଛି ମୁକ୍ତ ସ୍ଥାନ,— ଆସନ ବକ୍ତାର ।
ତାତ୍‌କାଳିକ ଏ ବକ୍ତୃତା—ନୂତନ ବିଷୟ
ହଠାତ୍ ପଡ଼ିଲା ଜଣା; ପୂର୍ବ-ବାଗ୍ମୀଚୟ
ଅନ୍ୟାନ୍ୟ ପ୍ରସ୍ତାବ ସବୁ ଭାବି ମନେ ମନେ
ଆସିଥିଲେ ସଭାଗୃହେ । ଅନେକେ ଏକ୍ଷଣେ
କଠିନ ବିଷୟ ଦେଖି ଭରିଲେ ପକେଟେ
ଆପଣାର ଟିପା-ପତ୍ର । ନାମ ଦେଲେ ଯେତେ
ପ୍ରତିଯୋଗିତାର ପାଇଁ, କମଳଲୋଚନ
ମହାପାତ୍ର ନାମ ଶୁଣି ସର୍ବ ସଭାଜନ
ଚାହିଁଲେ ତାହାରି ଆଡ଼େ;—ମାତ୍ର ନବାଗତ
ପ୍ରଥମ ବର୍ଷର ଛାତ୍ର, ନିତାନ୍ତ ଅଜ୍ଞାତ;
ସେ ପୁଣି କରିବ ତର୍କ ଘେନି ବିବର୍ତ୍ତନ ?
ଡାମ୍ଫଣେ ହୋଇବ କିବା କେଦାର କର୍ଷଣ !

କଲେଜରେ ବକ୍ତୃତା ପ୍ରତିଯୋଗିତା : 'ବିବର୍ତ୍ତନବାଦ'

ମାତ୍ର କିଛି ଦିନ ପୂର୍ବେ କମଳଲୋଚନ
କରିଥିଲା କିନ୍ତୁ ଏହି ତତ୍ତ୍ୱ ଅଧ୍ୟୟନ
ବିସ୍ତାରିତେ ଆଲୋଚିତ କେଉଁ ସେ ପୁସ୍ତକେ
ଜୀବନ୍ତ ସେ ଜ୍ଞାନ ଥିଲା ଏଯାଏଁ ମସ୍ତକେ ।
ତେଣୁ ଲଜ୍ଜାଶୀଳ, ଦୁଃସ୍ଥ, ନିରୀହ କମଳ
ସାହସିଲା କହିବାକୁ । ତର୍କ ଅନ୍ୟତର
ରଖିଥାନ୍ତା ତାକୁ ପୂର୍ବପରି ହୀନ ମୂକ;
ଆକସ୍ମିକ ଆଜି ତାକୁ କରେ ବାବଦୂକ ।
ଜାଣି ସେ ନ ଥିଲା ପୁଣି ଏହି ଆକସ୍ମିକ
ହେବ ବୋଲି ଭବିଷ୍ୟତ ବୀଜ ଦଇବିକ ।
ବହୁକାଳ ପରେ ଯାଇ ବୁଝିଲା କମଳ
ଅଭିନେତା ମାତ୍ର ନର, ନାଟକେ ବିଶ୍ୱର ।
ସୂତ୍ରଧର ଆଉ ଜଣେ ଅଦୃଶ୍ୟ ସେ ଥାଏ
ସଂସାରର ଅଭିନୟ ଚତୁରେ ଚଳାଏ ।
ଦ୍ୱନ୍ଦ୍ୱବାଦେ ବହୁ ଯୁକ୍ତି ହେଲା ଉତ୍‌ଥାପନ
କେତେକ କାଟିଲେ, କଲେ କେତେ ସମର୍ଥନ ।
କେ କହିଲେ ବିବର୍ତ୍ତନ ଭାରତରୁ ଜାତ
ଦଶ ଅବତାରେ ତାହା ଲୋକରେ ପ୍ରଖ୍ୟାତ ।
କହିଲେ କେ କିସ ବାଲ୍ମିକୀଙ୍କ ରାମାୟଣ ?
ବାନରୁଁ ନରାବିର୍ଭାବ—ତାହାରି ଚିତ୍ରଣ ।
ଇଂରେଜ ମ୍ଳେଛ ବା କାହୁଁ ପାଇବ ମସ୍ତିଷ୍କେ
ନବ ଉଦ୍ଭାବନ ପାଇଁ ? ବୋଲାଏ ମୌଳିକ
ଆମ ଚୋରି ଦ୍ରବ୍ୟ ନେଇ ବିକାଇ ବଜାରେ
ଦାସ ଭାରତର କଥା କିଏ ସେ ପଚାରେ ?

କେ କହିଲେ ରାମାୟଣେ ବର୍ଣ୍ଣିତ ବାନରେ
ଆବିର୍ଭୂତ ପୁଣି ଆଜି ଶ୍ୱେତାଙ୍ଗରୂପରେ ।
ହାବଭାବ, ମୁଖ, ବେଶ, ଆକାର, ପ୍ରକାର;
କଦଳୀ-ପ୍ରିୟତା, ଭାଷା,—କେବଳ ଚିତ୍‌କାର,—
ସମସ୍ତ ସୂଚାଏ ଶ୍ୱେତନର ବାନରଜ,
ବାନର-ପଣ୍ଡିତ ପ୍ରତି ଏ ମତ ସହଜ ।
ଆର୍ଯ୍ୟବଂଶୀ ଭାରତୀୟେ ପ୍ରଯୁଜ୍ୟ ଏ ନୁହେଁ,

ବ୍ରହ୍ମାଙ୍କୁ ଉଦ୍ଭୂତ ସେ ଯେ,—ସବୁ ଶାସ୍ତ୍ର କୁହେ ।
ମୁଖରୁ ବ୍ରାହ୍ମଣ ଜାତ, ମୁଖ୍ୟ ସେ ସମାଜେ
କ୍ଷତ୍ରିୟ ବାହୁରୁ ଜାତ, ବୀରତ୍ୱେ ବିରାଜେ ।
ପାଦରୁ ଶୂଦ୍ରର ଜନ୍ମ, ତେଣୁ ସେବାକାରୀ,
ଶାସ୍ତ୍ରକଥା,— ଥାଇପାରେ ସନ୍ଦେହ କାହାରି ?
ଏଇ ଆମ ବିବର୍ତ୍ତନ, ଦୈବତ, ପ୍ରାଚୀନ,
ଅନ୍ୟଥା ନ କରିପାରେ କପି ଦାରୁଇନ ।

କେ ଜଣେ ବିଜ୍ଞାନ-ଛାତ୍ର କରି ସଂଶୋଧନ
କହିଲେ 'ଏ ନୁହେ ଡାରବିନ ବିବର୍ତ୍ତନ ।
ମୂଳତତ୍ତ୍ୱ ଏହି ହେଲା;—ବଞ୍ଚିବାର ପାଇଁ
ଜୀବ ନିଜେ ବଦଳାଏ ଆବେଷ୍ଟନୀ ଚାହିଁ ।
ଦୃଷ୍ଟାନ୍ତ ସ୍ୱରୂପ ଦେଖ ବନ୍ୟ ବତକର
ପକ୍ଷହାଡ଼ ଦୃଢ଼, ଯେଣୁ ପାୟ ବ୍ୟୋମଚର;
କିନ୍ତୁ ଗ୍ରାମ୍ୟ ବତକର, ପଦ-ହାଡ଼ ଟାଣ,
ଯେଣୁ ସେ ଚାଲଇ ବେଶି, ଅଳପ ଉଡ଼ାଣ ।
ଏହି କ୍ରମେ ଯେତେ ଜୀବେ ଯେତେ ବିଶିଷ୍ଟତା
ଯାହା ଦେଖୁଁ, କହେ ତାହା ଏକମାତ୍ର କଥା
—ଆବେଷ୍ଟନୀ ସଙ୍ଗେ ମିଳି ଆତ୍ମରକ୍ଷା ପାଇଁ
ସେ ସବୁ ସୃଜିଛି ଜୀବ, ଜୀବନ-ଆଶାୟୀ ।
ଏହି କ୍ରମେ ନରମୁଣ୍ଡେ ମସ୍ତିଷ୍କ ଉଦ୍ଭବ,
ମସ୍ତିଷ୍କରୁ ପୁଣି ଧରା-ସଭ୍ୟତା ସମ୍ଭବ ।
ବଣ୍ୟ ଜୀବ ହୋଇଅଛି ସୁସଭ୍ୟ ମାନବ,
ପ୍ରକୃତି-ପୁତ୍ତଳୀ ଆଜି ପ୍ରକୃତି-ଦାନବ ।
ଜିଣନ୍ତି ଯେ ଆବେଷ୍ଟନୀ, ଏ ଧରା ତାଙ୍କରି
ପ୍ରକୃତିହିଁ ସର୍ବଯୁଗେ ଦୁର୍ବଳର ଅରି ।
ଏକ ଲକ୍ଷ ଇଙ୍ଗ୍ ଶାସେ ବିରାଟ ଭାରତେ
ଏହି ନୀତି ବଳେ ଜାଣ । ସମଗ୍ର ଜଗତେ
ଶ୍ୱେତାଙ୍ଗର ଜୈତ୍ରକେତୁ ଉଡ଼ଇ କିପାଇଁ,
ସେ ତ ମ୍ଳେଚ୍ଛ, ବାନରଜ, ଶାସ୍ତ୍ର ତାର ନାହିଁ ?
ଆମର ତ ସବୁ ଅଛି; କିପାଁ ଆମେ ଦାସ ?
ସତ୍ୟ କି ଉଭେଇଯିବ କଲେ ପରିହାସ ?''

କମଳ କହିଲା ଶେଷେ, ''ପୂର୍ବବର୍ତ୍ତୀ ବକ୍ତା
କହିଲେ ଯା, ନିତାନ୍ତ ତା ଯୁକ୍ତିଯୁକ୍ତ କଥା ।
ବିବର୍ତ୍ତନ, ଅଭିବୃଦ୍ଧି,—ଜୀବନ-ଲକ୍ଷଣ,
ଧରାଭୋଗ ଇଚ୍ଛା ଯାର, ତାର ଆୟୋଜନ
ନିଶ୍ଚେ ସଦା ପ୍ରତିକୂଳ—ଆବେଷ୍ଟନୀ-ଜୟ;
ତେଣୁ ଆଜି ଇଂରେଜର ରାଜ୍ୟ ଧରାମୟ ।
ତେଣୁ ଆଜି ଶ୍ୱେତାଙ୍ଗର ଜୟ-ଜୟକାର,
ପ୍ରାଚ୍ୟ ଭାଗ୍ୟେ ଖାଲି ଲଜ୍ଜା, ଦାସତ୍ୱ, ଧିକ୍କାର ।
କିନ୍ତୁ ମୋ ମତରେ ଏହି କଥାଟି ଜିଜ୍ଞାସ୍ୟ
ବିଜେତା କି ଖାଲି ଚିର ଆମର ଉପାସ୍ୟ ?
ସଂଘର୍ଷ କି ଜୀବନର ଏକ ହିଁ ଲକ୍ଷଣ
ଭୋଗକି ଜୀବନେ ନର ଶ୍ରେଷ୍ଠ ଆଚରଣ ?
ଜୀବେ ବା ଉଦ୍ଭିଦେ ଯେଉଁ ନୀତି କାର୍ଯ୍ୟକାରୀ
ଉଚିତ କି ହେବା ନର ତା'ରି ଅନୁସାରୀ ?
ମନୁଷ୍ୟ-ପ୍ରକୃତି ନୁହେଁ, ପ୍ରକୃତି ଉପରେ,—
ଦେବତ୍ୱ ରହିଛି ପ୍ରଚ୍ଛନ୍ନରେ ତା' ଅନ୍ତରେ ।
ନରତ୍ୱରେ ଦେବତ୍ୱର ବିକଚ ବିକାଶ,
ପରାର୍ଥର ଜନ୍ମ ହୁଏ ସ୍ୱାର୍ଥ ହେଲେ ନାଶ—
ଏହି ମାତ୍ର ନରପକ୍ଷେ ଶ୍ରେଷ୍ଠ ବିବର୍ତ୍ତନ
ପଶୁତ୍ୱରୁ ଦେବତ୍ୱକୁ କ୍ରମ-ଉନ୍ନୟନ ।
ପ୍ରାଚୀନ ଭାରତେ ପୂତ ଋଷି ତପୋବନେ,
ବାଲ୍ୟକାଳୁ ଗଢୁଥିଲେ ଉନ୍ନତ ଜୀବନେ
ଋଷିଏ ସୃଜିବା ଲାଗି ସୁସଭ୍ୟ ସମାଜ;
ସତ୍ୟ କଥା ସେ ବ୍ୟବସ୍ଥା, କାଳ-ଭୁକ୍ତ ଆଜ,
ତଥାପି କି ଅର୍ଥହୀନ ଚେଷ୍ଟା ସେ ସକଳ ?
ସେ ପରୀକ୍ଷା,— ଗଢ଼ିବାକୁ ପରିପୂର୍ଣ୍ଣ ନର ?
ସନାତନ ସତ୍ୟ ତାହା,—ଜନ୍ତୁ ଭିତରର,
ବିନାଶି, ଦେବତ୍ୱ ପାଇଁ ଉଠେ ଯେଉଁ ନର,
ସେହିହିଁ ପ୍ରକୃଷ୍ଟ ସ୍ରଷ୍ଟା ନର-ସଭ୍ୟତାର,
ଦେଖ ଇତିହାସ-ପୃଷ୍ଠା ସାକ୍ଷୀ କି ନା ତାର;
ସଂଘର୍ଷ ଓ ଭୋଗ-ମୂଳ ଡାରବିନୀ ମତ
ମନଷ୍ୟ-ସମାଜ ପ୍ରତି ଅଟେ ଅସଙ୍ଗତ ।''

ଲଜ୍ଜାରୁଣ, ସ୍ୱେଦସିକ୍ତ ମୁଖ ଘଷି ଘଷି
କମଳଲୋଚନ ଯେବେ ସ୍ଥାନେ ଆସେ ବସି,
ଶୁଣି, ଶୁଣି ନ ପାରଇ ଦୀର୍ଘ କରତାଳି
ସଭାସ୍ଥ ସକଳଙ୍କର; ଲାଜେ ନେତ୍ର ଟାଳି
ନାହିଁ ପାରେ ଚାହିଁ କା'ରେ । ଛାତି ଦକଦକ,—
ଅନୁତପ୍ତ, କିପାଁ ବୃଥା ହେଲା ବକବକ
ଏ ଜନତା ସମ୍ମୁଖରେ । ସାଙ୍ଗ, ଶତ୍ରୁ ଜନେ
କ୍ଷମିବେ କି ତା ଧୃଷ୍ଟତା ? ଆତ୍ମ-ଧିକ୍‌କାରଣେ
ଅକାରଣେ ହେଉଁ ନିଜେ ଜୀବନ୍ତ-ମରଣ,
ଘୋଷଣା ଶୁଣଇ ସଭା ହୋଇଣ ଉତ୍କର୍ଣ୍ଣ—

କମଳର ପୁରସ୍କାର ଲାଭ

''ପ୍ରଥମ-ବାର୍ଷିକ ଛାତ୍ର କମଳଲୋଚନ
ମହାପାତ୍ର ଦେଇଛନ୍ତି ଉତ୍କୃଷ୍ଟ ଭାଷଣ,
ଆନନ୍ଦ ସହିତ ତାଙ୍କୁ ଦେଉଁ ପୁରସ୍କାର,
ଏଇ ଆମ୍ଭ ସମସ୍ତଙ୍କ ମିଳିତ ବିଚାର ।''
ପୁଣି ଘନ କରତାଳି ମଧ୍ୟେ ପୁରସ୍କାର
ଘେନିଲା କମଳ; ନବ ପ୍ରଶଂସାର ଭାର
ଧୀର ନିର୍ବିକାର ଚିତ୍ତେ ବହିବାର ପାଇଁ
ପ୍ରସ୍ତୁତ ନ ଥିଲା ସେ'ତ । ସଲଜରେ ଚାହିଁ
ଥରେ ଏଣେ, ଥରେ ତେଣେ, କମ୍ପିତ ହସ୍ତରେ
ଘେନି ମୁଦ୍ରା, ବସେ ଫେରି ନିଜ ଆସନରେ ।

କିନ୍ତୁ ସେ ଦେଖିଲା ନାହିଁ, ସକଳ ଅଲକ୍ଷ୍ୟେ
ଦେଖୁଥିଲା ଦୁଇ ଆଖି, ନବୀନ ପୁଲକେ
ବାଣୀ ତାର, ଗତି ତାର, ବସନ, ଅଧର
କେଶ ତାର, ଦୀପ୍ତି, ବିଭା କପାଳ, ଗଣ୍ଡର;
ଚାହିଁଥାଏ ଚକ୍ଷୁଶ୍ରବା ଯେହ୍ନେ କେଳା ଗୀତେ
ଅପଲକେ ଦୁଇ ଆଖି ସର୍ବ ଅଲକ୍ଷିତେ
ଦେଖୁଥିଲା କମଳର ନଖୁ କେଶଯାଏଁ,
ସଙ୍ଗୀତର ଧ୍ୱନି ଯେହ୍ନେ ଅନ୍ତରୀକ୍ଷେ ଧାଏଁ;
—ଦୁଇ ଆଖି, କେଉଁ ଏକ ଅଧ୍ୟାପକଙ୍କର
ତରୁଣୀ କନ୍ୟାର—କୃଷ୍ଣ, ପବିତ୍ର ଉଜ୍ଜ୍ୱଳ ।

ମେସେ ଆସି ଦେଖେ କିନ୍ତୁ କମଳ ସେଦିନ
ନନା ଦେଇଛନ୍ତି ଭାଷା— ଉତ୍ତରଟି କ୍ଷୀଣ ।
''ସମସ୍ତେ ଅଛନ୍ତି ଭଲ; ଦଶରାକୁ ଯିବ
ଶୁଣି ବୋଉ ବଡ଼ ଖୁସି; ଭାଇନା ଆସିବ
ପିଲାପିଲି ତା'ର ଧରି, ସମସ୍ତେ ଏକତ୍ର
ଥିଲାବେଳେ ପଢ଼ାହେବ କମଳର ପତ୍ର ।
ସମସ୍ତଙ୍କ ମତ ତହିଁ ଶୁଣିବ କମଳ
ବିଶେଷ କି ଲାଭ ମତ ଜାଣି ଜଣକର ?''

ସ୍ୱାଗତ ଆସାର ମଧ୍ୟେ ବଜ୍ରପାତ ପରି
କମଳ ମଣିଲା ପିତାଙ୍କର ପତ୍ର ପଢ଼ି ।
ବିରକ୍ତ ହେବାକୁ ନାହିଁ ଦେଖିଲେ ଅବସର
କିନ୍ତୁ ବନ୍ଧୁଜନେ, ବାଢ଼ି ଭୋଜିର ଖବର ।

## [ ତୃତୀୟ ସର୍ଗ: କରୁଣାର ପ୍ରଥମ ସ୍ପର୍ଶ ]

ଲତାର କୁସୁମ ପରି, ପୁରୁଷେ ପ୍ରତିଭା
ଚାହିଁବେ ଯିବାର ଲୋକେ ନିଶ୍ଚେ ଟେକି ଗ୍ରୀବା;
ଆସିବେ ନିକଟେ କେହି ସ୍ପର୍ଶନେ, ଆଘ୍ରାଣେ;
ଆଦରିବେ କେହି; କେହି ମାରି ହିଂସାବାଣେ
ଚଳିବେ ଛିଣ୍ଡାଇ କିଛି ।

କମଳ ବକ୍ତୃତା

ସେଦିନ ଆଣିଲା ଏକ ଚାଞ୍ଚଲ୍ୟ ଅବସ୍ଥା;
କେହି କେହି ପଚାରିଲେ କିଏ ସେ, ସେ ପିଲା ?
କେଉଁଠୁ ଆସିଛି ? କେତେ କରି ମନ ଗିଲା
କହିଲେ, ଆଶ୍ଚର୍ଯ୍ୟ କଥା, ଦେଲେ ଅଧ୍ୟାପକେ
ପୁରସ୍କାର କେହ୍ନେ ତାକୁ ! ଚିତ୍ତରେ ଆଶଂକେ
ଚୋରିକରି ଆଣିଛି ସେ ସବୁ ଆଇଡ଼ିଆ;
ନିଜସ୍ୱରେ ତେବେ ଜୋର୍ ଦିଆ ହୁଏ କିଆଁ ?

କ୍ରମେ ଥଣ୍ଡା ହୋଇଆସେ କିନ୍ତୁ ଆଲୋଚନା
କମଳର ଲାଗି କୌତୂହଳ, ଗବେଷଣା ।
ଫଳ ହୁଏ ଏଇ ମାତ୍ର କମଳଲୋଚନ,

ଧୀରେ ଧୀରେ କଲେ କିଛି ବଂଧୁ ଆକର୍ଷଣ ।
ସମ-ସ୍ୱପ୍ନା, ସମ-ବୁଦ୍ଧି, ସମ-ବୟ ଯୁବା
ଜୁଟିଲେ କେତେକ ଆସି କରିଲେ ମସୁଧା
ଆଡ଼ମ୍ବରମୟ, ଧନ-ସାର ଆବେଷ୍ଟନୀ
ସଂଗଠନ
କଲେଜରେ, ଭାଙ୍ଗି କରାଇବେ ପୁରାତନୀ
ଭାରତୀୟ ପୂତ କୃଷ୍ଟି ଠିଆ ସେ ନଗରେ,
ଦେଖାଇବେ ଆଦର୍ଶ ସେ ନିଜ ଜୀବନରେ ।
କରିବେ ମାନବ-ସେନା, ଯାପିବେ ଜୀବନ
ସଂଯତ, ସରଳ, ପୂତ, କରିବେ ବରଣ
ଦାରିଦ୍ର୍ୟ, ଦେଶର ଲାଗି; ସ୍ୱାଧୀନ ଭାରତ
ଦେଖି ମରିବାହିଁ ହେବ ଜୀବନର ବ୍ରତ ।
'ବାନ୍ଧବ ସମିତି' ହେଲା ନାମ ସେ ସଂଘର
କମଳହିଁ ସ୍କନ୍ଧେ ନେଲା ଦାୟିତ୍ୱ ସକଳ ।

ଥାଏ ପୁରାତନ ମେସେ ଦାରିଦ୍ର୍ୟ-ବିଳାସେ
ହସ୍ତ ଅକିଂଚନ;—ମନ ପୂର୍ଣ୍ଣ ଅଭିଳାଷେ ।
ଟିଉସନ-ଜୀବୀ, ଯାହା ବଳେ ଅରଜନ୍ତୁଁ
କରେ ଦାନ, ପାତ୍ର ଦେଖି । ପୋଛିଅଛି ମନୁ
ଜାତି-ଭେଦ, ଦେଶ-ଭେଦ, ଜନ୍ମ-ଅହଂକାର;
ତା' ତରୁଣ-ମନ ପ୍ରୀତି-ଚିକ୍‌କଣ, ଉଦାର ।
କ୍ରମେ ମେସେ ବଡ଼, ସାନ, ଉପର ବା ତଳ,
ସମସ୍ତଙ୍କ ଶ୍ରଦ୍ଧାପାତ୍ର ହେଲାଣି କମଳ ।
ଗୋପନେ ବା ପ୍ରକାଶ୍ୟରେ ଦିଏ ପରାମର୍ଶ
ସମସ୍ତଙ୍କୁ; ଯେଣୁ ତା'ର ଅନ୍ତର ଅମର୍ଷ ।
ବହୁଜନ ସଂଗେ ହେଉଁ ଯୋଗସୂତ୍ର ସୃଷ୍ଟି
କମଳ ନ ଚାଲେ ଏବେ କରି ନିମ୍ନେ ଦୃଷ୍ଟି,
ସେ ଏବେ ଦେଲାଣି ଯୋଗ ସମୂହ-ପ୍ରମୋଦେ;
ଦୁଇଭାଗ ନିଜ ଆତ୍ମା କରିଅଛି, ବୋଧେ ।
ଅର୍ଦ୍ଧେକ ନିଜସ୍ୱ, ଅନ୍ୟ ପ୍ରବେଶେ-ନିଷିଦ୍ଧ;
ଆର ଅଧ, ସାଧାରଣ, ସର୍ବ-ସ୍ପର୍ଶଦିଗ୍‌ଧ ।
ଏକାକୀ ହୋଇଲେ ନିଜ ଅଧକ ସେ ଖୋଲେ,
ନିଜର ସଙ୍ଗୀତ ଶୁଣେ, ନିଜ ମନ୍ତ୍ର ବୋଲେ;

ବୁଡ଼ିରହେ ନିଜ ସ୍ୱପ୍ନେ ବୁଣେ ଆଶା-ଜାଲ
ବିଶ୍ୱର ଅନ୍ଧାର ପାଇଁ ରଚଇ ମଶାଲ ।

ଦିନେ ମେସେ ଆସି ସ୍ୱୟଂ ଅଧ୍ୟାପକ ଜଣେ,
କମଳକୁ ନେଇ ଯାନେ ସସ୍ମିତ ବଦନେ
କହିଲେ କି କଥା, ପୁଣି ଡାକିନେଲେ ଘରେ;
ଆଶ୍ଚର୍ଯ୍ୟେ ଅପେକ୍ଷିଥାନ୍ତି ମେସେ ସହଚରେ ।
ଫେରୁଁ ତହୁଁ ଏଇ କଥା ହୋଇଲା ପ୍ରଚାର
କମଳ ଛାଡ଼ିବ ମେସ । କରିବ ଆହାର
ଏଣିକି ସେ ସୁପ୍ରସିଦ୍ଧ-ଅଧ୍ୟାପକ-ଘରେ
ନିବସିବ ପୁଣି ତହିଁ ଟିଉସନ ଛଳେ ।

ସେ କାଳେ କଲେଜେ ଥିଲେ ଯେତେ ଅଧ୍ୟାପକ
ତାଙ୍କ ମଧ୍ୟେ ଜନ-ମାନ୍ୟ, ପଣ୍ଡିତ, ପାଠକ
ଥିଲେ ଅବିନାଶ ଚନ୍ଦ୍ର ଘୋଷ ସୁପ୍ରସିଦ୍ଧ
ବ୍ରାହ୍ମଧର୍ମୀ, ବଙ୍ଗଦେଶୀ, ଇଙ୍ଗ-ଦ୍ୱେଷବିକ ।

ଅଧ୍ୟାପକ ଅବିନାଶ ଚନ୍ଦ୍ର

ଆହାର, ବିହାର, ଚିନ୍ତା ସମସ୍ତ ସ୍ୱଦେଶୀ
ଗମ୍ଭୀର, ଚରିତ୍ରବାନ, ନ ପାରନ୍ତି ଘେଁଷି
ଇତରେ ଭୟରେ ପାଶେ—ଇଂରେଜ ଅଧକ୍ଷ
ପୋଷିଥାଏ ତାଙ୍କ ପ୍ରତି ଭୟ ଅପ୍ରତ୍ୟକ୍ଷ ।
କିନ୍ତୁ ଅଧ୍ୟାପକ ନିଜେ ସରସ, ଉଦାର
ସଂଗୀତେ, ସାହିତ୍ୟେ ତାଙ୍କ ନିରତ ବିହାର
ଦୟାବାନ, ଦାନହସ୍ତ ବ୍ୟକ୍ତିନିର୍ବିଶେଷେ;
ଦେଖିବାକୁ ସୁପୁରୁଷ, ରୁଚିବନ୍ତ ବେଶେ ।
ଶ୍ମଶ୍ରୁଳ ବଦନୁ ଫୁଟେ ଚାରିତ୍ରିକ ଜ୍ୟୋତି
ଦନ୍ତଜାଳ ଯେହ୍ନେ ଗୁନ୍ଥା ଦୁଇ-ପଂକ୍ତି-ମୋତି ।

ଦର୍ଶନର ଅଧ୍ୟାପକ, ବାଗ୍ମୀ ଓ ବିଜ୍ଞାନୀ;
ଶତ ଶତ ଛାତ୍ର ତାଙ୍କୁ ଗୁରୁବୋଲି ମାନି ।
ଦୁଇପୁତ୍ର, ଏକ କନ୍ୟା ସନ୍ତତି ତାଙ୍କର
ପତ୍ନୀ ମହାମାୟା, ଯୋଗ୍ୟ ସଖୀ ସ୍ୱାମୀଙ୍କର ।
ଘରର ଝଞ୍ଜାଟ ସବୁ ନିଜ ମୁଣ୍ଡେ ନେଇ
ସ୍ୱାମୀଙ୍କୁ ଛାଡ଼ନ୍ତି 'ମାୟା' ଖୁଆଇ, ପିନ୍ଧାଇ ।
ଅଧ୍ୟୟନ ଅଧ୍ୟାପନେ ଥାନ୍ତି ଅବିନାଶ

ଥୋଇ ସର୍ବ ୍ରଞ୍ଜନ ଯୋଗ୍ୟ ପତ୍ନୀ ପାଶ ।
ବଡ଼ପୁଅ ହେମାକାନ୍ତ ହୋଇ ବାରିଷ୍ଟର
ସଦ୍ୟ ବିଲାତରୁ ଫେରି, ପାତି ଅଛି ଘର
ଉତ୍ତର ଭାରତେ କେଉଁ ବୃହତ୍ ସହରେ
ଭବିଷ୍ୟତ୍ ଶ୍ୱଶୁରର ସ୍ନେହ ଆଶ୍ରୟରେ ।
କନ୍ୟା—କରୁଣା ତା ନାମ; ବିଜ୍ଞାନର ଛାତ୍ରୀ
କଲେଜେ; ବିବାହ ପାଇଁ ଅନୁପମ ପାତ୍ରୀ ।
ସୁନ୍ଦରୀ, ସଙ୍ଗୀତବତୀ, ଗାର୍ହସ୍ଥ୍ୟ-ନିପୁଣା,
ପୁରୁଷ ଯା ଖୋଜେ କେଉଁ ଗୁଣ ନାହିଁ ଊଣା ।
କିନ୍ତୁ ସେ ଧରିଛି ଜିଦି ହେବ ଡାକ୍ତରାଣୀ;
ନ ଜାଣନ୍ତି କିନ୍ତୁ କେହି ତା'ର ମର୍ମବାଣୀ ।
ବେଳେବେଳେ ଜନନୀଠୁ ପାଇଲେହେଁ ବାଧା,
ବାପା ଦେଇ ସବୁ କାମ କରଇ ସମାଧା;
ଅବିନାଶ କେବେହେଲେ କରୁଣାର କଥା
ଜଣାଯାଇନାହିଁ କରିଥିବାର ଅନ୍ୟଥା ।
ସାନପୁତ୍ର ଉଦୟନ,—ଡାକ ନାମ 'ମିଟା'
ବଂଶରୁ ବାହାର, ଖାଏ ମାଆଙ୍କଠୁ ପିଟା
ପ୍ରତିନିତ୍ୟ ଦୁଷ୍ଟପଣେ; ପଢୁ ନାହିଁ ପାଠ
ଘୂରିବୁଲୁଥାଏ ସାଙ୍ଗ ଘେନି ରାସ୍ତା ଘାଟ ।
ଘରୋଇ ଶିକ୍ଷକ ଜଣେ ନିତାନ୍ତ ଦର୍କାର
ମିଟା ପାଇଁ, ଥିବ ଯିଏ ଘର ଓ ବାହାର
ସବୁବେଳେ ତାହା ସାଥେ, କିଛି ପଢ଼ାଇବ,
ଯାହା କରୁ ବରାବର ଆଖି ରଖିଥିବ ।
କିଏ ସେ ରହିବ ଆସି,—ନାନା ତର୍କ ପରେ
କରୁଣା ଉଦାସ ଭାବେ ଦିନେ ସୂଚାକରେ,
''ବାବା, ସେଦିନ ଯେ ପିଲା ନେଲା ପୁରସ୍କାର
ବିବର୍ଦ୍ଧନ ବକ୍ତୃତାରେ, ତାକୁଇ ମିଟାର
ଶିକ୍ଷକ କରୁନା; ଶୁଣେ ଦରିଦ୍ର ବିଦ୍ୟାର୍ଥୀ
ଟିଉସନେ ଚଳେ; ଭଲ ହୋନ୍ତା ମିଟା-ସାଥୀ ।''

ଅବିନାଶ ଥିଲେ ନିଜେ ବିଚାର ଆସନେ
ସେଦିନ, କମଳ ଅଛି ସେଦିନୁଁ ସ୍ମରଣେ,

ଶୁଣିଛନ୍ତି ଖ୍ୟାତି ତାର ବନ୍ଧୁ ଅଧ୍ୟାପକଙ୍କୁ
କରୁଣାର କଥା ତାଙ୍କ ଆସିଲା ମନକୁ ।
ସେହି ଦିନ ବୁଝି କାହିଁ ରହଇ କମଳ,
ଜାଣି ତାହା, ବାଟେ ନିତ୍ୟ ସାନ୍ଧ୍ୟ ଭ୍ରମଣର;
ନିଜେ ଧରି ଆଣି ତାକୁ କରିଲେ ପ୍ରସ୍ତାବ,
କମଳ ନ କହିପାରେ, ସଲଜ୍ଜ-ସ୍ୱଭାବ
ହଁଅ, ନାହିଁ ପ୍ରଥମରେ । ହୋଇଲା ତା' ଚିନ୍ତା
କି ହେବ 'ସମିତି' ଦଶା ? ଭାବିବେ କି ପିତା
ତା'-ରହିବା ବ୍ରାହ୍ମ-ଘରେ ! ସ୍ୱାଧୀନତା ତାର
ଖଣ୍ଡିତ ହୋଇବନି କି ? ଜାଣେ ସେ ଉଦାର

**ଅବିନାଶଙ୍କ ଗୃହରେ କମଳର ଟ୍ୟୁଟର୍ ନିଯୁକ୍ତି**

କିନ୍ତୁ ଅବିନାଶଚନ୍ଦ୍ର, ଅନ୍ୟର ହୃଦୟ
ବୁଝି ସେ ପାରନ୍ତି, ଥାଇ ନିଜରେ ତନ୍ମୟ ।
କମଳର ନିଜ ଦୁଃଖ ନ ଫୁଟୁଣୁ ମୁଖେ
କହିଲେ ସେ ଗୋଟି ଗୋଟି ହସି କଉତୁକେ
ବିଶ୍ୱସ୍ତ ବାନ୍ଧବ ପରି; ସେ ଭାବପ୍ରବଣ
ତରୁଣର ସବୁ ଦ୍ୱିଧା କ୍ଷଣକେ ଦ୍ରବଣ
ହେଲା ପ୍ରବୀଣର ମଧୁ ସମାନୁଭୂତିରେ,
ସ୍ୱୀକୃତି ସେ ଦେଇଦେଲା ବିନା ଦ୍ୱିରୁକ୍ତିରେ ।

ମେସରୁ ବିଦାୟ ନେଇ, ବାକସ, ପୁଟୁଳି,
ଧରି ଅଚ୍ଛ ଦିନେ ଆସି, ସଙ୍ଗେ କରି କୁଲି
କମଳ ପ୍ରବେଶ କଲା ଅଧ୍ୟାପକ ଘରେ
ଆକାଶର ପକ୍ଷୀ ଯେହ୍ନେ ଆଶ୍ରେ ଡାଳ ପରେ ।

ବାହାରେ ସ୍ୱତନ୍ତ୍ର କକ୍ଷେ ବସତି ତାହାର
ଆଗରୁ ନିର୍ଦ୍ଦିଷ୍ଟ ଥିଲା, ଟେବୁଲ, ଚେୟାର
ଖଟ, ଗଦି ବିସ୍ତରାଦି ଆଭିଜାତ୍ୟମୟ,
ପରିଷ୍କୃତ, ରୁଚିମନ୍ତ,—ଦରିଦ୍ର-ତନୟ
କମଳର ମନ ଏଥି ରହେ ଖାପ-ଛଡ଼ା
କିଛିଦିନ ଲାଗି, କାଳେ କହୁଥିବେ ପରା
କିସ କିଏ ଦେଖି ତାର ଦୀନ ବେଶବାସ
ଏ ଉଚ୍ଚ ସ୍ୱାଚ୍ଛନ୍ଦ୍ୟ ମଧ୍ୟେ ! ଆଣିଲା ଆଶ୍ୱାସ
ଶୀଘ୍ର କିନ୍ତୁ ଅଧ୍ୟାପକ ମଧୁ ବ୍ୟବହାର ।

କେବଳ ତାଙ୍କରି ନୁହେଁ,—ସାରା ପରିବାର
ଭୃତ୍ୟ ସହ, ନିଜ ଲୋକ ପରି ନେଲେ କରି;
କମଳର କ୍ରମେ ସର୍ବେ ହେଲେ ନିଜ ପରି ।
ଅଳ୍ପ ଦିନେ ଅବିନାଶ ଦେଲେ ଚନ୍ଦ୍ରାନ୍ତର
କମଳକୁ, କରିଆଇ ପୋଷାକ ସୁନ୍ଦର ।
ମିଟାକୁ ଧରି ସେ ଯେବେ ଯାଅଇ ଭ୍ରମଣେ
ଦୁଇଭାଇ ବୋଲି ଲୋକେ ଭାବିଥାନ୍ତି ମନେ ।

କମଳଠୁଁ ପାଇ ସତ୍ୟେ ଭ୍ରାତୃ ବ୍ୟବହାର
ନମନୀୟ ହୁଏ ମିଟା, ମିଷ୍ଟ ଅତ୍ୟାଚାର
କ୍ରମେ ତା'ର କମିଆସେ ପାଠେ ଦିଏ ମନ,
କରେ ଯତ୍ନେ 'କମଳଦା'-ବଚନ ଶ୍ରବଣ ।
ଅନ୍ୟଠାରୁ ଶୁଣି ବୃତ୍ତି, ପୁରସ୍କାର କଥା,
କମଳଦା ପ୍ରତି ତାର ସମ୍ମାନ ଅଯଥା
ଆସିଅଛି; ଶିଶୁ ଚକ୍ଷେ କମଳଲୋଚନ
ପାଣ୍ଡିତ୍ୟ ଓ ସମ୍ମାନର ମଧୁର ସ୍ୱପନ ।

ସନ୍ଧ୍ୟାବେଳେ ହୁଏ ନିତ୍ୟ ମିଳିତ ପ୍ରାର୍ଥନା
ସରଳ, ନିରାଡ଼ମ୍ବର ବ୍ରାହ୍ମ ଉପାସନା ।
କରୁଣା କରଇ ଗାନ ରବୀନ୍ଦ୍ର ସଙ୍ଗୀତ
ଅତୀନ୍ଦ୍ରିୟ ଭାବେ ହୁଏ ଦ୍ରବୀଭୂତ ଚିତ୍ତ;
ଆତ୍ମା ଯେହ୍ନେ ଲଘୁ ହୋଇ କ୍ରମେ ଭାସିଯାଏ
ଉର୍ଦ୍ଧ୍ୱେ ଉର୍ଦ୍ଧ୍ୱେ ସଙ୍ଗୀତର ତରଙ୍ଗ-ପ୍ରବାହେ,
ପାର୍ଥିବ କ୍ଷୁଦ୍ରତା ଲୁଚେ, ସାର୍ବଭୌମ ଭାବ
ଶ୍ରୋତାର ମନନେ ରଚେ ପବିତ୍ର ପ୍ରଭାବ ।
କମଳେ ଅଜ୍ଞାତ ଥିଲା, କରିବା ସଂଗୀତ
ଆତ୍ମାକୁ ଉଦ୍‌ବୁଦ୍ଧ, କ୍ଲିନ୍ନ ଚିତ୍ତେ ବିଶୁଦ୍ଧିତ ।
ରବୀନ୍ଦ୍ରର ବାଣୀ ଆଉ କଣ୍ଠ କରୁଣାର
ମିଶୁଁ, ପ୍ରତିଭାତ ହେଲା ନୂତନ ସଂସାର ।
ମନ୍ତ୍ର-ମୁଗ୍ଧ ପରି ଶୁଣେ; ଅପେକ୍ଷାରେ ଥାଏ
ଦିନସାରା ପ୍ରାର୍ଥନାର ମଧୁ କ୍ଷଣ ଯାଏଁ ।
ଅବିନାଶ କରିଥାନ୍ତି ପାଠ ବା ପ୍ରାର୍ଥନା;

କିଛି କ୍ଷଣ ଧ୍ୟାନେ ହୁଏ ଶେଷ ଉପାସନା ।
ସଂଗୀତ, ପ୍ରାର୍ଥନା ଅବା ପାଠ ପ୍ରଭାବରେ
କମଳ ନୟନୁ ବେଳେବେଳେ ଅଶ୍ରୁ ଝରେ ।

ବହୁ ଦିନ ଗଲେ ମଧ୍ୟ, କମଳ, କରୁଣା
ଚଲୁଥାନ୍ତି ବ୍ୟବଧାନେ । ନିତ୍ୟ ଦେଖାଶୁଣା,
ନିତ୍ୟ ପ୍ରାର୍ଥନାରେ ଭେଟ, ଦେଖା କଲେଜରେ
କେହି ଆଗେ କଥା ନ କହଇ ଲଜ୍ଜା, ଡରେ ।
କମଳ ମାନସେ ସଭ୍ୟ, ସୁନ୍ଦରୀ କରୁଣା
ସ୍ୱର୍ଗର ଅପ୍‌ସରୀଠାରୁ ନୁହେଁ କିଛି ଊଣା;
ଅଲଭ୍ୟା ସେ, ଅପାର୍ଥିବ, ଅନ୍ୟଲୋକ-ଜୀବ;
ନିଜେ ଭାବେ ସ୍ଥୂଳ, ଗ୍ରାମ୍ୟ, ଦରିଦ୍ର, ପାର୍ଥିବ ।
ସଖ୍ୟ ତା'ର, କମଳର କଳ୍ପନା ବାହାରେ,
ସେ କେବଳ ଦୂରୁଁ ପୂଜା କରେ କରୁଣାରେ ।
ବାଟେ, ଘରେ ପଡ଼ିଗଲେ କେବେ ମୁହାଁମୁହିଁ
ବାଟ ଛାଡ଼ି ଚାଲିଯାଏ ଲାଜେ ଚାହିଁ ଭୁଇଁ ।

ନାରୀ-ଜାତି—ସହଜାତ ଅନ୍ତର୍ଦୃଷ୍ଟିବଳେ
କରୁଣା ଚିହ୍ନିଛି କିନ୍ତୁ ସଲଜ୍ଜ କମଳେ ।
ସେ ଜାଣେ ତା'—ତା'ର ମଧ୍ୟେ ଧନ ବ୍ୟବଧାନ,
ପୁରୁଷର ନାରୀ ପ୍ରତି ଭୟ ଓ ସମ୍ମାନ,
ସେ ଜାଣେ ସଦ୍‌ଗୁଣ ସଙ୍ଗେ ମୈତ୍ରୀ, ସଙ୍କୋଚର;
ସେ ଜାଣେ ସହଜ ଲଜ୍ଜା ଅକଳୁଷିତର ।
ଧୀରେ ଧୀରେ ସ୍ଥିର କଲା ତେଣୁ ସୁଚତୁରୀ
ନିଜେ ସେ ଚାଲିବ କ୍ରମେ ଅର୍ଗଳେ କତୁରି ।

''କମଳଦାଠାରୁ ତୋର ଆଣ ତ ସେ ବହି''
''ଏ ଖାତାଟା ଫେରାଇଦେ,—ଟେବୁଲୁଁ ନ କହି
କାଲି ସେ ନ ଥିଲାବେଳେ ଆଣିଥିଲି ଘେନି''
''କହିବୁ ଝରକା ଘରେ ନ ଦେଇ ଯିବେନି,
ମାଙ୍କଡ଼ ପଶିବେ ଘରେ'' । ''କହିବୁ ଦାଦାଙ୍କୁ
ବଜାରେ ସେ ଯିବେ ନେଇ ମତେ ଓ ମାଆଙ୍କୁ ।''
ମିଟା ମାଧ୍ୟମରେ ଏହିପରି ନାନା ଛଳେ
ନିକଟୁ ନିକଟେ କ୍ରମେ ଆଣିଲା କମଳେ

ଚତୁରୀ କରୁଣା; କ୍ରମେ ପିତୃ ସମକ୍ଷରେ
ପଚାରଇ ଛୋଟ ଛୋଟ ପ୍ରଶ୍ନ କୌତୂହଳେ,
''ଆପନୀ କି ଗାଆନ୍ତି ନି ?'' ''ପଢ଼ନ୍ତି ବାଂଗଲା ?''
''ମିଟା ଏବେ ପୁଣି ସତେ ହେଲାଣି ଚଗଲା !''
ଦରହସେ କ୍ଷୀଣ ସ୍ୱରେ ହଁଅ, ନାହିଁ କରି
କମଳ ବଂଚାଏ ନିଜେ,—ଶେଷ ବିଭାବରୀ
ସଂକୋଚେ ପଳାଏ ଯେହ୍ନେ ଉଷାର ଚୁମ୍ବନେ,
ଶେଷ ମଲ୍ଲୀପୁଷ୍ପ ଅବା ଶରଦ ଆଗମେ ।

ଛିଣ୍ଡିବାରୁ ବ୍ୟବଧାନ ଲୂତାତନ୍ତୁ-ଜାଲ
କ୍ରମେ ହେଲା ପରସ୍ପରେ ବାକ୍ୟ-ବ୍ୟବହାର,
କ୍ରମେ ଘୁଞ୍ଚେ କମଳର ସଂକୋଚ ସଭୟ
ଗ୍ରୀଷମ ଘୁଞ୍ଚଇ ଯେହ୍ନେ ହେଲେ ମେଘୋଦୟ ।
କରୁଣା ଆସଇ ଏବେ କମଳର ଘରେ
ପାଠ ବୁଝେ, ପାଠ ପୁଛେ, ଖେଳ, ଥଟା କରେ,
'କମଳଦା' ବୋଲି ଡାକେ, ଦିଅଇ ଆଦେଶ
ଏକାମ ସେକାମ ପାଇଁ, ଦିଏ ଉପଦେଶ
ମଧ୍ୟେ ମଧ୍ୟେ କିଂକର୍ତ୍ତବ୍ୟ ବିଚାର ପଡ଼ିଲେ;
ଅଲକ୍ଷିତେ ସେବା ମଧ କରେ ଧୀରେ ଧୀରେ,
ଛୋଟ ଛୋଟ କାମ କରି, ତିଆରି ରୁମାଲ,
ବୋତାମ ଲଗାଇ ଅବା ପଞ୍ଜାବିରେ ତାର ।
କମଳ ଶୁଝେ ସେ ସେବା ମଧ୍ୟେ ମଧ୍ୟେ ଦେଇ
ଉତ୍କୃଷ୍ଟ ପୁସ୍ତକଟିଏ, କୁସୁମେ ସଜେଇ ।
କ୍ରମେ ଅଲକ୍ଷିତେ ଜାଣିଲେଣି ପରସ୍ପରେ
ପରସ୍ପର ପ୍ରତି ଜାତ ସ୍ନେହ ଅନ୍ତରରେ ।
ଏକ ଏବେ ଚାହେ ଆନ-ଅଚ୍ଛିନ୍ନ-ସନ୍ନିଧି,
ଏକ ଚାହେ ଆରେକର ହୃଦୟ ପରିଧି ।
ଉଭୟେ ଚାହାନ୍ତି ଅଧିକାର ଉଭୟର,
ଶୁଣିବାକୁ—''ତମେ ମୋର, ଏକାନ୍ତ ମୋହର ।''
ବାହାରର ଥଟା, ହସ, କଥୋପକଥନ
ଆଗ ପରି ନାହିଁ ଆଉ ହୃଦୟ-ନନ୍ଦନ ।
ଏବେ ଚାହେଁ ମନ୍ଥି ହୃଦ ଦୁହେଁ ଦୁହିଁଙ୍କର
ନିଃସାରିତ ସୁଧା ପିଇ ଭରିବେ ଅନ୍ତର;

ନିଜ ନିଜ ହୃଦୟର ଗୋପ୍ୟ ଅନ୍ତଃପୁର
ଖୋଲି, ଅଭ୍ୟର୍ଥିବା ପାଇଁ ଉଭୟେ ବ୍ୟାକୁଳ ।
କିନ୍ତୁ କାହିଁ ବ୍ୟପଦେଶ ? ସୁଯୋଗ, ଛଳନା ?
କିଏ ଆଗେ ବଖାଣିବ ହୃଦୟବେଦନା ?

## [ ଚତୁର୍ଥ ସର୍ଗ : ପ୍ରଣୟ ଓ ପରିଚୟ ]

ପୂଜା ଅବକାଶ, ତେଣୁ ଛାତ୍ର ପ୍ରଫେସରେ
ଯାଉଛନ୍ତି ଦଳେ ଦଳେ ନିଜ ନିଜ ଘରେ ।
କରୁଣାର ପରିବାରେ ଦେବାକୁ ବିଦାୟ,
ଯାତ୍ରାର ବିବିଧ କର୍ମେ ହେବାକୁ ସହାୟ,
କମଳ ବି ଆସିଅଛି ଆଜି ଇଷ୍ଟେସନେ
କିନ୍ତୁ ଚାଲେ, ବ୍ୟଥା ଯେହ୍ନେ ଲାଗଇ ଚରଣେ ।
କରୁଣା ରହିଛି ପିତା-ଜନନୀ ସଂଗତେ
ମିଟା ସାଥେ ବୁଲୁଛି ସେ ଧରି ତା'ର ହସ୍ତେ ।
କମଳ ପାଉଛି ଶାନ୍ତି ଦେଇ ତାକୁ ସ୍ନେହ
ଭଗିନୀର ପ୍ରତିମୂର୍ତ୍ତି,—ତା'ରି ମୁଖ, ଦେହ ।
ଛୋଟ ସେ ବାଳକ, କିନ୍ତୁ ଉତ୍‌ଫୁଲ୍ଲ-ମାନସ
ଗୁରୁଠାରୁ ପାଇ ସ୍ନେହ, —ଘନିଷ୍ଠ, ସରସ,
କହେ ସେ, ''କମଳଦାଦା, ଫେରିବାର୍ ବେଳେ
ଯାହା ଦରକାର, ଆଣିଦେବି ଅବହେଳେ
କହ କିବା ଦରକାର ! ଆମ କଲିକତା
ତମ ଏ କଟକଟାର ହୋଇବ ଦଶଟା ।
ସବୁ ଚିଜ ମିଳେ ତହିଁ—ଯାଇଛ ନା କେବେ ?
ଯାଇନା ? ଆସୁନା କିପାଁ ଆମ ସଂଗେ ଏବେ ?
ଯାଏ ବାବାଙ୍କୁ ମୁଁ କହେ''—ଚଞ୍ଚଳ ଶିଷ୍ୟରେ
ଅଟକାଇ ରଖେ ଗୁରୁ, ନିବିଡ଼ ସ୍ନେହରେ ।
ଡାକି କହେ, '' କିଛି ମୋର ନାହିଁ ଦରକାର,
ଘରେ ଯାଇ ଚିଠି ଦେବୁ ମାତ୍ର ବାରମ୍ବାର ।''

ରେଳ ଆସି ଉପସ୍ଥିତ, ଯେତେ ମୁସାଫେର
ଦଉଡ଼ନ୍ତି ଏଣେତେଣେ, ଅଳ୍ପ ମାତ୍ର ବେଳ,

ରହେ ଗାଡ଼ି ଏଠି । ଅଧ୍ୟାପକ ଅବିନାଶ
ଘେନିଲେଣି ସକୁଟୁମ୍ବ, ଉଚ୍ଚ ଏକ କ୍ଲାସ ।
କମଳ ବାହାରେ ଠିଆ । ଖୋଲି ବାତାୟନ,
ଦେଖୁଛନ୍ତି ଯାତ୍ରୀଙ୍କର ଗମନାଗମନ
କରୁଣା ଓ ମହାମାୟା । ଡାକିଲେ କମଳେ
ମହାମାୟା, ''ଶୁଣ ବାବା, ଫେରି ଯାଇ ଘରେ
ନିଶ୍ଚେ ଚିଠି ଦେବ; ବାପା, ମାଆ, ଭଗିନୀଙ୍କୁ
ଜଣାଇବ ଆମ ଶ୍ରଦ୍ଧା; ଆଣିବ ତିନିଙ୍କୁ
କେବେ ଏଥି, ଦେଖିବାରେ ବାସନା ଆମର,
ଗାଡ଼ି ଛାଡ଼େ......ଥାଆ ବାବା, ନମସ୍କାର କର
ମୂର୍ଖ ମିଟା, ମାଷ୍ଟରଙ୍କୁ—''...ଗାଡ଼ି ଛାଡ଼େ ଧୀରେ,
କରୁଣା କହୁଛି ଶେଷେ ବାତାୟନଟିରେ
ମୁଖ ରଖି; ହାତ କାଢ଼ି, 'ପତ୍ର ଦେବେ ଦାଦା'
ଗାଡ଼ି-ଗତି -ଶବ୍ଦ ତାହାପରେ ହେଲା ବାଧା ।

ପ୍ରଥମ ବିଚ୍ଛେଦ

ନିମିଷେ ଗଲାଣି ଗାଡ଼ି ଚକ୍ଷୁ ଅନ୍ତରାଳେ
କମଳ ତଥାପି ଚାହିଁଅଛି ସେହିଆଡ଼େ ।
ହୃଦୟର କୋହ ଆଉ ଚାପି ନ ପାରଇ
ଅଶ୍ରୁ ବହେ ଗଣ୍ଡ ଦେଇ, ରୁମାଲେ ପୋଛଇ ।
କମଳ ଫେରିଲା ଗ୍ରାମେ । ଜନନୀ, ପିଅର,
ଛୋଟ ଭାଇ, ନାନୀ, ପ୍ରତିବେଶୀଜନଙ୍କର
ହୃଦେ ରଚି ନବୋତ୍ସାହ । କହନ୍ତି ସମସ୍ତେ
''କମଳର ସ୍ୱାସ୍ଥ୍ୟ ଦେଖ ବଢ଼ିଛି କେମନ୍ତେ;''
କମଳ ଏ ସବୁ ନାହିଁ ପାରେ ଅନୁଭବି,
ନିଜେ ସେ ନୋହିଛି ମୁଗ୍ଧ ଦେଖି ମୁଖଛବି
କେବେ ସେ ଦର୍ପଣେ; ବରଂ ବେଳେବେଳେ ଭାଳେ
ନିଜ ପାଖେ ଚିତ୍ତେ ଠିଆ କରି କରୁଣାରେ
କେଡ଼େ ସେ କୁତ୍ସିତ, ସ୍ଥୂଳ, ଆକର୍ଷଣହୀନ,
କ୍ଷୀଣ ଆଶାଟିକ ତାର ହୁଅଇ ବିଲୀନ ।

ଗ୍ରାମର ଅନ୍ୟାନ୍ୟ ଟୋକା ଆସିଲେ ନିକଟେ
କହିଲେ ତା ପାଶେ ଯାହା ଘଟୁଛି ବା ଘଟେ

କିଏସେ ଦେଉଛି ବାଧା ଗ୍ରାମ-ସଂଗଠନେ,
କେ କରଇ ପ୍ରତିବାଦ ବାଳିକାପଠନେ,
କେଉଁ ବୃଦ୍ଧା ବିଧବାର ଏକହିଁ ଆଶ୍ରୟ
ନାତିଟିକି ନେଲା ଯମ, ତା' ବିଳାପମୟ
ଏବେ ଗ୍ରାମ୍ ତୋଟା, ବିଲ; ତର୍କବାଚସ୍ପତି
ପୁଣି କନ୍ୟା ଦେଇ ବୃଦ୍ଧେ, ଆଣିଛି ସମ୍ପତ୍ତି,
ମାଲେରିଆରୂପେ କିନ୍ତୁ କନ୍ୟା-ଅଭିଶାପ
ଧରିଛି ବୁଢ଼ାକୁ, ଏଇ ଥର ହେବ ସାଫ ।
ଏଇପରି ଛୋଟ ଛୋଟ ଗ୍ରାମର ଘଟଣା
ଗ୍ରାମଜନ ନେତ୍ରେ ଯାହା ହୁଏ ବଡ଼ ଜଣା,
ଅନ୍ୟ ସ୍ଥାନେ ସାମ୍ରାଜ୍ୟର ଉତ୍‌ଥାନ ପତନୁଁ,
କମଳ ଆଗ୍ରହେ ଶୁଣେ । ଶୈଶବ-ସ୍ମରଣୁଁ
ପ୍ରିୟ ପୀଠ ଏହି ଗ୍ରାମ, ପ୍ରତି ନରନାରୀ
ପ୍ରତି ବୃକ୍ଷ, ପ୍ରତି ଘର, ବିଲ, ତୋଟା, ବାରୀ
ଅତି ପରିଚିତ ତା'ର—ତେଣୁ ଅତି ପ୍ରିୟ,
ପ୍ରିୟ ତାର ଏ ଗ୍ରାମର ଭୋଜନ, ପାନୀୟ ।

କମଳର ଗ୍ରାମ

କ୍ରମେ କିନ୍ତୁ ପ୍ରିୟ ଗ୍ରାମ ଭାଙ୍ଗି ଭାଙ୍ଗି ଯାଏ
ଶିକ୍ଷିତ ଯେ, ଗ୍ରାମ ଛାଡ଼ି ସହରେ ପଳାଏ
ଚାକିରିର ଅନ୍ୱେଷଣେ; ପାଶୋରଇ ଗ୍ରାମେ ।
ଗ୍ରାମହିଁ ଦଳିତ ଏବେ ଜୀବନ-ସଂଗ୍ରାମେ;
ଯାହା ଥିଲା ସ୍ୱୟଂ-ପୂର୍ଣ୍ଣ;—ଏବେ ଆଉ ନାହିଁ
ସବୁଥିରେ ଗ୍ରାମ ରହେ ସହରକୁ ଚାହିଁ;
ଗ୍ରାମର ମାମଲା ହେଲା ବିଚାର ସହରେ,
ନବଶିକ୍ଷା ଅତ୍ୟାଚାରେ ଶାନ୍ତ ଗ୍ରାମ ମରେ ।

ଏଇ ଗ୍ରାମେ ଓଳିତଳେ କାବ୍ୟ-ଦରଶନ
ଯୁଗେ ଯୁଗେ ହୋଇଆସୁଥିଲା ଅଧ୍ୟାପନ,
ଏବେ କିନ୍ତୁ ପଢ଼ିବାକୁ ଉପକ୍ରମଣିକା
ଯାଆନ୍ତି ସହରେ ପିଲେ, କରି ଜମି-ବିକା ।
ଶିକ୍ଷିତମାତ୍ରକେ ହେଲେ ଆପଣା-କେନ୍ଦ୍ରିକ
ନିଜ-ପରିବାର-ପ୍ରାଣ, ଅତ୍ୟନ୍ତ ଦାମ୍ଭିକ ।

ପାସୋରିଲେ ପଲ୍ଲୀ-ମାତା, ରହିଲେ ସହରେ
ଗ୍ରାମ ପୁରେ ଦ୍ୱନ୍ଦ୍ୱକାରୀ ମୂର୍ଖଙ୍କର ଦଳେ ।

ଅରାଜକ ଗ୍ରାମ ଆଜି, ବହୁ ଦଳେ ଭଗ୍ନ
କ୍ଷୁଦ୍ର-କ୍ଷୁଦ୍ର-ଖଚ-ଳୁସା-ଚୁଗୁଲିରେ ମଗ୍ନ ।
ଦରିଦ୍ର ଶିକ୍ଷକ-ପୁତ୍ର କମଳର ସ୍ଥାନ
ଗ୍ରାମେ କାହିଁ ? ତା କଥାରେ କିଏ ଦେବ କାନ ?
କଲେଜର ଡିଗ୍ରୀ-ଧାରୀ ଅଛନ୍ତି ଅନେକ
ସେଇମାନେ ତ ମୋଡୁଛନ୍ତି ଗରିବଙ୍କ ବେକ;
ଏ ଦରିଦ୍ର ତରୁଣର କଥା କେ ଶୁଣିବ ?
କା' ଆଗରେ ଗ୍ରାମ ଦୁଃଖ ଯାଇ ଗୁହାରିବ ?
ସ୍ୱପ୍ନ କିନ୍ତୁ ରହିଅଛି କମଳ ଅନ୍ତରେ
ଗ୍ରାମଟିକି ସୁଧାରିବ । ଭାବେ ନିରନ୍ତରେ,
କେମନ୍ତେ ଆଦର୍ଶ-ଗ୍ରାମ ଏହାକୁ କରିବ
ସାମ୍ପ୍ରତିକ ସର୍ବ ଅଭିଶାପୁ ଉଦ୍ଧାରିବ ।
ଛୁଟିରେ ଆସିଲେ ତେଣୁ ସମବୟ ଦଳେ
ବରାବର କଥା କରେ ଏହି ବିଷୟରେ ।
କମଳର ଭାଗ୍ୟ ଭଲ, ପିତାଙ୍କଠୁ ତା'ର
ଏସବୁରେ ପାଇଥାଏ ଉତ୍ସାହ ଅପାର ।
ତେଣୁ ସର୍ବ ବାଧା ସତ୍ତ୍ୱେ ସଚେଷ୍ଟ ସେ ଥାଏ
କିଛି ଯଦି କା'ର ଉପକାର କରାଯାଏ ।

ବାହାରେ କରୁ ସେ ପଛେ ଜଗତ ଉଦ୍ଧାର
ଅନ୍ତରେ କରୁଛି ଅହର୍ନିଶ ହାହାକାର ।
ଡେରିଅଛି କାନ, ଆଖି, ଡାକବାଲା ପାଇଁ
ପ୍ରତିଶ୍ରୁତ ଚିଠିପତ୍ର କିପାଁ ଆସୁନାହିଁ !
କେଜାଣି ବା ଭୁଲିଗଲେ, ବଡ଼ଲୋକ ସେ ତ
ଲାଗିଥିବ ବଡ଼ ବନ୍ଧୁ-ମିତ୍ର ସଙ୍ଗେ ଭେଟ,
କିପାଇଁ ପଡ଼ିବ ମନେ ଘରୋଇ ଶିକ୍ଷକ ?
ମାତ୍ର ସେ ତ ଭୃତ୍ୟ ଏକ,ଗୃହାନ୍ନ ଭକ୍ଷକେ ।
ବାଲ୍ୟ ସୌଜନ୍ୟହିଁ ମାତ୍ର ନବୀନ ସଭ୍ୟତା
ମୁଖେ ମଧୁ ସମ୍ଭାଷଣ, ପେଟେ ବୀଭତ୍ସତା ।

ପରେ ଭାବେ, ''ନା, ନା, ଏହି ପ୍ରକାର ଶଠତା
ସେ କୁଟୁମ୍ବେ ଅସମ୍ଭବ । ସେ ଶୁଦ୍ଧ ମମତା,
ଈଶ୍ୱର-ନିର୍ଭରଭାବ କର୍ମ, ବଚନର,
ସେ କି ସମ୍ଭବଇ, ଥିଲେ କଳୁଷ ଅନ୍ତର ?
ଡାକଘର ଟିକେ ଦୂରେ; ନଥିବ ପିଅନ,
ସେଥିପାଇଁ ହୁଏ ଡେରି'' ତୁରନ୍ତ ବହନ
ପାଇଁ ନିଜ ଲୋକ ଗୋଟି ଇଚ୍ଛା ପଠାଇବା ।
ସନ୍ଦେହ-କରିବେ ଲୋକେ—ଚାହି ପାଣି ଥିବା ।

ଆସିଲା ଚିଟାଉ କିନ୍ତୁ । ସୁନ୍ଦର ସେ ଖାମ
କରୁଣାର ହସ୍ତାକ୍ଷରେ ଲେଖା ନାମଧାମ;
ଏସେନ୍‌ସରେ ସୁରଭିତ, ଶୁଁଘେ ବାରମ୍ୱାର
ଫିଟାଉ ଫିଟାଉ କମ୍ପେ ହୃଦୟ ତାହାର ।
ଖୋଲି ଦେଖେ ଦୁଇ ପତ୍ର—ଏକ ମିଟାଠାରୁ
ପ୍ରଧାନ ଯା'; ଅତିଶୟ କ୍ଷୁଦ୍ର, କିନ୍ତୁ ଚାରୁ
କାଗଜେ ଲିଖିତ ଆର ପତ୍ର କରୁଣାର,—
ତାକୁଇ ପଢ଼ଇ ଆଗ, ପଢେ ବାରମ୍ୱାର ।

ପ୍ରଥମ ପତ୍ର ବିନିମୟ

ଅଳ୍ପ କଥା ଲେଖିଛି ସେ, ''ପହଞ୍ଚିଛୁ ସୁଖେ,
ପୂଜାର ଉତ୍ସବ-ଊର୍ମି କଲିକତା ବୁକେ
ଅବାରିତ ବହିଯାଏ । ମୋର ଚିତ୍ତ ଚାହେଁ
ଯିବି କିନ୍ତୁ ଗ୍ରାମେ ଯହିଁ କପୋତଟି ଗାଏ
କରୁଣ ସଙ୍ଗୀତ, ତାର କପୋତିନୀ ପାଇଁ,
ଦୁହେଁ ବନାନୀର ଦୂର ଦୁଇ କୋଣେ ଥାଇ
ଅଦୃଷ୍ଟ ବିଟପୀକୁଞ୍ଜ, ସାରାଟି ସକାଳ;
ସବୁ ଶାନ୍ତ, ସୁନିର୍ମଳ, ମୁକ୍ତ, ନିର୍ଜଂଜାଳ ।
ତମେ ସୁଖୀ, ଜନ୍ମିଅଛ କୋଳେ ପ୍ରକୃତିର
ତା'ରି ପରି ତେଣୁ ତମେ ଉଦାର, ଗମ୍ଭୀର ।
ବାବା ଆଉ ମାଆ ସଙ୍ଗେ ବରାବର ପଡ଼େ
ତମ କଥା । ମନେଅଛ ସଦା ଏ ଚିତ୍ତରେ ।
ଆଶାକରେ ଭାଇ, ଭଗ୍ନୀ, ଜନନୀ ଗହଣେ,
ଆମକୁ ପକାଉଥିବ ମନେ କ୍ଷଣେ କ୍ଷଣେ ।''

ମିଟାର ଚିଠିଟି ଦୀର୍ଘ, କିନ୍ତୁ କିଛି ନାହିଁ ,
ଆସିଲୁ, ଖାଇଲୁ, ଗଲୁ, ପହଞ୍ଚିଲୁ ଠାଇଁ,
ଥରେ ମାତ୍ର ପଢ଼ି ତାକୁ, ଦେଲା ରଖି ସ୍ଥାନେ,
କରୁଣାର ପତ୍ରିଟିକି ଭରି ସେହି ଖାମେ
ରଖିଲା ପକେଟେ; ନିଜ ହୃଦ ସାନ୍ନିଧ୍ୟରେ,
କେ ନଥିଲେ, ବାରମ୍ବାର ପଢ଼େ ଖୋଲି ଧୀରେ ।
ସୂକ୍ଷ୍ମ ଗର୍ବେ ଆଜି ତାର ଫୁଲିଉଠେ ପ୍ରାଣ
କି ଭାଗ୍ୟବାନ୍ ସେ, ତାହା କି ଜାଣିବ ଗ୍ରାମ ?
ତରତରେ ଲେଖି ବସେ ପୁଣି ପ୍ରତ୍ୟୁତ୍ତର,
ଏଣୁ ଚିଠି ଗଲେ ପୁଣି ଆସିବ ଉତ୍ତର ।
ଛାତ୍ର ପାଖେ ଲେଖେ ପତ୍ର ଗତାନୁଗତିକ;
କି ଲେଖିବ କରୁଣାକୁ ? ହୁଏ ଅଗତିକ
ଲେଖନୀ ଧରିଲେ ହସ୍ତେ । ପୁଣି ପଢ଼େ ପତ୍ର
ନିରେଖି ପଂକ୍ତିକି ପଂକ୍ତି; ସମସ୍ତ, ସର୍ବତ୍ର ।

ପଚାରଇ ନିଜେ 'କାହିଁ ଗନ୍ଧ ପ୍ରଣୟର
ଏ ପତ୍ରେ ? ସମ୍ବୋଧ-ପଦ ଅବଶ୍ୟ 'ସ୍ନେହ'ର
କିନ୍ତୁ ସେ ତ ଏ କାଳରେ ପ୍ରଯୁଜ୍ୟ ସକଳେ;
ନିବିଡ଼ ସମ୍ପର୍କ କିପାଁ ଥିବ ତାହା ତଳେ ?
ବହୁ ଭାବି, ଭୟେ ଭୟେ, କରୁଣାର ପରି
ଠିକ୍ ଏକ ପତ୍ର ଲେଖେ ।
''ପାଇଲି ତୁମ୍ଭରି
ହସ୍ତାଙ୍କିତ ସ୍ନେହପତ୍ର, ଶତ ଧନ୍ୟବାଦ ।
ଅକୁଶଳ କିଛି ନାହିଁ ଆମ୍ଭର ସମ୍ବାଦ ।
କିନ୍ତୁ ଯାହା ଅଛି ପଲ୍ଲୀ ତୁମ୍ଭ କଳ୍ପନାରେ
ବାସ୍ତବରେ ନାହିଁ ତାହା । ସଭ୍ୟତା-ଘାଆରେ
ବିକୃତ ତା' ସୁସ୍ଥ ଦେହ, ପୋଚା ତା ଅନ୍ତର;
ସହରର ବିଷେ ଆଜି ପଲ୍ଲୀ ଜରଜର ।
ନିଜ-ଗ୍ରାମ ଦଶା ଦେଖି ହୁଏ ମୁଁ ହତାଶ,
ଉଦ୍ଧାରିବା ପାଇଁ ଯାକୁ କଲେ ଯେତେ ପ୍ରାସ;
ନାନା ବାଧା ପହଞ୍ଚୁଛି, ନାହିଁ ହାତେ ଧନ,
ନାହିଁ ଅଛି ସହଯୋଗ, ଅବା ସଂଗଠନ ।

ତଥାପି ଲାଗିଛି କାମେ । ଦରିଦ୍ର ଅଧମେ
ବଡ଼ ବଡ଼ ବନ୍ଧୁମେଳେ ରଖିଛ ଯା' ମନେ
ସେଇ ବଡ଼ ଭାଗ୍ୟ ମମ । ମିଟାର ପତ୍ରରୁ
ବୁଝିବ ଅନ୍ୟାନ୍ୟ ସବୁ । ପୁଣି ତବ କରୁ
ପତ୍ର ପାଇଁ ଆଶାକରି ରହିଲି ଅନାଇ,
ବାବା-ମା'ଙ୍କୁ ଦେବ ମୋର 'ନମସ୍ତେ' ଜଣାଇ ।''

ଇତିମଧ୍ୟେ ସଙ୍ଗ ଦେଖି କମଳର ନନା
ପଢ଼ାଇଲେ ପରିବାରେ ଯେ ପତ୍ର ରଚନା
କରିଥିଲା ସେ କମଳ ପିତାଙ୍କୁ ପଚାରି,
ସଂସାରୀ ସେ ହେବ, ଅବା ଜନସେବାକାରୀ ।
ଭାଇନା କହିଲେ ଶୁଣି ''ତାଙ୍କୁ ତାହା ସାଜେ
ଯା'ର ଘରେ ଜମି ଜମା ସମ୍ପତ୍ତି ବିରାଜେ ।
ଦେଶସେବା କରେ ସିନା ଗୋପବନ୍ଧୁ ଦାସ,
ଭାଇ ତାର ବଢ଼ାଉଛି ପଇତୃକ ଚାଷ
ପ୍ରତିବର୍ଷ । ତମର ତ ଖାଇବାକୁ ନାହିଁ,
ନିଜେ ସେବ, ବ୍ୟଗ୍ର କିପାଁ ପରସେବା ପାଇଁ ?''
ଜନନୀ ଏସବୁ କିଛି ବୁଝନ୍ତି ତ ନାହିଁ,
କହିଲେ କେବଳ ଦ୍ୱାର ଅନ୍ତରାଳେ ଥାଇ
''ତା ସାଙ୍ଗର ପିଲାଙ୍କର ବୋହୂ ଆସି ଘରେ
ଖଟିଲେଣି ବର୍ଷେ ବର୍ଷେ, ମୋର କମଳରେ
କନ୍ୟା କି ଅଘଟ ସତେ ? ଚାହିଁଛନ୍ତି ପରା
କେତେ ମାଆ କନ୍ୟା ଧରି, କର ବୁଝାପଢ଼ା
ଶୀଘ୍ର,—କାଳେ ମରିଯିବି ! ପୁଣି ଜନରବ
ସେ କାଳେ ଖ୍ରୀଷ୍ଟାନ ଘରେ ତେଣେ ବିଭାହବ ।
କାହିଁକି ଅଜାତି ହେବ ? ନଥିବା ସୁନ୍ଦରୀ
ବୋହୂଟିଏ ପିଲା ପାଇଁ ମୋର ଆଣ ଧରି ।''

କହିଲେ କମଳ-ପିତା ''ବାବା, ଆଉ ପଢ଼;
'କି-କରିବି' ଏଥିପାଇଁ ନୁହ ତରତର ।
କର ଆଗେ ନିଷ୍ଠା ସହ ଜ୍ଞାନ ଅରଜନ,
ଅଜ୍ଞ, ଦେଶେ କରିପାରେ କି ସେବା ଅର୍ପଣ ?
ତିଳକ, ମାଲବ୍ୟ ଆଦି ଯେତେ ଯେତେ ନେତା

ଦେଖୁନୁ କି କେମନ୍ତେ ସେ ନାନା-ଶାସ୍ତ୍ର-ବେତ୍ତା ?
ଦେଶସେବା ନୁହେ ଖାଲି ବାଣ୍ଟିବା ତଣ୍ଡୁଳ
ଅବା ଗାଳିଦେବା ଇଂରାଜଙ୍କୁ ହୋଇ ଠୁଳ ।
ଦେଖୁଛୁ ପାରୁନୁ ଛୋଟ ଏ ଗ୍ରାମେ ସୁଧାରି
ଭାବୁଛୁ କେମନ୍ତେ ହେବୁ ଦେଶ-ସେବାକାରୀ ?
ଜ୍ଞାନେ ଧନେ ମନେ ମହତ୍ତର ଜନତାରୁ
ହେଲେ ସିନା ଜନତାକୁ ସଙ୍ଗେ ରଖିପାରୁ ?
ନ ହେଲେ କିଏ ସେ କିପାଁ ମାନିବ ତୋ କଥା
ମନରେ ମାରିବୁ ଖାଲି ନିଜ ମନୋବ୍ୟଥା ।

କମଳର ପିତାଙ୍କ ନିକଟକୁ ପତ୍ରର ଆଲୋଚନା

ଗୋପବନ୍ଧୁ, ଲୋକମାନ୍ୟ ବାଣ୍ଟି କି ଚାଉଳ ?
କିପାଇଁ ହୁଅନ୍ତି ଲୋକେ ତା ପାଖରେ ଠୁଳ ?
କେମନ୍ତେ ସେ ବାଗ୍ମୀ ଦେଖ, କି ଗଭୀର ଜ୍ଞାନ,
କି ସୁନ୍ଦର ଲେଖା ତାର ମଧୁର, ମହାନ;
ଲୋକୋତ୍ତର ଥିବାରୁ ସେ ଲୋକ ତାକୁ ମାନେ;
ଲୋକୋତ୍ତର ହୁଅ ତୁହି ଚରିତ୍ରେ ବା ଜ୍ଞାନେ ।
ସେତେବେଳେ ବାଛି ନେଇ ଚାଲିବୁ ଯେ ପଥ,
ତୋ ପଛରେ ଯିବେ ବାପା, ବୋଉ ଓ ଜଗତ ।''

ସେ ଦିନ ରାତ୍ରିରେ ବାପା ଶୋଇଥିବା କାଳେ
ସନ୍ତର୍ପଣେ ମୋଡ଼ି ପାଦ, ପ୍ରାୟ-ଅନ୍ଧକାରେ
କମଳ କହଇ ଅଶ୍ରୁ ଗଦ୍‌ଗଦ ଭାଷେ,
''ନନା, ମୁଁ କରୁଛି କ୍ଷମାଭିକ୍ଷା ତବ ପାଶେ,
ଯଦି ସେ ପତ୍ର ମୋ' କଷ୍ଟ ଦେଇଥିବ କାଳେ
ତବ ହୃଦେ; ଲଜ୍ଜିତ ମୁଁ ନିଜ କ୍ଷୁଦ୍ରତାରେ ।''
ଟାଣି ତାରେ ବକ୍ଷପାଶେ, ଅଙ୍ଗୁଳି ସଂଚାଳି
ଦେହେ ତାର କହିଲେ ସେ, ''ଖୁସି ମୁଁ ରେ ଭାରି
ସେ ପତ୍ର ପଢ଼ି ମୁଁ ହେଲି । ମୁଁ କି ଚାହିଁବିରେ
ହେବୁ ତୁହି କ୍ଷୁଦ୍ର ପୁତ୍ର-କନ୍ୟା ପରିଧିରେ
ଆବଦ୍ଧ ନିଜକୁ ରଖି ? ମୋ ଦେଶ, ମୋ ଜାତି,
ହେଉ ତୋର ପରିବାର, ସାରା ଦେଶ ମାଟି
ହେଉ ତୋର କ୍ରୀଡ଼ାକ୍ଷେତ୍ର । ଗୌରବ ସେ ବଡ଼;
ତା'ଠାରୁ କି ବଡ଼ କଥା ଭାର୍ଯ୍ୟା, ଜମି, ଘର ?

ନ ଭୁଲିବୁ କିନ୍ତୁ ତୁହି, ଘର-ଉପକାର
ପର ଉପକାର ପରି ଦେଶେ ଦରକାର ।
ଏ ଦେଶର ପତି-ପତ୍ନୀ ଇଂରାଜ ଦମ୍ପତି
ପରି ଯଦି ଗଢୁଥାନ୍ତେ ନିଜର ସନ୍ତତି,
ସେପରି ଚଳାନ୍ତେ ଘର, ଆମେ ଦାସଜାତି
ରହନ୍ତେ କି ? ଭିନ୍ନ ନୁହନ୍ତା କି ଏଇ ମାଟି ?''

ଉତ୍ତର ଆସିଲା ତେଣୁ । ଏଥର କେବଳ
କରୁଣାର ହାତ-ଲେଖା, ଅମୂଲ୍ୟ ସମ୍ବଳ ।
ଲେଖିଛି ସେ '' କମଳଦା, ପରମ ସ୍ନେହର,
ଦେଖୁଛି ସରଳ ନୁହଁ, ସାବଧାନୀ ବଡ଼ ।
ଆଫିସିକ ପତ୍ର ପରି ମାପିଚୁପି ଲେଖା
ତମ ପତ୍ର, ରଖିଅଛି ଦୈର୍ଘ୍ୟ, ପ୍ରସ୍ଥ, ରେଖା
ସମାନ ମୋ ପତ୍ର ସଙ୍ଗେ । ହୋଇଥିଲେ ବଡ଼
ହାନି ହୋଇଥାନ୍ତା ବୋଧେ ଆତ୍ମସମ୍ମାନର !
ଚିଠି ଯଦି ଦବ, ତାର ଥିବ ଦୈର୍ଘ୍ୟ, ପ୍ରସ୍ଥ
ଭଲଭାବେ । ଦେବ ତବ ସମ୍ବାଦ ସମସ୍ତ
ସବୁ ଟିକିନିଖି କଥା ଘର ଓ ଗ୍ରାମର,
ଜାଣିବାକୁ ଚାହେ ଜଣେ ସମଗ୍ର ତୁମର ।
ଚିଠି ଦେବ ପୁଣି । କିନ୍ତୁ ଫେରୁଅଛୁ ଆମେ
କଟକ ସପ୍ତାହ ପରେ । କଟାଇବ ଗ୍ରାମେ
ସମଗ୍ର ଛୁଟିଟି ଅବା ଆଗୁଁ ଆସିପାର
ପତ୍ରେ ଜଣାଇବ ତାହା । ଏଠାରେ ମିଟାର
ଚଗଲାମି ବଢ଼ିଅଛି ଚତୁର୍ଗୁଣ ଯାଏଁ
ବଜାରେ ବଜାରେ ବୁଲେ, ଘରେ ନାହିଁ ଥାଏ ।
ଚିଠି ଦେବ, ରହିଲି ମୁଁ ଇତିଶ୍ରୀ କରୁଣା
କମଳଙ୍କ ଦୟା ତା'ଠି ନାହିଁ ହେବ ଊଣା' ।

ପତ୍ର ପାଇ ଆଦ୍ୟେ ହୁଏ କମଳ ସ୍ଥବିର,
କିଛି ନାହିଁ ଭାବିପାରେ । ତା ପରେ ଗଭୀର
ଚିନ୍ତାରେ ବୁଡ଼ଇ ଚିତ୍ତ । କିଏ ଏ ବାଳିକା ?
କି ଚାହେଁ ସେ ? ନିଜେ ସେ ଯେ ହୃଦୟ ବେଦିକା
ତିଆରୁଛି ତାହା ପାଇଁ, କିବା ଅର୍ଥ ତାର ?

କିବା ସେ ଜାଣଇ ତାର ? ଖଣ୍ଡ ଅବା ଖୋର ?
ସତେ କି ସେ ସ୍ନେହ ଚାହେଁ ? କି'ବା କମଳର
ଅଛି, ହେବ ଆକର୍ଷଣ ନାରୀ-ହୃଦୟର ?
ବିଶେଷେ କରୁଣା ପରି ଅତି ଲୋଭନୀୟା,
ଯା କଟାକ୍ଷେ ଚାହିଁଅଛି ଶତ ଯୁବା ହିୟା,
ସେ କିପାଁ କମଳ ପରି ଦୀନ ଦରିଦ୍ରର
ସ୍ନେହ-ଭିକ୍ଷା ଯିବ କରି ? ମହାସମୁଦ୍ରର
ତରଙ୍ଗେ ମିଶିବା, ନଦୀ ସ୍ରୋତ ସ୍ୱାଭାବିକ,
ବିଲେ ଯଦି ପଶେ ସେ ତ ଦୃଶ୍ୟ ବିଭୀଷିକ ।
କିନ୍ତୁ ସେ ଲେଖଇ ପତ୍ର, ସ୍ନେହ ଦାବି କରି,
ବ୍ୟବହାର କରେ ଘରେ ଆପଣାର ପରି
ମନେପଡ଼େ, ଚାହିଁଥାଏ ସତୃଷ୍ଣ ନୟନେ,
କମଳ ବାହାରେ ଗଲେ, ମୁକ୍ତ ବାତାୟନେ,
ମୁଖାମୁଖି ହେଲେ ବେଳେ, ଫେରି ଚାହିଁବାରେ
ସ୍ମିତ ହସି, ବନ୍ଧୁ ଭାବେ କମ୍ର ହାତ ଠାରେ ।
ମୁଁ କି ତା ପ୍ରଥମ ସ୍ନେହ ? ଅଥବା ଚାତୁରୀ
ଏ ସମସ୍ତ,—ନାରୀଜନ ହୃଦେ ଥାଏ ପୂରି
ବୋଲି ଯାହା ଶୁଣାଅଛି—ଛି ଛି ଏକି କରେ
କରୁଣାକୁ ଦେଖେ ପୁଣି ସନ୍ଦେହ-ନେତ୍ରରେ !
କ୍ଷମା କର, କ୍ଷମା କର, —କାନ୍ଦଇ ବ୍ୟାକୁଳେ
ବ୍ୟଥାର ତରଙ୍ଗ ପିଟେ ହୃଦ କୂଳେ କୂଳେ ।
ନବୀନ ଯୌବନେ ଏହି ପ୍ରଥମ ପ୍ରମାଦ
ଚିତ୍ତେ ଚିତ୍ତେ ବନ୍ଧାବନ୍ଧି, ହୃଦୟେ ବିବାଦ,
ସମଗ୍ର ଶରୀର ମନେ ଜଣକୁ ଚାହିଁବା
ଅନ୍ତରର ତଳେ ତଳେ ସ୍ପର୍ଶ ତା' ଖୋଜିବା,
ତାକୁ ଘେନି କଟାକଟି ଆଶା-ନିରାଶାର
ଲାଗିବାରୁ, ନିରନ୍ତର ପ୍ରାଣେ ହାହାକାର ।

ତେଣେ ମହାନଗରୀର ଉତ୍ସବ-କଲ୍ଲୋଳେ
ମୁଖରିତ ନିଜ ଗୃହ ପ୍ରମୋଦିତ ଗୋଳେ ।
ଆନନ୍ଦର ହସ ହସି ସଖାସଖୀ ସନେ,
ଯୋଗଦିଏ ପୂଜୋତ୍ସବେ ଭବନେ ଭବନେ,

ଅନ୍ତରେ ଜଳୁଛି କିନ୍ତୁ ନୂତନ ମଶାଲ୍‌ଁ
ନୀରବେ ଆଚ୍ଛାଦି ତାପ, ଆଲୋକ ତାହାର
ନିଜର ତରୁଣ ବକ୍ଷେ, ଦିନ ଅତିପାତ
କରଇ କରୁଣା, ବହି ନବ ବିପତ୍‌ପାତ;
ବହେ ବର୍ଷା-ମେଘ ଯଥା ବାରି ଓ ବିଦ୍ୟୁତ୍
କୃଷ୍ଣ, ମୌନ କାନ୍ତି ତଳେ । ନୂତନ ଉଦ୍ଭୂତ
ହୃଦକ୍ଷେତ୍ରେ ପ୍ରଣୟର ନୂତନ ଅଙ୍କୁର,
ମଞ୍ଜରୀତ ହୁଏ ନିତ୍ୟ ନିଷେକେ ଅଶ୍ରୁର
ନିରୋଳ ନିଶୀଥ ଶେଯେ । ନବୀନ ବିରହ
ହେଲା ସେ ତରୁଣ ବୃକ୍ଷେ ଶକ୍ତିର ଆବହ
ଉଷ୍ଣ ସୂର୍ଯ୍ୟକର ସମ । ଯହିଁ ଯାହା କରେ
କରୁଣାର ଚିତ୍ତ ଯାଇଁ ଦୂର କମଳରେ ।
ସେ ମଧ୍ୟ ବିଜନ ଘରେ ଶୋଇଣ ଉତ୍ତାନେ
ବାରମ୍ବାର କମଳର ପତ୍ର କାଢ଼ି ଆଣେ
ବକ୍ଷ ଆଚ୍ଛାଦନ ତଳୁ, ପଢ଼େ ପୁଣି ପୁଣି
ଚୁମ୍ବେ, ଆଘ୍ରାଣଇ, ସ୍ପର୍ଶେ, ଡାକେ ଗୁଣି ଗୁଣି
ଚିତ୍ତେ କମଳାଦା ନାମ, ନେତ୍ରୁ ତପ୍ତ ବାରି
ଅଜାଣତେ ବହିଯାଏ ଗଣ୍ଡରେ ବାହାରି ।

ପ୍ରଥମ ବିରହ କିନ୍ତୁ ଶୀଘ୍ର ହୁଏ ଶେଷ,
ନ ପାଉଣୁଁ ପ୍ରଣୟୀଏ ଅଧିକ କେଲେଶ ।
ଯୁକ୍ତ ହେଲେ ପୁଣି ଆସି କଟକ ଭବନେ
ସ୍ମିତ-ମୁଖ ଦୁହେଁ ପରସ୍ପର ଦରଶନେ ।
ଦୁହେଁଯାକ ନିରନ୍ତର ବିବିକ୍ତ-ଆଶାୟୀ;
ଖୋଲିଦେବେ ଏକ ଆନ ହୃଦ, ପାଖେ ପାଇ ।
ସହଜେ ନ ପଡ଼େ ଯୋଗ । ଛୁଟି ଅଛି ବାକି,
ଅବିନାଶ ଘରେ ସଦା । କରୁଣା ବରାକୀ
ଜନନୀର ଚକ୍ଷୁ ତଳେ କାଟେ ଅହର୍ନିଶି,
କମଳର କାଳ କଟେ ମିଟା ସଂଗେ ମିଶି ।
ଚାରିଚକ୍ଷୁ ହୁଏ ମାତ୍ର ଦିନେ ବହୁବାର
ସେତିକିରେ ତୁଷ୍ଟ ଦୁହେଁ । ଦୁହେଁ ହୁସିଆର ।

ସପତ୍ନୀକ ଅବିନାଶ ଭୋଜ୍ୟ-ନିମନ୍ତ୍ରଣେ
ଯାଉଁ ଦିନେ ସନ୍ଧ୍ୟାକାଳେ, ଏ ପ୍ରଣୟୀ ଜନେ
ମିଳିଲା ସୁଯୋଗ ଏକ । ଗଳ୍ପପାଠେ ରତ
ମିଟା ରହେ ପଢାଘରେ । ଯୁଗ୍ମ ପକ୍ଷୀବତ
କମଳ କରୁଣା ଗଲେ ଉପରର ଛାତେ
କମ୍ପିତ ହୃଦୟେ, କିନ୍ତୁ କ୍ଷିପ୍ର ପଦ-ପାତେ ।
ସେଦିନ ଜୋଛନା ରାତ୍ରି,—ନିର୍ମେଘ ଆକାଶ
ଚାରିଆଡ଼େ ଆନନ୍ଦର ନିବିଡ଼ ପ୍ରକାଶ,
ମନ୍ଦ ବହେ ସମୀରଣ, ଶୁଭ୍ର ଜ୍ୟୋତ୍ସ୍ନାତଳେ
ଠିଆହେଲେ, ପ୍ରାଣ ଚାହେ ଦୋସର ପାଶରେ ।
ଛାତ ଏକ କୋଣେ ଦୁହେଁ କାନ୍ଥ ଆଶ୍ରା କରି
ହେଲେ ଠିଆ; କମଳର ବକ୍ଷ ଯାଏ ଥରି
ଉଠିବାର ଶ୍ରମୁଁ, ପୁଣି ଥିବାରୁ କରୁଣା
ନିକାଞ୍ଚନେ ଏକ ପାଖେ; ମନର ଫୁରୁଣା
ଉଡ଼ିଯାଏ, ଭୟେ ଜାତ ପ୍ରଖର ନିଶ୍ୱାସ,
ଲୁପ୍ତ ନିଜଠାରୁ ହୁଏ ସକଳ ବିଶ୍ୱାସ ।
ନିର୍ଭୀକ କରୁଣା କିନ୍ତୁ । ଘୁଞ୍ଚିଆସେ ପାଶେ
ଧରେ ହାତ କମଳର, ମଧୁସ୍ମିତ ହାସେ,
କହେ କଥା—" ଅକାରଣ କରୁଛ କି ଶଙ୍କା ?
ନିଶ୍ୱାସ ଛାଡୁଛ ବେଗେ, ଦିଶୁଛ ତାଟଂକା !
ଭୟ କିସ ? ଆସ ବସ—" ବସାଇଲା ତଳେ
ନିଜେ ମଧ ବସେ ତାକୁ ଲାଗି ନିକଟରେ ।
ଛୋଟ ଛୋଟ ପ୍ରଶ୍ନ କରେ, ଭାଙ୍ଗିବାକୁ ଭୟ,
ଗାଆଁରେ କେମନ୍ତେ କଟୁଥିଲା ତା' ସମୟ
ଘରେ କିସ କରୁଥାଏ ବିଧବା ଭଗିନୀ ?
ମନେ କି ପକାଏ ସ୍ୱାମୀ ସେ ହତଭାଗିନୀ ?
କିଏ ତା'ର ଅଛି ଆଉ ଏବେ ଶାଶୁଘରେ ?
ସାନଭାଇ କିପରି ବା ପଢ଼େ ଇସ୍କୁଲରେ;
ଇତ୍ୟାଦି ଇତ୍ୟାଦି ପ୍ରଶ୍ନ । ନ କରି ଅପେକ୍ଷା
କମଳର ପ୍ରଶ୍ନେ, କହିଯାଏ ହେଲା ଦେଖା
କି କି ନୂଆ କଥା କଲିକତାରେ ଏଥର,
ଧରି ସାଉଁଳଇ ଧୀରେ ହସ୍ତ କମଳର ।

ମନ ବିନିମୟ

କମଳ ହୋଇଲା କ୍ରମେ ଅନେକ ଆମ୍ବସ୍ତ,
ଉତ୍ତରଇ କରୁଣାର ଜିଜ୍ଞାସା ସମସ୍ତ;
ନିଜେ ବି ଓଲଟି କରେ ପ୍ରଶ୍ନ ଏକ ଏକ,
ମୁଗ୍ଧେ ମୁଖଛବି ତାର କରୁଛି ନିରେଖ ।

ପଚାରେ କରୁଣା ଶେଷେ, —''ଶ୍ରେଷ୍ଠ ଅଭିଳାଷ
କିବା ତବ ଜୀବନରେ ? ପଠନ-ନିକାଶ
କଲାପରେ କାହିଁ ଯିବ ? କହିବନି ମତେ ?
ଆମେ କି ସେ ଗୋପ୍ୟ ଶୁଣିବାକୁ ପାତ୍ର ସତେ ?
କହିବନି ଅବା—''

ବାଧା ଦିଅଇ କମଳ
''କହିବାର କିବା ଅଛି, ଜାଣ ପୂର୍ବାପର;
ଚାକିରି ମୋ ଇଚ୍ଛା ନୁହେଁ, ଦେଶର ସେବାରେ
ଭାଗ୍ୟବାନ୍ ହେବି ଯଦି କିଛି ଲାଗିପାରେ ।''

''ଅତ୍ୟନ୍ତ ଉତ୍ତମ କଥା । ଦେଶ ଏହା ଚାହେଁ''
କହଇ କରୁଣା,'' ଶୁଣି ବଡ଼ ସୁଖ ପାଏ ।''
ପୁଣି କହେ ହସି ହସି '' ମତେ ସାଥୀ କର,
ନାରୀ ବୋଲି କିଛି କ'ଣ ସେବା ଏ ଦେଶର
ନ ପାରିବୁ କରି ଆମେ ?''

ଚମକେ କମଳ,—
''ତମେ ହେବ ସାଥୀ ଆମ ? କୁସୁମ-କୋମଳ
ଚରଣ ଚାଲିବ କାହୁଁ ରୁକ୍ଷ ହିଡ଼ମାଳେ,
ସେ ତ ଦୂରକଥା—ପାଦ ପଡ଼ିଛି ଗାଆଁରେ ?
ଦେଖିଛ ଦେଶର ଚାଷୀ ରହନ୍ତି କିପରି
କି ଖାଇ, କେମନ୍ତ ବାସେ, ଜନ୍ମ-ଜନ୍ମଧରି ?''
ଉତ୍ତରେ କରୁଣା, ''ସତେ ନଦେଖିଛି ଗାଆଁ,
କିନ୍ତୁ ମୋର ତାହା ପ୍ରତି ଚିରନ୍ତନ ମାୟା ।
ଅଯୋଧ୍ୟାର ରାଣୀ ସୀତା କାଟିଲେ ଜୀବନ
ପଥହୀନ ବଣେ ବଣେ; ଆମେ କିବା ଜନ
ନ ପାରିବା କରି ଏଇତକ ଦେଶ ପାଇଁ ?
ଆନନ୍ଦେ ରହିବି ତମ ଗାଆଁ ଘରେ ଯାଇ ।

''ଆମ ଘର ! ଛି'ଛି ଛି' ଛି—ନେବି ମୁଁ ସେଠାକୁ
ତମକୁ !''—କମଳ କହେ ହସି କରୁଣାକୁ,
''କୁଡ଼ିଆରୁ ହୀନ ସେ ଯେ ବାତାୟନ-ହୀନ
ତମର କଳ୍ପନା ନାହିଁ, ଆମେ କେଡ଼େ ଦୀନ ।''

ଉତ୍ତରଇ ସୁଚତୁରୀ ଦୁଷ୍ଟ ହସ ହସି
''ତେବେ, ତେବେ''—କମଳର ହୃଦୟ ପରଶି—
ଏଇଠାରେ ଦିଅ ହେଲେ ଟିକେ ମତେ ଥାନ,
ସେଠି ବି କି ଅରଗଳ ହେବ ଧନ, ମାନ ?''

ଧରିଲା କରୁଣା-ହସ୍ତ ବକ୍ଷେ ଚାପି ତା'ର,
କମଳ, ଡାକିଲା ଧୀରେ ନାମ କରୁଣାର ।
ଚାରିଚକ୍ଷୁ ହେଲା କ୍ଷଣେ । କରୁଣା ତା'ପରେ,
କମଳର ବକ୍ଷେ ଆଉଜାଇ ଅବଶରେ ।
ସାଉଁଟି କମଳ ଧରେ, ବକ୍ଷେ ବକ୍ଷ ଥୋଇ,
ନିବିଡ଼ରେ ଥରେ ଚାକି, ଅଶ୍ରୁ ଯାଏ ବୋହି
ଉଭୟର ନୟନରୁ, ସୁଖେ, ଅଭିମାନେ;
ନିମଜ୍ଜିତ ପରସ୍ପରେ ଅନ୍ୟୋନ୍ୟେ ଆଘ୍ରାଣେ ।

ମୁକୁଳାଇ ନିଜ ଦେହ ଘନ ଆଶ୍ଳେଷରୁ
କରୁଣା ଉଠଇ ତ୍ୱରା, କହେ ''ବନ୍ଧୁଘରୁ
ବାବା-ମା' ଫେରିବା ବେଳ ହେଲା ବୋଲି ଜାଣ
ଯାଏଁ ଚାଲି କକ୍ଷେ ମୋର, ଅଟକାନା ରାଣ ।
ଭେଟିବାର ପୁଣି ଯୋଗ ଅଛି ବୋଧେ କାଲି,
କହିବାର ଅଛି ମୋର କଥା ଦୁଇ-ଚାରି;
ଆସିବ ନିଶ୍ଚୟ ।'' କହି, ପ୍ରଣମି ଚରଣେ
କମଳର, ହସି ନିମ୍ନେ ଚଳଇ ଭବନେ
ଏକ-ଧାରା ବାୟୁପରି । ବିହ୍ୱଳିତ-ଚିତ୍ତ
କମଳ ବସିଥେ ଛାତେ ଭୀତ, ଉଲ୍ଲସିତ ।

ତା'ପର ସନ୍ଧ୍ୟାରେ ଯେବେ ମିଳିଲେ ଉଭୟେ
ସେହି ଛାତେ, ପ୍ରିୟ ସଙ୍ଗ-ଉଦ୍‌ବିଗ୍ନ-ହୃଦୟେ,
କରୁଣା ପ୍ରଣମି ପାଦେ ପ୍ରିୟ କମଳର
ଉପହାର ଥୁଏ ତଳେ—ରୌପ୍ୟ ରିଭଲଭର !

'ଏ କିସ ! ଏ କିସ ! କହି ଚମକେ କମଳ
କରୁଣା ସସ୍ନେହେ ଘେନି କମଳର କର
ଟାଣି ଅନ୍ୟ ସ୍ଥାନେ, କହେ " ଆସ ମୁଁ କହିବି;
ଭାବନିମ ରିଭଲ୍‌ଭରେ ତମ୍ଭକୁ ମାରିବି !
ନିଜକୁ ମାରିବି ବରଂ, ଯଦି ମୁଁ ନ ପାଏ
ଯାହା ମୁଁ କରିଛି ଆଶା ମୁଁ ତୁମ୍ଭର ପାୟେ ।"
ତା'ପରେ ବସାଇ ସ୍ଥାନେ ସୁଷ୍ଠେ କମଳକୁ
ଅଳଙ୍କୃତ କରି ନିଜ ମାଥେ ତା କୋଳକୁ,
କହିଲା ସେ କଥା ତାର

"ଅଟେ ମୁଁ ମେମ୍ବର
ସଂତ୍ରାସକ ଦଳେ,—ଏଥୁ ନାହିଁ ଗୁହ୍ୟତର
କିଛି କଥା—କହେ, ଯେଣୁ ତମଠି ବିଶ୍ୱାସ ।
ବହୁଦିନଧରି ପ୍ରାଣେ ଲାଗିଛି ପ୍ରୟାସ
ଜଣେ କା'ରେ ପ୍ରାଣ ଖୋଲି କହିବି ସକଳ
କାହିଁ ସେଇ ଜୀବନର ଏକାନ୍ତ ଦୋସର !
ଯେଦିନ କଲେଜେ ତମେ ଦେଲ ସେ ବକ୍ତୃତା
ମୁଁ ଥିଲି ସେ ସଭାସ୍ଥଳେ; ଛାଡ଼ି ଲଜ୍ଜା କୁଣ୍ଠା
ଚିତ୍ତ ମୋ କହିଲା ମତେ 'ଏଇ ସେହି ସେହି
ଖୋଜୁ ଯା'ରେ, ସାଥୀ ତୋର ହେବ ସବୁ ନେଇ'
ତା ପରେ ମୁଗ୍ଧ ଚକ୍ଷେ ତମ ପରୋକ୍ଷରେ
ତୁମରେ ମୁଁ ଦେଖୁଥାଏ । ଆସି ଆମ ଘରେ
ତମର ରହିବା ମୂଳେ ମୋହରି ପ୍ରଯତ୍ନ ।
ତମେ ଜାଣ, ନାରୀ ଚାହେଁ ଭୋଗ ଅସପତ୍ନ ।
ଉଦାର ହୃଦୟ, ପୁଣି ଚରିତ୍ର ନିର୍ମଳ,
ଫୁଟିଉଠୁଥିବ ମୁଖେ ରୂପ ଅନ୍ତରର,
ରସେ ଭରା ଚିତ୍ତ, ପୁଣି ରୁଚି ଗରିୟାନ,
କ୍ଷୁଦ୍ର, କ୍ଷଣିକର ଊର୍ଦ୍ଧ୍ୱେ ଥିବ ଯା ଧିଆନ,
ସତ୍ୟବାକ, ଆତ୍ମ-ପୂର୍ଣ୍ଣ, ନିର୍ଭୀକ, ମଧୁର,
ଦରିଦ୍ର ହେଉ ସେ ପଛେ, ହେଉ ନୀଚ କୁଳ,
ଏପରି ବୟସ୍ୟ ଖୋଜୁଥିଲି ମନେ ଧ୍ୟାନେ
ସାଥୀ ବୋଲି ବରିନେବି ଯାଙ୍କୁ ସସମ୍ମାନେ,

ଗଢ଼ିବି ଜନନୀ ପରି ଆପଣାର କରି,
ପାଥେୟ ମୋ ପଥେ ହେବ ପ୍ରଣୟ ଯାଙ୍କରି ।
ମୋ ପଥ କଠିନ ଜାଣ, ମୃତ୍ୟୁ ପଦେ ପଦେ—
ଜୀବନ ମୁଁ କାଟେ ଚିର ଆସନ୍ନ ବିପଦେ ।
ପ୍ରାଣ ପ୍ରତି ଲୋଭ ଯେହ୍ନେ ଯକ୍ଷ୍ମା ରୋଗୀଙ୍କର,
ଅନିଶ୍ଚିତ ଭବିଷ୍ୟତ କଲା ମୋ ଅନ୍ତର
ବ୍ୟାକୁଳ, ପ୍ରାଣର ସେହି ସାଥୀ ଅନ୍ୱେଷଣେ
ମୃତ୍ୟୁ ହେବ ସୁଖକର ଯା' ନାମ ସ୍ମରଣେ ।
ତମକୁ କରିଛି ସ୍ନେହ, ଦ୍ୱିତୀୟ ମୋ ନାହିଁ
ତମେ କିନ୍ତୁ ବନ୍ଧା ନୁହଁ ଏ ଅଧମା ପାଇଁ ।
ଚାହେନା ମୁଁ ତମେ ହେବ ସଭ୍ୟ ମୋର ଦଳେ,
ଥାଏ ଯଦି ତମ ସ୍ନେହ ଅନ୍ୟ ହୃଦୟରେ
ଯିବି ମୁଁ ଅନ୍ତର ହୋଇ, —ଜୀବନେ, ମରଣେ
ଚିତ୍ତ ମୋ ରହିଲା କିନ୍ତୁ ତୁମରି ବଦନେ ।''

କରୁଣାର ଆତ୍ମ- ପରିଚୟ

''କେମନ୍ତେ ପଶିଛି ମୁହିଁ ସଂତ୍ରାସକଦଳେ
କହୁଛି ମୁଁ ଶୁଣ ଏବେ,—ଦାକ୍ଷିଣାତ୍ୟେ ଥରେ
ଯାଇଥିଲେ ବୁଲି ବାବା । ରେଳେ ଉଚ୍ଚ କ୍ଲାସେ
ଯାଉଥାନ୍ତି, ଆମେ ଥାଉଁ ଆନ କକ୍ଷେ, ପାଶେ ।
କେଉଁ ଏକ ଷ୍ଟେସନରେ, ଇଂରେଜ ହାକିମ
ଆସିଲେ ଜନୈକ, ସଙ୍ଗେ ସାମାନ ଅସୀମ,
ପୁଣି ଦୁଇ ସାରମେୟ ବିଭୀଷିକାପ୍ରଦ
ସଙ୍ଗେ ଅଛି ଭାର୍ଯ୍ୟା, ଯେହ୍ନେ ପ୍ରାୟେକ ମରଦ ।
ଗାଡ଼ିରେ ଅଭାବ ସ୍ଥାନ । ପ୍ରଭୁତ୍ୱ ଅଭାବ
ନଥିଲା ତ ! ଶ୍ୱେତ ପ୍ରଭୁ, ଦୁର୍ମଦ-ସ୍ୱଭାବ,
କହିଲା ବାପାଙ୍କୁ ଯାଇ,— 'ଉଠିଯାଇପାର,
ଅଥବା ବ୍ୟବସ୍ଥା କର ଶ୍ୱାନ ବସିବାର
ତୁମ୍ଭ ସଙ୍ଗେ ଏକାସନେ ।'

କଲେ ବାବା ଯାର
ଦୃଢ଼ରୂପେ ପ୍ରତିବାଦ । ଉନ୍ମତ୍ତ ହୁଂକାର
କରି ଗର୍ଜେ ଶ୍ୱେତଚର୍ମା, ଭୟର ସଂଚାର
କରି ସାରା ଇଷ୍ଟେସନେ, କର୍ମଚାରୀଜାଳ

ଜମା ହେଲେ ପ୍ଲାଟଫର୍ମେ ନିକଟ ଡବାରେ
ଆମେ ବସି ଭାବୁଥାଉଁ କିସ କି ହେଲା ରେ !
ଏକାଳେ ଦେଖିଲୁଁ ବାବାଙ୍କର ଜିନିଷାଦି
ଫିଙ୍ଗୁଛି କେ ପ୍ଲାଟଫର୍ମେ, ଚାକର ଅନାଦି
ଗୋଟାଉଛି ଗୋଟି ଗୋଟି । ନିରସ୍ତ୍ର, ନିରୀହ
ବାବାଙ୍କୁ ଦେଇ ସେ ଗାଳି ଅସଭ୍ୟ, ଅପ୍ରିୟ
ଶ୍ୱେତାଙ୍ଗ, ଡବାରୁ ପେଲିଦେଉଁ ବଳତ୍‌କାରେ
ଅନାଦି ନେଲାକ ଧରି ନିଜର ବାହାରେ,
ପହଁଚାଇ ଦେଲା ଆଣି ଆମ ନିକଟରେ,
ଆଣିଲା ଜିନିଷପତ୍ର ପଡ଼ିଥିବା ତଳେ ।
ସାହେବ ବସିଲା ସୁଖେ, ଗାଡ଼ି ଦେଲା ଛାଡ଼ି
ବାବା କହିଲେକ ସବୁ ଘଟଣା ବିସ୍ତାରି ।
ରକ୍ତ ମୋର ଟକମକ ହେଉଥାଏ ଖାଲି,
ସାହେବର ଅନ୍ତପୁଟା ପକାନ୍ତ ଓଟାରି ।
ତା'ର କିଛିଦିନ ପରେ ଜାଲିଓ୍ୱାନାବାଗେ
ଇଂରେଜର ନୃଶଂସତା ଦେଶର ସର୍ବାଙ୍ଗେ
ସୃଜିଲା ଘୃଣିତ କ୍ରୋଧ,—ଜାଣ ସେ ସମସ୍ତ,
କଲା ତାହା ମୋ ଶୋଣିତେ ଆହୁରି ଉତପ୍ତ ।
ପଢୁଥାଏ କାଗଜରେ ଟେରରିଷ୍ଟ କଥା,
ଭାବୁଥାଏଁ କାହା ସଙ୍ଗେ ଭେଟ ମୋ ହୁଅନ୍ତା
ଶିଖାନ୍ତା ଯେ ବାଟ ମତେ ଇଂରେଜ-ମାରଣେ
ପିତୃ-ଦେଶ-ଅପମାନ ଶୁଝନ୍ତି ଜୀବନେ ।

କୌଣସି ଛୁଟିରେ ଆମେ ଥାଉଁ ପାଟନାରେ
ୟୁକାଲିପଟସ୍ ବୃକ୍ଷ ଥାଏ ଏକ ଦ୍ୱାରେ
ସୁରଭିତ କରି ବାୟୁ; ଶୁଭ୍ରମଥା ତାର
ଉଠିଥାଏ ତୁଙ୍ଗ ନଭେ, ଜ୍ୟାମିତି ରେଖାର
ଦୃଷ୍ଟାନ୍ତ ସ୍ୱରୂପ । ଆମେ ଟୋକାଟୋକୀଦଳ
ଗ୍ରୀବା ଭାଙ୍ଗି ଚାହୁଁ ତାରେ, ମଞ୍ଜି ତା ପତର
ଆଘ୍ରାଣୁ ଆନନ୍ଦଭରେ, ଫିଙ୍ଗୁ ବେଳେବେଳେ
ଢେଲା ପୁଣି ଦେଖିବାକୁ କା'ର ଅବହେଳେ
ଢେଲା ଯାଇ ଲାଗିପାରେ କେତେ ଉଚ୍ଚେ ତାର;
ବ୍ୟର୍ଥତାହିଁ ଦେଉଥାଏ ଆନନ୍ଦ ଅପାର ।

ଦୂରସଂପର୍କୀୟ ଏକ ମାମୁ ଥାନ୍ତି ଆସି
ଦେଖୁଥାନ୍ତି ଆମ ଖେଳା; ବଡ଼ ଅଳ୍ପଭାଷୀ
କିନ୍ତୁ ଅମାୟିକ ଲୋକ; ଦିନେ ସେ ଡାକିଲେ-
''ଏଣୁତେଣୁ କିପାଁ ମାର, ଲାଖ ଶିଖ ପିଲେ ।''
ଆଣିଲେ ସେ ପୁଣି ଛୋଟ ମୁଦି ରବରର
ମାରିଦେଲେ ଗଛଦେହେ, କହିଲେ 'ଏଥର
ମାର ଢେଲା, ବାଜେ ଯେହ୍ନେ ମୁଦିର ମଧ୍ୟରେ
ଏପଟେ ସେପଟେ ନୁହେଁ ।' ଛୋଟ ଆମ ଦଳେ
କୌତୁକ ଜାଗ୍ରତ ହେଲା; ମାରିଲୁ ସମସ୍ତେ,
ସବୁଠାରୁ ବେଶି ଲାଖ ହେଲା ମୋରି ହସ୍ତେ ।

ସେଦିନ ସଂଧ୍ୟାରେ ମତେ ପାଇ ଏକାନ୍ତରେ
କହିଲେ, 'କରୁଣା, ଯଦି ଥାଏ ତୋ ମନରେ,
ଶିଖାଇଦିଅନ୍ତି ତତେ ମାରିବାର ଗୁଳି
ରିଭଲ୍‌ଭର ଅଛି ମୋର । ତୋ ହସ୍ତ ଅଙ୍ଗୁଳି
ଦିଶଇ କ୍ଷମତାପନ୍ନ । ଶିଖିନେଏ ଏବେ,
କାମ ତତେ ଦେଇପାରେ ଜୀବନରେ କେବେ ।'
ସେହି ହେଲେ ଗୁରୁ ମୋର, ବାପାଙ୍କ ଜାଣତେ
ଅଣାହେଲା ରିଭଲଭର, ତାଙ୍କରି ଅଗ୍ରତେ
କେତେବାର ସୂକ୍ଷ୍ମ ଲକ୍ଷ୍ୟ ଭେଦି ରିଭଲଭରେ
ଫୁଟାଇଛି ମଧୁସ୍ମିତ ତାଙ୍କ ବଦନରେ ।

କିନ୍ତୁ ବାବା ଜାଣନ୍ତିନି—କେହି ଜାଣନ୍ତିନି
ସଂତ୍ରାସ-ଦଳରେ ମୁହିଁ ମରଣ-ସଂଗିନୀ ।
ଜୀବନର ଶବଳିତ ଉତ୍ତରୀୟ ତଳେ
ବିଭୀଷିକା ଭାସିଉଠେ ମୋର ଉତ୍ସବରେ ।
ସେ ମାମୁ ଏକ୍ଷଣି ବନ୍ଦୀ ଆଣ୍ଡାମାନ ଦ୍ୱୀପେ
ନିର୍ଜନ, ନିଷ୍ଠୁର 'ସେଲେ' । ନାହାନ୍ତି ସମୀପେ
କେହି ହେଲେ ପିତା, ମାତା, ବାନ୍ଧବ, ସ୍ୱଜନ
ଅନୁମାନ କରିପାର କିବା ସେ କଷଣ ।

ନିଜ ଶୋଣିତରେ ମୁହିଁ କରିଛି ସ୍ୱାକ୍ଷର
ଦଳର ପ୍ରତିଜ୍ଞାପତ୍ରେ । ହୋଇବି ହାଜର

ଯଥାସ୍ଥାନେ ଆଜ୍ଞାମାତ୍ରେ । ହୋଇନି ସମୟ ।
ଇତିମଧ୍ୟେ ଖୋଜିଛି ମୁଁ ତୁମର ପ୍ରଣୟ
ଦଳର ନିୟମ ଲଙ୍ଘି, ପ୍ରାଣର ନିୟମେ,—
ଆଶାକରେ ବୁଝିବେ ସେ ନାରୀର ମରମେ ।
ନିଜକୁ ସଁପିବା ଆଗୁଁ ଚରଣେ ତୁମ୍ଭର
ଧଳା, କଳା, ରୋଗ, ସ୍ୱାସ୍ଥ୍ୟ ମୋର ଜୀବନର
ଯୁକ୍ତ ଜଣାଇବା, ଭାବି କହିଲି ସମସ୍ତ''-
କହି, କମଳର ଓଠେ ଛୋଇଁ ତାର ହସ୍ତ
କହେ, ''ଶୁଣିଛନା ସବୁ, ମେଲି ଆଖି କାନ,
ଅବା ଘୁମାଇଛ ବସି ? ଗଣ୍ଡ-ଓଷ୍ଠ-ପାନ
ନୁହେ ଏ ପ୍ରଣୟ, ଏହା ମୃତ୍ୟୁ-ପଥ ଯାତ୍ରା
ହାତ ଧରାଧରି ହୋଇ; କଣ୍ଟକିତ -ଗାତ୍ରା
ପ୍ରଣୟିନୀ ଏଥି; ରୁକ୍ଷଶରୀର ପ୍ରଣୟୀ
ତପଃକ୍ଲିଷ୍ଟ ଶିବ ସମ, ତାପ-ଦଗ୍ଧ ମହୀ ।
କହ ତମେ ଖୋଲାକରି, ନକରି କୈତବ,
ସତରେ ଚାହଁକି ମତେ ? ଭବିଷ୍ୟ ଭୈରବ
ମୋ ଲାଗି କି କରିବାକୁ ଅଛ ହେ ପ୍ରସ୍ତୁତ,
ଅଥବା ଚାହଁ ହେ ଖାଲି ପିଇବ ଅମୃତ
ଲୋକୋତ୍ତର ରୂପସୀର ବଦାନ୍ୟ ଅଧରୁ
ଶାନ୍ତିମୟ ଗୃହକୋଣେ, କମ୍ର ପ୍ରୀତି-ତରୁ
ବଢ଼ିଆଇ ସେବା, ସ୍ନେହେ ?''

ସୁନ୍ଦର କମଳ
ଠିଆହେଲା ଜ୍ୟୋତ୍ସ୍ନାତଳେ, ଧୀରେ ଛନ୍ଦି କର
କରୁଣାର ତନୁ ଦେହେ, ଉଠାଇଲା ତାକୁ
ଜଡ଼ାଇଲା ନିଜ ଦେହେ, ରୁଚିର ଗ୍ରୀବାକୁ
ଧରି ତା'ର ପାପୁଲିରେ, ମୁଖେ ତା'ର ଚାହିଁ
ସୁରଭିତ ଶ୍ୱାସେ ତା'ର ନିଶ୍ୱାସ ମିଶାଇ
କହେ ଭାବ-ବିହ୍ୱଳିତ, ଅଳପ ବଚନ
''ତୁମେ ମୋ ସମ୍ପ୍ରତି, ପର ବିଳାସ, ମରଣ ।''

## [ ପଞ୍ଚମ ସର୍ଗ : ରକ୍ତପାତ ]

ମାତୃଚକ୍ଷୁ ଅନ୍ତର୍ଯ୍ୟାମୀ ! ମାତା ମହାମାୟା
ଲକ୍ଷ୍ୟକରି କନ୍ୟା ମୁଖେ ନୂତନର ଛାୟା,
ଲକ୍ଷ୍ୟକରି ହାବଭାବ, କିଛି ଅନୁମାନି,
ଏକାନ୍ତରେ ଥାଉଁ ଦିନେ, କରୁଣାରେ ଆଣି
ନିଜ ପାଶେ, ସ୍ନେହେ କେଶେ ଅଙ୍ଗୁଳି ଚଳାଇ
କହିଲେ, ''ଧନ ରେ, ତୁ କି ରଖିଛୁ ଲୁଚାଇ
କିଛି କଥା ମୋହଠାରୁ ? ତା'ହି ଅନୁମାନେ ।
କହିବୁନି ମତେ ତୁହି ?''
ସଂକୁଚିତ ପ୍ରାଣେ,
ସରମାକ୍ତ ନେତ୍ରଯୁଗ ରଖି ଧରାତଳେ
କହେ କନ୍ୟା '' ସମ୍ଭବ କି ତାହା ମୋ ପକ୍ଷରେ ?
କି କଥାରେ ତୋ' ସନ୍ଦେହ, କହ ମା' ଫିଟାଇ
ସବୁ ମୁଁ କହିବି ଖୋଲି ।''
''ପାରେ କି ମା ଥାଇ
ସନ୍ଦେହ ତୋ ପ୍ରତି ହୃଦେ ?''
''—ଆ ଆ ମୋ' ସଙ୍ଗାଳି...''
କହି ମାତା ନେଲେ ତା'ରେ କୋଳକୁ ଓଟାରି
କହିଲେ ମମତା-ବାକ୍ୟ-''ତୋ ସୁଖରେ ଧନ
ଆମରି ପରମ-କାମ୍ୟ । ତୋ' ଲାଗି ଜୀବନ
ଏ ଘର ଆନନ୍ଦ-ମୟ; ମୋ ଦୀନ କୁଟୀରେ
ତୁଇ ମୋର ରତ୍ନ-ଦୀପ । ଲୁହ ତୋ ଆଖିରେ
ଦେଖିବିନି କେବେ ଯେହ୍ନେ ମରଣ ଏପଟେ
ସେହି ମୋ ପ୍ରାର୍ଥନା ନିତ୍ୟ । ତେଣୁ ଅକପଟେ
କହିବୁ ରେ ଧନ ଯେତେ ଯାହା ତୋ ଜଞ୍ଜାଳ
ବତାଇବି ବାଟ, ଶିଖାଇବି ପ୍ରତିକାର ।
ଯୌବନ ବିଷମ କାଳ, ପିଚ୍ଛିଳ ଏ ପଥ
ନାନା ଆକର୍ଷଣେ ଚିତ୍ତ ଉଦ୍‌ଭ୍ରାନ୍ତ ସତତ
ଥରେ ପାଦ ଗଲେ ଖସି, ଚିର ନିପତନ,
କ୍ଷଣକର ସୁଖୁଁ ଜାତ ଜୀବନ-କ୍ରନ୍ଦନ ।

ତତେ ଧନ......'' ଆଉ କହି ନ ଦେଇ କରୁଣା,
ମାତା କଣ୍ଠେ କରି ଲୀଳାୟିତ ବାହୁ-ବୁଣା
ମାତା ବକ୍ଷେ ମୁଖ ଗୁଞ୍ଜି, କାନ୍ଦେ ଫୁଲି ଫୁଲି
କହେ କଥା ଅସ୍ଫୁଟିତ ଖଣ୍ଡିତ-ମାଧୁରୀ,
''ମାଆ ଗୋ,ମାଅ ଗୋ'' ଡାକି । ମାତା ମହାମାୟା
ଡେଜନ୍ତି ଲୋତକ, ଢାକି କମ୍ର କନ୍ୟା-କାୟା
କହନ୍ତି ଆଶ୍ୱାସ-ବାଣୀ '' ନ କାନ୍ଦରେ ଧନ,
ଯାହା ତୋର ଇଚ୍ଛା ତାହା କରିବି ପୂରଣ ।''

କରୁଣା-କମଳର ସଖ୍ୟପ୍ରତି ପିତାଙ୍କର ଆଶୀର୍ବାଦ ଓ ଆୟୋଜନ

କ୍ରମେ କଥା ପରିସ୍ଫୁଟ ହେଉଁ ଅବିନାଶ
କରି ଛୁଟି ଦିନେ ଉପାସନା, ପ୍ରାତରାଶ;
ଡାକି ଦୁଇ ତରୁଣରେ ପାଶେ, ରଖି କର
ଦୁହିଁଙ୍କର ସ୍କନ୍ଧଦେଶେ, ରହିଲେ ନିଶ୍ଚଳ
କିଛି କାଳ; ଦେଇ ଦୁହେଁ ଆଶିଷ, ମଉନ,
ତା'ପରେ କହିଲେ, 'ଶାନ୍ତିଃ' ଡାକି ପୁନଃ ପୁନଃ—
''ପ୍ରେମ ନୁହେଁ ଦେହ-ଦେହୁଁ ଭୋଗ ଅନ୍ୱେଷଣ,
ପ୍ରେମ ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ ।
ପ୍ରେମ ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ ଆନ ପାଇଁ ଦେବା ନିଜକୁ ହଜାଇ ।
ନୈରାଶ୍ୟ, କଷଣ, ଅଶ୍ରୁ ସାଥୀ ପ୍ରଣୟର,
ପ୍ରେମିକେ ପୋଛନ୍ତି ଖାଲି ଅଶ୍ରୁ ଅନ୍ୟୋନ୍ୟର ।
ସୁଖ, ଦୁଃଖ, ଭୋଗ, ବ୍ୟାଧି ଥିଲା ନ ଥିଲାରେ
ସେହି ଏକ ଛଡ଼ା ଆନେ ନ ଚାହି ଧରାରେ
ଦୁର୍ଗମ ଜୀବନ-ପଥ କାଟି ଚାଲ ଦୁହେଁ
ଧରି ହାତ ପରସ୍ପର, ଗାଇ ଦୁଇ ମୁହେଁ
ତାଙ୍କ ନାମ, କରନ୍ତି ଯେ ସୃଜନ, ବିନାଶ
ସମସ୍ତର ପଛେ ଯେହୁ, ନିତ୍ୟ, ଅବିନାଶ ।
ଏଇ ମୋର ଆଶୀର୍ବାଦ ପ୍ରାଣର ପ୍ରାର୍ଥନା
ତବ ପ୍ରେମ ହେଉ ମଧୁ ତପସ୍ୟା-ସାଧନା,
ମିଳନ ତୁମ୍ଭର ହେଉ ଶୁଭ ଏ ଧରାର,
ମିଳିତେ କରିବ ରୋଧ ଦୁଃଖ, ଅନାଚାର ।

ଦୁହେଁ ଯୋଗ୍ୟ ଅନ୍ୟୋନ୍ୟର, ତଥାପି ବୟସ
ହୋଇନାହିଁ ପରିପକ୍ୱ, ହୃଦୟେ ସାହସ
ଭରି ଦୁହେଁ ନିଜେ ନିଜେ କର ଯୋଗ୍ୟତର,
ଆପେ ଥୋଇ ନିଜ ମଧ୍ୟେ କାନ୍ଥ ବିଚ୍ଛେଦର ।
ସ୍ଥିର ମୁଁ କରିଛି ଏହା, ଯିବ ଆମେରିକା
କମଳ, କୃଷିରେ କେହ୍ନେ ଅର୍ଜିବ ଜୀବିକା
ଶିଖିବ ତା' ସେହି ଦେଶେ । ପଢ଼ିବ ଡାକ୍ତରି
କରୁଣା, ପାରିବ ଯେହ୍ନେ ଜନସେବା କରି ।
ବିଦ୍ୟାର୍ଜନ ଶେଷେ ଦୁହେଁ ଯିବ ମଫସଲେ
ଜାତି ଯହିଁ ପ୍ରକୃତରେ ସେବା ଲୋଡ଼ାକରେ,
ଜାତି ଯହିଁ ବାସକରେ ଅକପଟ ବେଶେ
ଦେଖାଇ ତା' ଦୈନ୍ୟ, ବ୍ୟାଧି, ଧର୍ମ-ନିର୍ବିଶେଷେ,
କର୍ମକ୍ଷେତ୍ର ଦୁହିଁଙ୍କର ହେବ ସେହି ସ୍ଥାନେ,
ସହରର ମାୟା ନ ରହିବ ତବ ଧ୍ୟାନେ ।
ଯାଅ ଦୁହେଁ; ପୁଷ୍ପମୟ ହେଉ ତବ ପଥ
କର୍ମ ହେଉ ଶୁଭଙ୍କର, ଉଦାର ମହତ ।
ରଖ କିନ୍ତୁ ଏ ସମସ୍ତ ଅତ୍ୟନ୍ତ ଗୋପନ
ଓଲଟି ବି ଯାଇପାରେ କେବେ ତମ ମନ ।''

ଜଣାପଡୁଁ ବିଜ୍ଞାନରେ କରୁଣାର ପା'ଶ
ଚଳିବ ସେ କଲିକତା ଡାକ୍ତରୀ ସକାଶ;
ବାବା-ମା' କରନ୍ତି ତାର ତୁରନ୍ତ ବ୍ୟବସ୍ଥା
ବଢ଼ାଇ ପ୍ରଣୟୀଙ୍କର ଦୈନନ୍ଦିନ ବ୍ୟଥା ।
ଯିବାର ଅଳପ ପୂର୍ବୁ, ପାଇ ଅବକାଶ
କରୁଣା ଓଟାରିନେଲା କମଳକୁ ପାଶ,
ଛାତ ପରେ । ଅନ୍ଧକାର ଥିଲା ସେ ରଜନୀ
ଆକାଶ-ଖିଲାଣେ ଦୀପ୍ତ ଥିଲେ କୋଟି ମଣି ।
କୋଟି ସେ ନକ୍ଷତ୍ର ତଳେ ଦୁଇଟି ହୃଦୟ
ସରସ, ଅପରିପକ୍ୱ, ସଶଙ୍କ, ସଭୟ
ଚାହୁଁଥିଲେ ପରସ୍ପରେ ହୋଇବେ ବିଲୀନ
ଭ୍ରମିବେ ସଂସାରକ୍ଷେତ୍ରେ ଅର୍ଗଳ-ବିହୀନ ।

ପାରିବେ କି ସତେ ସେହୁ ? ମିଟିମିଟି ହସେ
ଅୟୁତ ନକ୍ଷତ୍ରଜାଳ; ଜଳି ଜଳି ଖସେ
ଏକ ଏକ ଉଲ୍‌କା ତଳେ । ସପ୍ତର୍ଷିମଣ୍ଡଳ
କରୁଛନ୍ତି ପ୍ରଦକ୍ଷିଣ ଚୌଦିଗେ ଧ୍ରୁବର;
ଖଣ୍ଡ ଖଣ୍ଡ ମେଘ ଯାଏ ନଭେ ଭାସି ଭାସି
ବେକାର ମନୁଷ୍ୟ ପରି । ତଳେ ଯାଏ କାଶି,
ଦାଣ୍ଡେ କୁଷ୍ଠୀ, ଜରାଜୀର୍ଣ୍ଣ, ବିକଳ ଭିକାରି
ଭିକ୍ଷା କରି କରି ଦୟା,—ଶତ ପଥଚାରୀ
ଯାନ୍ତି ଚାଲି ନିର୍ବିକାର; କେ ଶୁଣେ କା' କଥା ।
କିଏ ବା ଶୁଣିବ ଦୁଇ ପ୍ରଣୟୀର ବ୍ୟଥା
ସେପରି ଏ ଧରାତଳେ ? ରେଣୁ ରବି ଯାଏ
ପ୍ରତ୍ୟେକେ ବିଶ୍ୱରେ ଛୁଟିଛନ୍ତି କ୍ଷିପ୍ତ ପ୍ରାଏ
ନିଜ ନିଜ ପଥ ଧରି; ଏ ପ୍ରେମୀଯୁଗଳ
ନ ହେବେ କି ସେହିପରି କ୍ଷିପ୍ତ ପଥଚର ?

କରୁଣାର ବିଦାୟ-ରାତ୍ରି

ଅନ୍ଧକାରେ ଦୁହେଁ ବସି ଛାତ ଏକଂ କଣେ
ତାରାଲୋକେ ଦେଖୁଛନ୍ତି, ଅନ୍ୟୋନ୍ୟ ଆନନେ
ଗାଢ଼ ଆଲିଙ୍ଗନେ ବାଂଧି; ମୁଖ ପରସ୍ପର
ଆଘ୍ରାଣନ୍ତି ପରସ୍ପରେ, ଓଷ୍ଠ ଉଭୟର
ପାଉଛି ମଧୁର ପୀଡ଼ା ନିବିଡ଼ ଚୁମ୍ବନେ
ଉଭୟେ ଜପନ୍ତି ଉଭ ନାମ ମନେ ମନେ ।
କହଇ କରୁଣା, ''କାନେ କଥା କିଛି କହ;
ଥରେ ପ୍ରାଣ, ଦେଖି ଆଗେ ଦୀରଘ ବିରହ ।''
''ଯାଉଛ ତ, କି କହିବି,''—କହଇ କମଳ,
''କହିବାର କିବା ଅଛି ? କହିଛି ସକଳ ।''
''ମୋର କିନ୍ତୁ ଏଠା ଛାଡ଼ି ଅନିଚ୍ଛା ଯିବାକୁ
ସ୍ୱର୍ଗେ ହେଲେ; ବୁଝାଉଛି ଯେତେ ମୋ ଆତ୍ମାକୁ
ବୁଝୁନି ସେ; ପ୍ରାଣ ଚାହେ ଥିବି ତମ ସାଥେ
ଭୁଞ୍ଜାଇବି, ସଜାଇବି ଆପଣା ହାତେ ।
ପାଠ ମୋର ଲୋଡ଼ା ନାହିଁ, ଥାଉ ଦେଶ ଜାତି
କୃତାର୍ଥ ମୁଁ, ଯଦି ଶୁଣେ ତୁମ୍ଭର ସୁଖ୍ୟାତି ।''

ଆଲିଙ୍ଗନୁ ଖସିଯାଇ ଉଦ୍‌ବେଗେ କମଳ
କହେ, ''ଏ କି ଦୁର୍ବଳତା, ନୀଚାଶା ତମର !

ପରାଧୀନ ହିନ୍ଦୁସ୍ଥାନ ନିର୍ଯ୍ୟାତିତ ଜାତି
ଦେଶ ଲୋକେ ଭୋଖେ ଖାଉଛନ୍ତି ଘାସ, ମାଟି
ସାରା ଜାତି ଭୟ-ତ୍ରସ୍ତ, ଦୁର୍ମଦ ଇଂରେଜ
ଶାସଇ ଆମକୁ କରି ନିରସ୍ତ୍ର, ନିସ୍ତେଜ,
ଏସବୁକୁ ଆଖି ବୁଜି, ଚାହଁ ସୁଖମୟ
ଆପଣାର ସୁଖନୀଡ଼, ନିଶ୍ଚିନ୍ତ, ନିର୍ଭୟ ?
ଭୁଲିଗଲ ଦଳ ତବ, ପ୍ରତିଜ୍ଞା ତମର
ଧୋଇବାକୁ ପିତୃ-ଦୁଃଖ ରକ୍ତେ ଇଂରେଜର ?
ଭୁଲିଯାଅ ମାମୁ-ଗୁରୁ, ସଢ଼େ ଆଣ୍ଡାମାନେ,
ଭୁଲ ଜାଲିଆନାବାଗ-ଗୁରୁ-ଅପମାନେ ?
ଭୁଲ ପୁଣି ମତେ, ମୁଁ କି ଘର, ଭାର୍ଯ୍ୟା ନେଇ
ଗୃହସ୍ଥ ହେବାକୁ ତମେ ପ୍ରେମ ଅଛି ଦେଇ ?
କ୍ଷଣିକ ଏ ଦୁର୍ବଳତା....''
''ଥାଉ, ଥାଉ, ଥାଉ''
କହି ମୁଖ ବନ୍ଦକରେ, ସୁଗୋଲ ତା ବାହୁ
କରୁଣା କମଳ କଣ୍ଠେ ଜଡ଼ାଇ ନିବିଡ଼େ
ବକ୍ଷେ ତାକୁ ଆଉଜାଇ କହେ କାନେ ଧୀରେ,
''ଯେପରି ଆଦେଶ ଦେବ କରିବି ସେପରି
ତମେ କିନ୍ତୁ ହୃଦେ ଆଜି ବଡ଼ ସର୍ବୋପରି
ଦେଶ, ଜାତି, ଧର୍ମଠାରୁ । ହୁଏତ ଶେଷରେ
ଏଇ ତଥ୍ୟ ସାର ବୋଲି ମାନିବ ମୁଖରେ ।''

x x x

କରୁଣା ଗଲାଣି ଚାଲି । ଏକାକୀ କମଳ,
ଭୁଲି ପଉରୁଷ ତାର, ନେତ୍ରୁ ଅବିରଳ
ଢ଼ାଳିଲା ଉତ୍ତପ୍ତ ବାରି କିଛି ଦିନ ଯାଏ ।
ନାହିଁ ପଢ଼େ ପାଠ, ନାହିଁ ମନ-ସୁଖେ ଖାଏ ।
ତା'ପରେ ପାଉଁ ସେ ପତ୍ର, କ୍ରମେ ଧରେ କାମ,
ଅନ୍ତର ଜପଇ କିନ୍ତୁ କରୁଣାର ନାମ ।
ପ୍ରିୟତମ କାମ ଏବେ ଲେଖିବା ଚିଟାଉ
କଟାଇବା କାଳ ପୁଣି ଉତ୍ତରେ ଅନାଉଁ ।
ପ୍ରତି ପତ୍ରେ ବରାବର ଜିଦି କରୁଣାର
'ଇମ୍ୟା ଚିଠି ଦେବ, ନୋଚେତ୍ ମୋ'ଠୁ ପାଇବାର

ଉତ୍ତର, ନ କର ଆଶା ।' ଆରମ୍ଭ କମଳ
କରିଛି ବି ମାଗିବାର ଦୀରଘ ପତର ।
ଅଧ୍ୟାପକ-ଅବିନାଶ-ଗୃହ-ଅଭ୍ୟନ୍ତରେ
ଏ ଯେଉଁ ନାଟକ ଘଟିଯାଏ ସ୍ତରେ ସ୍ତରେ,
କେହି ନ ଜାଣନ୍ତି ତାହା ଘରର ବାହାରେ,—
କମଳ ସେ ଦୀନ ଛାତ୍ର ଅଛି ସବୁଠାରେ ।
ଶୁଣିଲେ ସେ କଥା କିଏ କରିବ ପ୍ରତ୍ୟୟ ?
ଧୂଆଁରେ କି କରିପାରେ ବିଦ୍ୟୁତ ଆଶ୍ରୟ ?
ଜଳଗର୍ଭ ମେଘ ଯେହ୍ନେ ଭାସଇ ଗଗନେ
କମଳ କରଇ କର୍ମ ପ୍ରସନ୍ନ ବଦନେ,
ନ ଜାଣନ୍ତି, କେହି କେହ୍ନେ ଅନ୍ତରେ ତାହାର
ଜଳେ ଲାଭା-ଉଦ୍‌ଗାରକ ଆଗ୍ନେୟ ପାହାଡ଼ ।

X X X

ଗଲାଣି ଅନେକ ମାସ କ୍ରମେ ଏହିପରି
ଚିଟାଉର ସ୍ରୋତ ଆଉ ନାହିଁ ପୂର୍ବପରି
ଯୁଗଳ ପ୍ରଣୟୀ ମଧ୍ୟେ । ଯେତେ ଅଙ୍ଗୀକାର
ଯେତେ ସର୍ବ-ସମର୍ପଣ, ଭବିଷ୍ୟ-ବିଚାର
ଉଭୟେ କଲେଣି ଶେଷ ପତ୍ରରେ ପତ୍ରରେ,
ମାନ, ମନାନ୍ତର ହେଲାଣି ବି ଥରେ ଥରେ ।
କମଳର ଚିରାଶଙ୍କା ବିରାଟ୍ ସହରେ
ନାନା ସଖ୍ୟ, ନାନା ଚିତ୍ତବିନୋଦନ ଫଳେ
ସେ ବିଚାରା ହୋଇପାରେ ସହଜେ ପାସୋର,
ଉର୍ଣ୍ଣନାଭ-ସୂତ୍ର-ସୂକ୍ଷ୍ମ ଆଦ୍ୟ-ପ୍ରେମ-ଡୋର ।
ରାତିଯାକ ବୁଣେ ଜାଲ ବୃକ୍ଷୁ ବୃକ୍ଷେ ଡେଇଁ
ଉର୍ଣ୍ଣନାଭ, ପ୍ରାତଃକାଳେ ଯାଏ ଯା ଉଭେଇ
ସାମାନ୍ୟ ଆଘାତ-ସ୍ପର୍ଶେ । ଯୌବନ-ପ୍ରଣୟ
ସେହିପରି ଅନ୍ୟ ସ୍ପର୍ଶେ ଭଜିପାରେ ଲୟ ।
ଏପରି ଆଶଙ୍କା କରୁଁ ପତ୍ରରେ ପ୍ରକାଶ
ଥରେ ଅଧେ, କରୁଣାର ହୁଏ କ୍ରୋଧୋଚ୍ଛ୍ୱାସ,
ହୁଏ ମାନ ଅଭିମାନ, ଭାଷା କରେ ବନ୍ଦ;
ବହୁଦିନ ଲାଗେ ପୁଣି ହେବାକୁ ଆରମ୍ଭ ।

ଏଇପରି ଶଙ୍କାମୟ ଅଭିମାନ କାଳେ
କମଳ ବଞ୍ଚୁଛି ଯେବେ ପତ୍ରର ଆଶାରେ
ହଠାତ୍ କରୁଣା ଲେଖେ ''ପ୍ରିୟତମ ମମ,
କ୍ଷମିବ ମୋ ଅଭିମାନ, ପ୍ରିୟ ଭ୍ରାତା ସମ ।
କିନ୍ତୁ ଏଇ ଶେଷ ପତ୍ର, ଶତ ଶତ ରାଣ
ମତେ ନ ଲେଖିବ ଆଉ; ହେବ ହଇରାଣ
ବୃଥାରେ ପଡ଼ିଲେ ଜଣା ମୋ ସଙ୍ଗେ ସମ୍ପର୍କ,
ଭସ୍ମସାତ୍ କରିଦେବ ପୂର୍ବ ଚିଠିତକ ।
ସ୍ୱାଧୀନ ଏଥର ତମେ ଯାହା କରିପାର,
ନ କରିବ ମୋ ସଙ୍ଗତେ ସମ୍ବନ୍ଧ-ବିଚାର ।
କହିବନି ଏ ପତ୍ରର କଥା ବି କାହାରେ
ପକାଅନି ବାବା ମା'ଙ୍କୁ ବୃଥା ଦୁଶ୍ଚିନ୍ତାରେ ।''

କି ବ୍ୟାପାର ? କଥା କିସ ? କି ଅର୍ଥ ଏହାର ?
ଶେଷ ନାହିଁ ହୁଏ ପ୍ରଶ୍ନ କମଳ-ଚିନ୍ତାର ।
ନିଜକୁ ଧିକ୍‌କାର କରେ, କିପାଁ ସେ ଗଢ଼ିଲା
କଳ୍ପନାର ସୌଧାବଳି, ଜାଣି କି ନ ଥିଲା
ନିଜେ ସେ ନିଜର ସୀମା ? ଆକାଶ-ସୁମନ,
ତୋଳିଯାଉଁ ସିନା ଏତେ ହୃଦୟ-ଗଞ୍ଜନ !
କିପାଁ ସେ ସେଦିନ ଛାଡ଼ି ଶାନ୍ତିମୟ 'ମେସ୍'
ଆସିଲା ଏ ବଡ଼ଘରେ ? ସେହିଦିନୁ କ୍ଳେଶ
ଭୋଗୁଛି ସେ ପ୍ରାଣେ ପ୍ରାଣେ, ମାୟାବିନୀ ନାରୀ
ତା ଜୀବନେ କରେ କ୍ରୀଡ଼ା କନ୍ଦୁକ ବିଚାରି ।
ଅସହ୍ୟ ଏସବୁ ଆଉ, ହେଉ ଅବସାନ
ରଙ୍ଗମଞ୍ଚ-ଅଭିନୟ; ପତନ, ଉତ୍‌ଥାନ
ଆନର ସଙ୍କେତ ଘେନି । ନାହିଁ ଦରକାର
ଏ ପ୍ରେମ, ଅବା ଏ ମାନସିକ ଅତ୍ୟାଚାର ।

କିନ୍ତୁ ଭାବ ବଦଳଇ; ପତ୍ର ପୁଣି ପଢ଼େ,
ଲେଖାଅଛି 'ପ୍ରିୟତମ', କ୍ଷମାଭିକ୍ଷା ପରେ,
ଜଣାପଡ଼େ କଉଣସି ବିପଦ ସୂଚନା,
କି ଅଛି ଏ ପତ୍ରେ ତାର ହେବାକୁ ବିମନା ?
ପୁଣି ନିଜେ ଧିକ୍‌କାରଇ, ପୁଣି ପଢ଼େ ପତ୍ର

ପାଗଳ ପରି ସେ ବସେ, ଉଠେ ଯତ୍ର ତତ୍ର ।
କରୁଣାର ରାଣ ସ୍ମରି ପ୍ରାଚୀନ ଚିଟାଉ
କାଢ଼େ ଜାଳିଦେବ ବୋଲି; ହାତ ଯାଏ କାହୁଁ ?
ଗୋଟି ଗୋଟି କରି ଖାଲି ପଢ଼େ ଥର ଥର
ନୟନୁ ଗଣ୍ଡରେ ବହେ ଲୁହ ଝରଝର ।
ପତ୍ର ପ୍ରିୟା-ପ୍ରତିନିଧି, ତହିଁ ହୃଦ ତାର;
କେମନ୍ତେ ସେ କରିଯିବ ତାକୁ ଭସ୍ମସାର ?

ସପ୍ତାହକ ପରେ ଏଣେ ଖବରକାଗଜେ
ବାହାରେ ଯା, ନାହିଁ ହୁଏ ବିଶ୍ୱାସ ସହଜେ ।
ବଙ୍ଗଲାଟ୍ କଲିକତା ବିଶ୍ୱବିଦ୍ୟାପୀଠେ
ଆସିଥିଲେ ଦଳେବଳେ ପତ୍ନୀଙ୍କ ସହିତେ
କରିବାକୁ ଡିଗ୍ରୀ-ଦାନ କନଭୋକେଶନେ
ବହୁ ସଂଖ୍ୟେ ଉପସ୍ଥିତ ଥିଲେ ଗଣ୍ୟ ଜନେ ।
ଉପବିଷ୍ଟ ହେଉ ହେଉ ସିନେଟ୍ ମନ୍ଦିରେ
ଗୁଳି ଚଳେ କାହୁଁ ଘୋର ବିକଟ ଭଙ୍ଗିରେ;
ପଳାଇଲେ ଲୋକ ସବୁ; ମହା ଗୋଳମାଳ,
ପରେ ଆଣୁ ଶାନ୍ତି ସେଠି-ଥିବା-କଟୁଆଳ,
ଜଣାଗଲା ଲାଟ୍ ନିଜେ ବିଶେଷ ଆହତ
ଶ୍ୱେତ ଅଧ୍ୟାପକ ଦୁଇ ସଙ୍ଗେ ସଙ୍ଗେ ହତ ।

> ରାଜନୈତିକ ହତ୍ୟାକାଣ୍ଡରେ କରୁଣା ଗ୍ରେପ୍ତାରି

ବନ୍ଦ ହୁଏ ସଙ୍ଗେ ସଙ୍ଗେ କନଭୋକେଶନ
ପୋଲିସ କରଇ ଅପରାଧୀ ଅନ୍ୱେଷଣ ।
ଭାରତର ସବୁ ପ୍ରାନ୍ତେ, ସମଗ୍ର ସାମ୍ରାଜ୍ୟେ
ମହାହୁଲସ୍ଥୁଲ ଏହି ଲଜ୍ଜାକର କାର୍ଯ୍ୟେ,
ଅନ୍ୟ ଅଙ୍ଗୁ ବୋହୁ ରକ୍ତ, ସେ ତ ମାତ୍ର ପାଣି,
ଏ କିନ୍ତୁ ଶ୍ୱେତାଙ୍ଗ-ରକ୍ତ, ଅବଧ ଯେ ପ୍ରାଣୀ !
ଚାରିଆଡ଼େ ଚାଲିଅଛି ଆରେଷ୍ଟର ଲୀଳା
କେବଳ ପୁରୁଷ ନୁହେଁ, ଅଛନ୍ତି ମହିଳା,
ତାଙ୍କ ମଧ୍ୟେ ଅଛି ଆମ କରୁଣା ପ୍ରଧାନ,
ଏବେ ହୁଏ କମଳର ଦ୍ୱନ୍ଦ୍ୱ ସମାଧାନ ।
ସଙ୍ଗେ ସଙ୍ଗେ କରୁଣାର ପତ୍ରେ ଦେଇ ନିଆଁ
କମଳ କାଟଇ କାଳ ଟାଣ କରି ହିଆ ।
ମୁହ୍ୟମାନ ମହାମାୟା କନ୍ୟା ସଂବାଦରେ,

ଅବିନାଶ ଯା'ନ୍ତି କଲିକତା ତରତରେ,
ପୋଲିଶ ତଲାସେ ଘର ଅଳ୍ପ କାଳ ପରେ
ସରକାର ତାଙ୍କୁ ବାଧ କରେ ଅବସରେ ।
କଟକରୁ ବସା ଉଠେ, ବ୍ୟଥିତ କମଳ
ପୁଣି ଚଳେ ମେସେ ତାର, ଚକ୍ଷୁ ଛଳଛଳ ।

## [ ଷଷ୍ଠ ସର୍ଗ : ଦୀର୍ଘ ଦଶବର୍ଷ ]

ଡିଗ୍ରୀ-ପ୍ରାପ୍ତି, ପିତାଙ୍କର ମୃତ୍ୟୁ, କମଳର
ଭାଗ୍ୟେ ଘଟେ ଏକ କାଳେ । ପୂର୍ବୁଁ ମରଣର,
ଶୁଣି କମଳର ପିତା ଡିଗ୍ରୀର ସମ୍ବାଦ,
ତେଜିଲେ ଆନନ୍ଦ ଅଶ୍ରୁ, ଦେଲେ ଆଶୀର୍ବାଦ
ପୁତ୍ରରେ । କହିଲେ ଡାକି, 'ମରେ ମୁଁ ବାବାରେ
ଶାନ୍ତିରେ ଏଥର, ରଖି ଭଉଣୀ, ମାଆରେ,
କନିଷ୍ଠ ଭାଇରେ ପୁଣି, ତୋହିର ଯତନେ,
ତାଙ୍କ ସୁଖ, ଘର-ମାନ ରଖିଥିବୁ ମନେ ।'
ସେତେବେଳେ କରିବାକୁ ଜବାବ ସବାଲ
କାହାର ବା ଧୈର୍ଯ୍ୟ ଥାଏ ? ନେତ୍ରୁ ଅଶ୍ରୁଧାର
ବୁହାଇ କମଳ କରେ ଚରଣେ ପିତାର
ନମସ୍କାର ବାରମ୍ବାର । ମାତ୍ର କିଛି କାଳ
ବଞ୍ଚି ଆଉ, ସେ ସଜ୍ଜନ ତେଜିଲେ ଏ ଧାମ
ପୁତ୍ରେ ଦେଇ ହାହାକାର, ନିଜରେ ବିଶ୍ରାମ ।

କମଳ ପିତାଙ୍କର ମୃତ୍ୟୁ

ଶୋକ-କ୍ଷୀଣ, ଦୈନ୍ୟ-ଜୀର୍ଣ୍ଣ, ମୁଣ୍ଡିତ ମସ୍ତକ
କମଳ ନଗରେ ଫେରେ, କଟାଇ ମାସକ
ଗୃହର ଜଞ୍ଜାଳେ ଦୁଃଖେ । ସାଙ୍ଗ ଅଧ୍ୟୟନ,
ସାଙ୍ଗ ପ୍ରାୟ ସ୍ୱପ୍ନ-ମୟ ଆଦ୍ୟ ଯଉବନ,
ସାଙ୍ଗ ସେ ଦିନର ଯେତେ ମଧୁର କଳ୍ପନା,
ଏବେ ହେଲା ଜୀବନର ରୁକ୍ଷଭାଗ ଜଣା ।
କରିବାକୁ ହେବ ଏବେ ଅର୍ଥ ଉପାର୍ଜନ,
ନ ହେଲେ କୁଟୁମ୍ବେ କବଳିବ ଅନଶନ ।
ନିଜକୁ ବା କେ ପୋଷିବ ? ସେହି ଭାଗ୍ୟବାନ

ଯାଁକ ପାଇଁ କରିଅଛି ଭାଗ୍ୟ ସମାଧାନ
ଦୈନନ୍ଦିନ ବଞ୍ଚିବାର ଯେତେକ ଜଞ୍ଜାଳ,
ନିଶ୍ଚିନ୍ତ, ସ୍ୱୟଂସ୍ଥ, ମତ୍ତ ଯାଁକ କାରବାର ।
ବଞ୍ଚିବାକୁ ହେବ ନିଜେ, ବଞ୍ଚିବେ ସ୍ୱଜନେ

**କମଳର ଜୀବିକାନ୍ୱେଷଣ**

କମଳ ଭ୍ରମଇ ନଗ୍ରେ ପନ୍ଥା ଅନ୍ୱେଷଣେ ।
ଦୁଇବର୍ଷ ଅଧ୍ୟାପକ ଅବିନାଶ ଘରେ
ସୁଖମୟ ବାସ ପୁଣି, କରୁଣା ସଙ୍ଗରେ
ରସାଳ ମଧୁର ସଖ୍ୟ, ଭୁଲଇ କମଳ
ଗଭୀର ନିଦ୍ରାରୁ ଉଠୁଁ ହୁଏ ଅଧା-ସ୍ମର
ଯେହ୍ନେ ଏକ ସୁଖ-ସ୍ୱପ୍ନ; ପୁଷ୍ପ ପ୍ରସ୍ଫୁଟିତ,
ମିଶଇ ମାଟିରେ ଯେହ୍ନେ ବୃନ୍ତ-ବିଲୁଣ୍ଠିତ,
ସାୟନ୍ତନ ନଭେ ଯେହ୍ନେ ମତ୍ତ ବର୍ଣ୍ଣୋତ୍ସବ
ହୁଏ ଅନ୍ଧକାର ଲୀନ ରହି କେତେ ଲବ ।

ଅବିନାଶ, ମହାମୟା କାହିଁ ଛନ୍ତି ଯାଇ
ଜାଣେନା ସେ, ଚିଠିପତ୍ର ଦିଆ-ନିଆ ନାହିଁ ।
କରୁଣାର ଦଣ୍ଡ ଦଶବର୍ଷ କାରାବାସ
ଘୋଷିତ ହୋଇଛି ପତ୍ରେ; ସାତ-ଆଠ ମାସ
କଟିବଣି ଜେଲେ ତା'ର । ଦେଶ ତୋଳପାଡ଼
ହେଉଛି ଏଯାଏଁ, ରାଜା କରେ ପ୍ରତିକାର
ଖୋଜି ଅନ୍ଦିକନ୍ଦି, କରି ସହସ୍ର ଗ୍ରେପ୍ତାର
ନାରୀ-ନର-ନିର୍ବିଶେଷେ, ନ କରି ବିଚାର ।
ଧନ୍ୟବାଦ କରୁଣାର ସତର୍କତା ପାଇଁ;
କମଳର ଅଭିମାନ;—କିପାଁ ନେଲା ନାହିଁ
କରୁଣା ତାହାକୁ ସାଥେ । ଭାବି ପରେ ପରେ
ବାପାଙ୍କର ମୃତ୍ୟୁ, ପୁଣି ବିମୂଢ଼ ଦୁଃଖରେ
ହେବା ମହାମାୟା, ଅବିନାଶ କନ୍ୟା-ଦଣ୍ଡେ
ନେବା ଅବସର, ସ୍ଥାନତ୍ୟାଗ ସଂଗେ ସଂଗେ,
ସବୁ ମିଶି ଏହି ଦୁର୍ବିପାକ ଆକସ୍ମିକ
ମୁହ୍ୟମାନ କରେ ତାକୁ । ସ୍ୱପ୍ନିଳ, ନିର୍ଭୀକ
କମଳ, ଜୀବିକା ଖୋଜେ କଟକ ନଗରେ
ଦରିଦ୍ର, ମଳିନ-ବେଶ, ନଗନ ପଦରେ,

ପିତୃହୀନ, ସଂଗୀହୀନ, ଭବିଷ୍ୟତ୍-ହୀନ,
କମଳ ଆଖିରେ ତାର ଦୁଃଖ ଦୈନନ୍ଦିନ,
ଜାତିଠାରୁ, ଦେଶଠାରୁ, ସବୁଠାରୁ ବଡ଼;
ନିକଟତମର ଦାସ ସବୁବେଳେ ନର ।

ଦେଶରେ ଉଠିଛି ପୁଣି ଗାନ୍ଧି-ଝଡ଼ବାୟୁ,
ଅସହଯୋଗର-ଡାକେ ସ୍ଫୀତ ଜାତି-ସ୍ନାୟୁ ।
ତ୍ୟାଗ ଅଳ୍ପ, ଉତ୍ସାହର ବନ୍ୟା କିନ୍ତୁ ବହେ,
ସ୍କୁଲଛାତ୍ର ଗାଳିଦିଏ ସମ୍ରାଟେ ନିର୍ଭୟେ ।
କଳ-ବସ୍ତ୍ରେ ଗ୍ରାମେ ନଗ୍ରେ ହୁଏ ଅଗ୍ନ୍ୟୁତ୍ସବ
ଛାଡୁଛନ୍ତି କେହି କେହି ପଦବୀ, ବିଭବ ।
କମଳର ଦଳେ ଏକ ଜମିଦାର ପିଲା
ଖେଳ, ଖାନା ଏକମାତ୍ର ବୃତ୍ତି ଯା'ର ଥିଲା,
ବାପା ଯା'ର ରିଟାୟାର୍ଡ଼ ପ୍ରସିଦ୍ଧ ଡିପୋଟୀ
ରାଜଭକ୍ତି, ଅତ୍ୟାଚାର ଥିଲା ଦୁଇ କୋଟି
ଯା'ର ଘୃଣ୍ୟ ପୌରୁଷର ଅର୍ଥ ଥାଉଁ ଜମା,
ପୁଅ ଯା'ର ହୋଇଅଛି ଫାଜିଲି, ନିଷ୍କର୍ମା
ସେ ଆଜି ହୋଇଛି ନେତା ଖଦୀ-ପରିଧାୟୀ
ନେତୃତ୍ୱର ଅନ୍ୟ କିଛି ଗୁଣ ଖୋଜା ନାହିଁ ।
ଦଳ ଦଳ ଛାତ୍ର ଯେହୁ ଅପକ୍ୱ, କିଶୋର,
ନ ବୁଝନ୍ତି ଅର୍ଥ କିଛି ଅସହଯୋଗର
ଉଚ୍ଚେ ଉଚ୍ଚାରନ୍ତି ଦାଣ୍ଡେ ନୂତନ ସ୍ଲୋଗାନ—
ନଉକରି ଛାଡ଼ି କର ଯୁଦ୍ଧେ ଯୋଗଦାନ ।
'ସ୍କୁଲ୍ ଛାଡ଼', 'କୋର୍ଟ ଛାଡ଼', 'ଛାଡ଼ ମିଲ୍‌ବସ୍ତ୍ର'
'ଚରଖାହିଁ ଏକମାତ୍ର ଧର୍ମ, ଶାସ୍ତ୍ର, ଶସ୍ତ୍ର ।'

ଅସହଯୋଗର ଝଡ଼

କମଳର ସମିତିରୁ ଏକେ ଏକେ ଖସି
ଗଲେଣି ଇଂରେଜ-ରାଜ ଚାକିରିରେ ପଶି,
ଭୁଲିଛନ୍ତି ଦଳ, ଦେଶ, ପ୍ରତିଜ୍ଞା ପୂର୍ବର
ଖୋଜାହୁଏ ଅଙ୍କଲକ୍ଷ୍ମୀ ଏବେ ପ୍ରତ୍ୟେକର ।
ଦୁର୍ବିପାକ-ମୁହ୍ୟମାନ ଜୀବିକା-ଅନ୍ୱେଷୀ
ନିଜେ ସେ କି ଶକ୍ତି ପାରେ ଦଳରେ ନିବେଶି ?
ମହାଦଳ କଂଗ୍ରେସର ଆବିର୍ଭାବ ଦେଖେ

ଛୋଟ ଦଳ ପ୍ରୟୋଜନ କି ଅଛି ବିଶେଷେ ?
ବର୍ତ୍ତମାନ ପ୍ରଶ୍ନ,—ପୂର୍ବ ସ୍ୱପ୍ନ ଅନୁଯାୟୀ
ଗାନ୍ଧି-ଆନ୍ଦୋଳନେ ଝାମ୍ପ ଦେବ ଅବା ନାହିଁ ?
ଦେଶେ ମୁକ୍ତି ଦେବା ପାଇଁ ଇଂରେଜ କବଳୁ
କରୁଣା ସଜ୍ଜଇ ଜେଲେ, ଯାଇ ବିଳାସରୁ;
ସେହି ମୁକ୍ତି ଦେବାପାଇଁ ଗାନ୍ଧି-ଆନ୍ଦୋଳନ
ମୂର୍ତ୍ତ ହୋଇ ଆସିଅଛି ଯେହ୍ନେ ତା ସ୍ୱପନ,
କରୁଣା କହିବ କିସ, କି ବୋଲିବେ ଜନେ
ଯଦି ସେ ପଛେଇ ରହେ ନବ-ଆନ୍ଦୋଳନେ !

ପରିଚିତେ ଦେଖି ତାର ଥାଥା-ମାମା ଗତି
କହନ୍ତି 'ଟ୍ରେଟର୍', 'ଅସ୍ଥି-ହୀନ', 'ଛନ୍ନ ଯତି ।'
ସେ କିନ୍ତୁ ବିଚାରକରେ ନିଭୃତେ ନିର୍ଜନେ-
'ମୋ ଦୁଃଖ କେମନ୍ତେ ବୁଝାଇବି ଆନ ଜନେ ?
ଅସହାୟ ମାତା, ଭ୍ରାତା, ବିଧବା ଭଉଣୀ
ଏମାନଙ୍କୁ କା'ରେ ଦେବି ? ଯାଁକର କାନ୍ଦୁଣି
ନ ଶୁଣି ମୁଁ ଯିବି ଦେଶ-ମାତାର ଲୋତକ
ପୋଛିବାକୁ— ମୋଠାରୁ କେ ବଡ଼ ପ୍ରତାରକ ?
ଡେଇଁଲେ ଲଭିବି ଖ୍ୟାତି, ତାଳି ଜନତାର,
ସଭାସ୍ଥଳେ ମିଳିପାରେ ଶସ୍ତା ଫୁଲମାଳ ।
ଶେଷ-ଶୁଶ୍ରୂଷାରୁ ମ୍ରିୟମାଣା ଜନନୀର,
ଅଧିକ କି ଦେଶ, ଜାତି ? ହେବା ଶସ୍ତା ବୀର ?
କୁଟୁମ୍ବ କି ନୁହେଁ ଜାତି, ଗ୍ରାମ ନୁହେଁ ଦେଶ ?
ତ୍ୟାଗର କି ଗୃହ ମଧ୍ୟେ ନାହିଁ ସ୍ଥାନ ଲେଶ ?
ଖାଲି କି ଜନତା ଆଗେ ସ୍ଥାନ ପୌରୁଷର,
କାହିଁକି ନୀରବ ଯଜ୍ଞ ଆତ୍ମ-କର୍ତ୍ତବ୍ୟର ?

**ପାଖ ଓ ଦୂର କର୍ତ୍ତବ୍ୟ**

ନିକଟକୁ ଦୁଃଖ ଦେବି, ଦୂର-ସୁଖ ପାଇଁ
ପର ଭାଇ ହେବ ବୋଲି, ପର ହେବ ଭାଇ !
ଏ କେଉଁ ଅଦ୍ଭୁତ ଶାସ୍ତ୍ର ? କର୍ମର ବିଚାର
ନୋହିପାରେ ଆଡ଼ମ୍ବରେ, ଉଦ୍ଦେଶ୍ୟହିଁ ସାର ।
ନିକଟେ କର୍ତ୍ତବ୍ୟ ଯାହା ତାକୁ ଛାଡ଼ିଦେଇ
କିପାଁ ଦୂର କର୍ତ୍ତବ୍ୟକୁ ଯିବି ମୁଁ ଆଗେଇ ।

ଯିବାର ଯାଆନ୍ତୁ ଯିଏ; ମୋହର ସମୟ
ଦରକାର ଥିଲେ ଦିନେ ଆସିବ ନିଶ୍ଚୟ ।'
ସକଳ ବିଦ୍ରୂପ ସହେ ଅଟଳ କମଳ
କରି ଖ୍ୟାତି -ପ୍ରଲୋଭନ-ତ୍ୟାଗ, କଷ୍ଟକର;
ଯାପିବାକୁ ସ୍ଥିରକଲା ନୀରବ ଜୀବନ,
ଯେ ଯାଏଁ ନାହିଁଛି ପୋଛି ଆଶ୍ରିତ-କଷଣ ।

ନଗରେ ନ ହେଉ ତାର କିଛି ବନ୍ଦୋବସ୍ତ,
ଚଳିଲା ସେ ମଫସଲେ ହୋଇ କିଛି ବ୍ୟସ୍ତ ।
ହାଇସ୍କୁଲେ ଶିକ୍ଷକତା, ଦରମା ସାମାନ୍ୟ,
ଚଳିଯିବ, ହୁଏ ଘରେ ଅଳ୍ପ କିଛି ଧାନ୍ୟ ।
କିଛି କାଳ କଟେ ମେସେ ପିଲାଙ୍କ ସଙ୍ଗତେ,
ଖୋଜିପାଇଁ ଛୋଟ ଘର ଗ୍ରାମେ କେଉଁମତେ,
ପରେ ଆଣି ରଖେ ପାଶେ ସର୍ବ ପରିବାର;
କଷ୍ଟେମଷ୍ଟେ ଚଳିଯାଏ ଛୋଟ ତା ସଂସାର ।
ଜନନୀଙ୍କୁ କିନ୍ତୁ ଗ୍ରାମ ଗଛ ଲତା ଟାଣେ,
ସଂଗରୁ ମମତା ଜାତ ମାଟି ପ୍ରତି ପ୍ରାଣେ,
ପୁଣି ବହୁ ସ୍ମୃତିପୂର୍ଣ୍ଣ, ନିଜ ହାତେ ଗଢ଼ା
ଛୋଟ ଛୋଟ ନାନା ଦ୍ରବ୍ୟ, ହେଲେ ଅପଚରା
ନଷ୍ଟ ହୋଇଯିବ ସିନା । ଦିନେ ତ କମଳ
ଆଣିବ ଘରକୁ ବୋହୂ ରୂପ-ଟଳମଳ,
ଜନନୀଙ୍କ ଆଶା ସେହି ସ୍ୱର୍ଣ୍ଣ ପ୍ରତିମାରେ
ଥାପିଯିବେ ଦେବୀ କରି ଛୋଟ ସେ ସଂସାରେ ।
ସେ ସଂସାର ଭାଙ୍ଗିବେ କି ଜୀବ ଥାଉ ଥାଉ,
ସ୍ୱାମୀ ପରି ଛାଡ଼ିବେ ସେ ସେଠି ଶେଷ ବାୟୁ !
କନ୍ୟା, ସାନ ପୁତ୍ରେ ରଖି ପାଶେ କମଳର
ସଙ୍ଗେ ଘେନି ଦାସୀ ଏକ ବହୁତ ଦିନର,
ଚଳିଲେ ଜନନୀ ଗ୍ରାମେ;—ପରିଚିତ ମାଟି,
ଯାହାପାଇଁ ଦିଏ ପ୍ରାଣ ବ୍ୟକ୍ତି ଆଉ ଜାତି ।

କମଳର ଶିକ୍ଷକତା ଗ୍ରହଣ

ବ୍ରତ ପରି ଧରିଅଛି ଛାତ୍ର-ଅଧ୍ୟାପନା,
ନାହିଁ ରଖି ଚିତ୍ତେ ବିନିମୟର ଗଣନା
କମଳ, କରଇ ବିଦ୍ୟାଦାନ ଅକାତରେ

ଶିକ୍ଷକ ସେ ସବୁବେଳେ, ଇସ୍କୁଲେ ବା ଘରେ ।
ଘରେ କରେ ଅଧ୍ୟୟନ, କରେ ପରିଶ୍ରମ
କରିବାକୁ ଜ୍ଞାନ, ଛାତ୍ରଙ୍କର ହୃଦଂଗମ,
ଦେଖେ ତାଙ୍କ ଖାତାପତ୍ର ସାବଧାନତାରେ
ଦେଖାଏ ପ୍ରମାଦସବୁ ମୃଦୁ ତିରସ୍କାରେ,
ତାଙ୍କ ସଙ୍ଗେ ଏକ ହୁଏ, କ୍ରୀଡ଼ନେ, ବିଳାସେ,
ତାଙ୍କ ଛୋଟ ଛୋଟ ଦୁଃଖେ ବେଦନା ପ୍ରକାଶେ ।
ସବୁ ସତ୍ତ୍ୱେ ଥାଏ କିନ୍ତୁ ଆପଣାର ସ୍ତରେ
ଯେହ୍ନେ ସେ ଉନ୍ନତ ଢୀବ ଜ୍ଞାନେ, ଚରିତ୍ରରେ ।
କ୍ଷୁଦ୍ରତାର ଊର୍ଦ୍ଧ୍ୱେ । ଶୁଦ୍ଧ, କ୍ଷୀଣ ଅହଂକାର
କରେ ମଧ ତାକୁ ଭୟପ୍ରଦ ଜନତାର ।
ଛୋଟ ସେ ସ୍ଥାନରେ ଜନପ୍ରିୟ, ଛାତ୍ର-ପ୍ରିୟ
କମଳ, ସ୍କୁଲରେ ହୁଏ ନାୟକ-ସ୍ଥାନୀୟ ।
ଯାହା କିଛି କାମ ପଡ଼େ, ନ ଥିଲେ କମଳ
ଶଂକା ଯେହ୍ନେ ନ ହେବ ତା' ସୁନ୍ଦର, ସଫଳ ।
ଏକ ବର୍ଷ ପରେ ତା'ର ବିନା ଆବେଦନେ
କମିଟି ଘଟାଏ ବୃଦ୍ଧି ସ୍ୱଳ୍ପ ତା' ବେତନେ ।
ଦୁଇବର୍ଷ ପରେ ଯେବେ ଶିକ୍ଷକ ପ୍ରଧାନ,
ଯାଆନ୍ତି ଅନ୍ୟତ୍ର, ସର୍ବେ କମଳର ନାମ
ଉଚ୍ଚାରିଲେ ଆଗ୍ରହରେ ସେହି ପଦ ପାଇଁ,
କମିଟି ତା ଗ୍ରାହ୍ୟ କଲେ ଆପତ୍ତି ନ ଥାଇ ।
ଅର୍ଥର ସ୍ୱାଚ୍ଛନ୍ଦ୍ୟ ହେଲା, ସଉଖ୍ୟ ଘରର
କର୍ମେ ସ୍ୱାଧୀନତା ପୁଣି,— ଆନନ୍ଦ କମଳ ।

ତଳ ଢୀବ ଯେବେ ଯାଇ ବସେ ଉଚ୍ଚାସନେ
ମସ୍ତିଷ୍କ ରହେନା ସ୍ଥିର ଉପର-ପବନେ ।
କାଳେ ତଳଲୋକେ ନେବ ଉଚ୍ଚତ୍ୱ ତାଙ୍କର
ଭୁଲିଯିବେ, ଏଲାଗି ସେ ରହନ୍ତି ତତ୍ପର ।
କମଳ ରହଇ କିନ୍ତୁ ସେହି ପୂର୍ବ ଢୀବ
ସମସ୍ତଙ୍କ ସେବାକାରୀ, ସଖା ଓ ସଚିବ ।
ସମସ୍ତ ଇସ୍କୁଲେ ଭାବି ନିଜ ପରିବାର,
ଚଳାଏ, ସର୍ବତ୍ର କରି ସ୍ନେହର ସଞ୍ଚାର,

ଅନ୍ୟାୟର ଶତ୍ରୁ କିନ୍ତୁ, ଶତ୍ରୁ ଅସତ୍ୟର
ଏଇଠି ଫୁଟଇ ତେଜ ନୂତନ ପଦର ।
ଅନ୍ୟଥା ସମ୍ପର୍କ ତା'ର ଚିର ସକରୁଣ
ସ୍ନେହ-ସିକ୍ତ ହୃଦୟହିଁ ଶ୍ରେଷ୍ଠ ତା' କାନୁନ ।

ଦିନେକ ସନ୍ଧ୍ୟାରେ ଏକ କିଶୋର ବିଦ୍ୟାର୍ଥୀ
କମଳର ଘରେ ଆସି ହୁଏ ଦୟା-ପ୍ରାର୍ଥୀ ।
ହସ୍ତେ ଦରଖାସ୍ତ ତା'ର-ହଷ୍ଟେଲ ଅଧକ୍ଷ
କରିଛନ୍ତି ନାମଞ୍ଜୁର, କରିଣ କଟାକ୍ଷ
ଶ୍ରେଣୀରେ ତା' ନିମ୍ନ-ସ୍ଥାନେ, ପୁଣି ଥହାଜିର
ବାରମ୍ବାର ହଷ୍ଟେଲରୁ; ତଡ଼ା ସେ ଅଚିର
ହେବ ଯଦି ବାରମ୍ବାର ଚାହେ ଯିବ ଘରେ,
ବାପର ସ୍ୱାକ୍ଷର ନାହିଁ ତା' ଦରଖାସ୍ତରେ ।

ସହୃଦୟ ହେଡ୍‌ମାଷ୍ଟର

ପଢ଼ିଲା କମଳ ସବୁ-କିଶୋରେ କହଇ
'ଯାଇପାରିବନି ତମେ'-କାନ୍ଦେ କଇଁକଇଁ
ସଙ୍ଗେ ସଙ୍ଗେ ସେ କିଶୋର ଶୁଣି ତା ବିଚାର ।
କମଳ କହଇ ତାକୁ, 'ନ ଥାଇ ବାପାର
ସ୍ୱାକ୍ଷର, କେମନ୍ତେ ଛଡ଼ା ହେବ ହଷ୍ଟେଲରୁ,
କାନ୍ଦୁଛ କିପାଇଁ ? କିଏ ଆସିଛି କି ଘରୁ ?''
କହେ ଛାତ୍ର କାନ୍ଦି କାନ୍ଦି, ''କେ ଆସିନି ସାର୍,
ବଜାରେ ଭେଟିଲି ଜଣେ ଲୋକ ମୋ ଗାଆଁର,
ତା' ହାତେ ଖବର ଦେଇ ପଠାଇଛି ବୋଉ
'ଚିତାଉ ଅମାସ୍ୟା କାଲି, ବାଟିବି ପିଠୋଉ
କାହାପାଇଁ ? ଧନ ମୋର ଦୂରସ୍ଥେ ରହିଲା,
ଦେଖୁଛ ତ ଘର ମୋର ଦିଶେ କି ଶୁଖିଲା !
କହିବ ଲୁଚାଇକରି ମୋର ଗଂଗାଧରେ,
କେଉଁମତେ କାଲି ଆସି ପହଞ୍ଚିବ ଘରେ,
ପିଠା ଖାଇ ଯିବ ଚାଲି । ଛୋଟ ଭାଇ ତାର
'ନନା' 'ନନା' ବୋଲି ହୁଏ, ଘର, ବାରି, ଦ୍ୱାର ।'
ବୋଉକୁ ଦେଖିବି ସାର୍, ଦେଖିବି ମୋ ଭାଇ
ଶୁଣିଲାବେଳରୁ ମୋର ମନ ରହୁନାହିଁ,
ନିଶ୍ଚେ ମୁଁ ଫେରିବି କାଲି, କହୁଅଛି ସତ,
ନ ଗଲେ ମୁଁ, ବୋଉ ମୋର ହେବ ହନ୍ତସନ୍ତ ।'

କଥା ଶୁଣି କମଳର ଆର୍ଦ୍ର ହୁଏ ନେତ୍ର
କିଏ ଏଠି ଦେଖାଇବ କାନୁନ୍‌ର ବେତ୍ର
ପଶୁ ଛଡ଼ା ? ସେ ଅଧମ ଛାତ୍ରେ ସ୍ନେହେ ଧରି,
ନିଜ ମାଆ ସ୍ମୃତିରେ ତା ଚିତ୍ତ ଉଠେ ଭରି ।
ଇସ୍କୁଲ ନିୟମୁଁ ବଡ଼ ଜନନୀ ହୃଦୟ
ଶାସନରୁ ସ୍ନେହ, ଦୟା, ବଡ଼ ନିଃସଂଶୟ ।
ପିଟାଇ ସେ କହେ, "ବାବା, ଦେଲି ଅନୁମତି,
ଯାଅ ତୁମ୍ଭେ ।" ଛାତ୍ର ଚଳେ କରିଣ ପ୍ରଣତି ।

କାରାଗାରୁ କାରାଗାରେ ପ୍ରଦେଶୁ ପ୍ରଦେଶେ
କରୁଣା ହୁଅଇ ଟଣା, ଶାସନ-ନିର୍ଦ୍ଦେଶେ ।
ଭୁଲିଅଛି ଦେଶ ତାଙ୍କୁ । ଅନ୍ୟ ଉତ୍ସାହରେ
ମତ୍ତ ଏବେ ଦେଶ । ଉଚ୍ଚ ପ୍ରାଚୀର ପଛରେ
ଦେଶର କୁସୁମ ସମ ଯୁବକଯୁବତୀ
ଶତ ଶତ ଶୃଙ୍ଖଳିତ, ଦୁଃଖେ ସହୁଛନ୍ତି,
ପିଞ୍ଜରାର ଜୀବପରି, ନ ସ୍ମରେ କେ ତାଙ୍କୁ
ତାଙ୍କର ଖବର ନାହିଁ ଆସେ ତାଙ୍କ ପାଖୁ ।
ଜଗତୁ-ବିଚ୍ଛିନ୍ନ ଏହି ଜୀବନ୍ମୃତ ଦଳେ
କରୁଣା, କମ୍ରାଙ୍ଗୀ, ନବବୟା ଧୀରେ ସଢ଼େ ।
ରୁକ୍ଷବସ୍ତ୍ରା, ରୁକ୍ଷକେଶା, ନିୟନ୍ତ୍ରିତ-ଗତି,
ପାପିନୀ କଏଦୀ ସଙ୍ଗେ ତାହାର ବସତି ।
ତାଙ୍କ ସଙ୍ଗେ ପେଶେ ଚକି, କୂପୁଁ କାଢ଼ି ପାଣି
ଲୌହପାତ୍ରେ ଅନ୍ନଭୁଞ୍ଜେ, ନୋହି ଅଭିମାନୀ;
କଠିନ ପ୍ରସ୍ତରେ ଶୁଏ ରୁକ୍ଷ କମ୍ବଳରେ;
ନିମ୍ନ-ଶ୍ରେଣୀ ନାରୀ-ଗଳ୍ପ ଶୁଣେ ଅବସରେ ।
ଅନଭିଜ୍ଞ ବାଳିକାର ନ ଥିଲା ଧାରଣା
କାରାବାସ ଏୟା ବୋଲି, ନାହିଁ ଥିଲା ଜଣା
ନାରୀତ୍ୱ ଏପରି ଘୃଣ୍ୟ, ଶୂନ୍ୟ ହୋଇପାରେ,
ଜନନୀହିଁ ଥିଲେ ନାରୀ-ଆଦର୍ଶ ତା'ଠାରେ,
ଥିଲେ ପୁଣି ଯେତେ ସବୁ ନାୟିକା କାବ୍ୟର,
ନିଜକୁ ସେ ଭାବୁଥାଏ ତାଙ୍କରି ସଙ୍ଗର ।

କରୁଣାର
ଜଘନ୍ୟ କାରାବାସ

ଏକସଙ୍ଗେ ରହିବାର କରିବ କଳ୍ପନା
ସେ କିପାଁ ସେ ନାରୀ ସହ,—ଯାହାଙ୍କୁ ଅଜଣା
ନାହିଁ କିଛି ଘୃଣ୍ୟ ଅପରାଧ ଜଗତ୍‌ର,
ନୀଚ, କ୍ଷୁଦ୍ର, ଶ୍ୱାନସମ କଳହ-ତତ୍ପର ?
ଭ୍ରୂଣ-ମରା, ସ୍ୱାମୀ-ଘାତୀ, ବିଷ-ପ୍ରଦାୟିନୀ
ଅଛନ୍ତି, ଅଛନ୍ତି ପୁଣି ବିଶେଷେ ଚୋରଣୀ ।
ଅଛି ଏକ ସୁଦର୍ଶନା, ହିଂସା-ପରାୟଣା
କଲି ଯୋଗୁଁ କା'ର ପୁତ୍ରେ କରି ବାଟବଣା
ଲୁଚାଇ ମୋଡ଼ିଲା ବେକ, ନେଲା ଅଳଙ୍କାର
ପୋଲିଶ୍ ଧରିବାଯାଏଁ ଚଳେ ନିର୍ବିକାର ।
ଶୁଣିଲେ ଏସବୁ ଆଦ୍ୟେ ଦିଏ କାନେ ହାତ
କରୁଣା, ପାଇଲେ ଯେହ୍ନେ ସାମାନ୍ୟ ଆଘାତ
ଲାଜକୁଳୀ ଲତା ଅବୟବ ସମ୍ବରଇ,
ପ୍ରଥମେ ଏସବୁ ପ୍ରତ୍ୟୟରେ ନ ଆସଇ ।
ଦେଖେ ପୁଣି ସେମାନଙ୍କ ନାହିଁ ଅନୁତାପ
ଉଲୁଗୁଣା ଦେଉଥାନ୍ତି ଇଏ ତାର ପାପ—
(''ହଇ ଲୋ ଘଇତା-ମାରି, କହିବୁ ତୁ ମତେ ?''
''ଭଲକଲି; ତୋ'ପରି ତ ଦାଣ୍ଡେ ବାରିପଟେ
ଦିନରାତି ନାହିଁ ଖୋଜୁଥିଲି ମୁଁ ନାଗର ?''
''ଚୋରଣୀ ତୁ, ତୋର ପୁଣି ଏଡ଼େକ ଚାତର !'')
ଅହୋରାତ୍ର ଶୁଣି ଶୁଣି ଏହି ବାକ୍ୟାଳାପ
କରୁଣା କରିଲା ଆଦ୍ୟେ କେବଳ ବିଳାପ !
କେଉଁ ସ୍ତରେ ଥିଲା ସିଏ, କାହିଁ ସେ ଆସିଲା
ସଂଗହୀନା, ବିରହିଣୀ, ବୟସରେ ପିଲା ।

ଯେ ଉତ୍ସାହେ ଇଂରାଜରେ କରିଲା ଫାୟାର୍
ସେଦିନ କନ୍‌ଭୋକେଶନେ, ଦୃପ୍ତ ତେଜ ତା'ର
ରହନ୍ତା କି ସେହିପରି ? ପାଇଥିଲେ ଫାଶୀ;
ମୁହୂର୍ତ୍ତକେ ଭୁଲିଥାନ୍ତା ସିନା ଦୁଃଖରାଶି,
ମରିଥାନ୍ତା ସୁଖେ ପ୍ରିୟ ନାମ କହି କହି,
ଦଶ ବର୍ଷ କାରାବାସ ଦିଏ ଚିତ୍ତ ଦହି !
କମଳ-ସମ୍ପର୍କଛିନ୍ନ, ଜ୍ଞାନ-ଚର୍ଚ୍ଚାହୀନ
ପାପ-ପରିବେଶେ ସ୍ଥିତି, ନିୟନ୍ତ୍ରିତ ଦିନ,

ଇତର ପ୍ରାଣୀଙ୍କ ସଖ୍ୟ, ରୂକ୍ଷ ଖାଦ୍ୟ, ବାସ
ଜାଣି ସେ ନ ଥିଲା ଏୟା ବୋଲି କାରାବାସ ।
କ୍ରମେ କିନ୍ତୁ କରେ ଚିନ୍ତା—ଏଇ ତ ମୋ ଜାତି
ଏଇ ପାପସବୁ ମୁଁ ବି କରିପାରିଥାନ୍ତି,
ଥିଲେ ସେମାନଙ୍କ ସ୍ତରେ । ନ ଥିଲେ ଅଭାବ
କିପାଁ କେ କରିବ ଚୋରି ? ତାରତମ୍ୟ ଭାବ
ସମ୍ପତ୍ତିରେ ଥାଉଁ ସିନା, ଈର୍ଷା ସମାଜରେ,
ମୂର୍ଖ ଥିଲେ ନର ଅବା କେଉଁ ପାପେ ଡରେ ?
ସମାଜ କି କରିଅଛି, ଅବା ସରକାର
ଏ ନରନାରୀଙ୍କ ପଶୁତ୍ୱର ପ୍ରତିକାର ?
ବିଚିତ୍ରତା କିସ ପଶୁକର୍ମ କରିବାରେ ?
ଦଣ୍ଡ ବା ସମାଜ ଦେବ କେଉଁ ଅଧିକାରେ ?
ସମାଜର ଉଚ୍ଚସ୍ତରେ ସବୁ ଅପରାଧ
ନଗ୍ନ ବା ପ୍ରଚ୍ଛନ୍ନ ରୂପେ ଚଳୁଛି ଅବାଧ,
କିଏ ନ କହୁଛି ମିଥ୍ୟା, ଚୋରି କେ ନ କରେ
କେତେ ଜଣ ଶୁଦ୍ଧ ବିଶ୍ୱେ, ଯୌନ-କରମରେ ?
ସବୁ ପାପ ହେଉଥିଲେ ଦଣ୍ଡିତ ସଠିକ,
ସ୍ୱାଧୀନ ମନୁଷ୍ୟୁଁ, ହୋନ୍ତେ କଏଦୀ ଅଧିକ ।

ସୁନ୍ଦର, କୁଳଜ, ନବବୟସ, ଶିକ୍ଷିତ
ଦେଖି ହୁଏ ହୃଦୟରେ ମାୟା ପ୍ରବର୍ତ୍ତିତ
ତା'ପ୍ରତି ଥାନେକ କେଉଁ କାରା ଅଧ୍ୟକ୍ଷର,
ଦେଶୀ ସେ, ପ୍ରଚ୍ଛନ୍ନ ଘୃଣାକାରୀ ଇଂରେଜର ।
ବୟସ୍କ ସେ, କନ୍ୟା ଅଛି କରୁଣାର ପରି
କରୁଣାକୁ ଦେଖିଲେ ତା' ଛାତି ଉଠେ ଥରି ।
ଅଳ୍ପେ ଅଳ୍ପେ କରନ୍ତି ସେ ବ୍ୟବସ୍ଥା ତାହାର
ଦିଅନ୍ତି ନାରୀଙ୍କ ପାଇଁ ଅଧ୍ୟାପନା ଭାର,
ରଖନ୍ତି ଅଲଗା କରି ।

ବିଜନ ଆଶାରେ
ବନ୍ଧୁଜନେ ସ୍ମରି ବେଳେବେଳେ ଅଶ୍ରୁ ଢାଳେ ।
ଆଦ୍ୟେ ଆସୁଥିଲେ ବାବା, ମାଆଙ୍କ ସଙ୍ଗତେ,
ଏବେ ଆସେ ଭାଇ, ଯିଏ ଉତ୍ତର-ଭାରତେ

ଥାଇ କରେ ବାରିଷ୍ଟରୀ । ଶୁଣେ ତାହାଠାରୁ
ମହାମାୟା ଶଯ୍ୟାଗତା, ମରଣ-ଶଯ୍ୟାରୁ
ପଠାଇଥାଆନ୍ତି ମାତା ବିଭିନ୍ନ ମିଠାଇ
ଖାଇବ ଆଦରୀ କନ୍ୟା, ମରୁଛି ନ ଖାଇ ।
ପଚାରି ନ ପାରି ଲାଜେ କମଳର କଥା,
ଜ୍ଞାତ ଓ ଅଜ୍ଞାତ ମିଶି ଦିଏ ତାକୁ ବ୍ୟଥା ।
ଭାବେ ବରାବର "ଆହା, କଷଣ ତାଙ୍କରି
ବେଶି ସିନା, ସୃଷ୍ଟି କଲି ସବୁ ମୁଁ ପାମରୀ !
ଜାଣିଥିଲି କଣ୍ଟକିତ ମୋର ଭବିଷ୍ୟତ୍
ତାଙ୍କୁ କିପାଁ କଲି ମୋର ଭାଗ୍ୟରେ ଜଡ଼ିତ ?
ନିରୀହ, ସରଳ, ସାଧୁ, ଶୁଦ୍ଧ, ସୁକୁମାର
ଅଳ୍ପକେ କରିଲି ତାଙ୍କ ହୃଦୟ ଉଜାଡ଼ ।
ମୋଠାରେ ସଁପିଲେ ସବୁ, ମୁଁ ହେଲି ସର୍ବସ୍ୱ ।
କହୁଥାନ୍ତି, 'ରଥ ମୁହିଁ, ତମେ ମୋର ଅଶ୍ୱ ।'
ଅଶ୍ୱ ତ ବନ୍ଦିନୀ ଏବେ, ସେ କନକ-ରଥ
କେଉଁ ବନପଥେ ଲୋଟେ, ଛିନ୍ନ-ବୃକ୍ଷ ବତ ?
କମଳଲାଗି ଅନୁଶୋଚନା
କିଛି ମୁଁ ଜାଣିଲି ନାହିଁ, କି ହେଲା ତାଙ୍କର
ଯିଏ ମୋର ପ୍ରିୟତମ, ଜୀବନ-ଦୋସର ।
ଦୀର୍ଘ ଦଶବର୍ଷେ ଯାଇଥିବ ଯଉବନ,
ଲୋଡ଼ା ହେବ ସଖ୍ୟ ପାଇଁ ନୂଆ ଦୃଷ୍ଟି-କଣ,
ଭାବିଥିଲି ନିଜ ହାତେ ଗଢ଼ିବି, ସେବିବି,—
ଜୀବନର ଶ୍ରେଷ୍ଠ କାଳେ ନ ହେଲି ବାଂଧବୀ !
ଅବା ବରିପାରିଥାନ୍ତି ସଂଗିନୀ ଅପର—"
ତେଣିକି ତା ଚିନ୍ତା ସ୍ତବ୍ଧ, ଛାତି ଥରଥର ।
ନାନା ଢଙ୍ଗେ ଘେନି ଏହିପରି ଅଭିଜ୍ଞତା
କରୁଣ ହୁଅଇ କରୁଣାର ପ୍ରାଣ-କଥା ।

କମଳ ବିଶେଷ ଆଉ କିଛି ଭାବେ ନାହିଁ
ରମା— କମଳର ବିଧବା ଭଗିନୀ
ଜାଗରଣ କାଳଯାକ କର୍ମ-ବ୍ୟସ୍ତ ଥାଇ ।
ଘରେ ଆସି ପଢ଼ିଆଏ ଭଗିନୀ, ଭାଇରେ;
ଲେଖେ କିଛି ଅବା ଆଖି ପକାଏ ବହିରେ ।
ବିଧବା ଭଗିନୀ ରମା, ପ୍ରାପ୍ତଯଉବନା

ସୁପୁଷ୍ଟଶରୀରା, ସୁସ୍ଥା, ଚଟୁଳବଦନା ।
ଧର୍ମବତୀ, ଶାନ୍ତିପ୍ରିୟା, ଅଳ୍ପଭାଷିଣୀ,
କଣ୍ଠଟି ମଧୁର ତାର ପିକବାଣୀ ଜିଣି ।
ପ୍ରାୟ ହିଁ କମଳ, ଘରେ ଗୋଷ୍ଠୀ-ଉପାସନା
ଥାଏ କରି, ରମା କରେ ସଙ୍ଗୀତ-ରଚନା
ଖାଲି କଣ୍ଠେ । ସୁଧା ବିଁଚିଯାଏ ତା' ଭଜନେ
ନାସ୍ତିକର ପ୍ରାଣ ଥରିଉଠେ ତା' ଶ୍ରବଣେ ।
କମଳର ଇଚ୍ଛା, ଦେଇ ମାଟ୍ରିକ୍ୟୁଲେଶନ
ଶିଖି ଧାତ୍ରୀ-ବିଦ୍ୟା ହେବ ସ୍ୱାଧୀନ-ଜୀବନ ।
ସେହି ଲକ୍ଷ୍ୟେ ପଢୁଥାଏ ।
ଭାଇ-ସହକର୍ମୀ
ଅରବିନ୍ଦ ନାମ ତାଙ୍କ, ଯୁବା, ଖ୍ରୀଷ୍ଟଧର୍ମୀ
ନୂତନ କଲେଜାଗତ, ଦେଖି ସେ ରମାରେ
ପ୍ରସ୍ତାବିଲେ କମଳକୁ, ବିଭାହେବେ ତା'ରେ ।
ସ୍ୱଚ୍ଛଳ ଅବସ୍ଥା ତାଙ୍କ, ନାନା ଗୁଣବାନ,
ସଙ୍ଗୀତ-ନିପୁଣ ନିଜେ, ଶୁଣି ରମା-ଗାନ
ବିଶେଷ ଇଚ୍ଛୁକ କେହ୍ନେ ରମାକୁ ପାଇବେ
ନିପୁଣିକା କରି ତାକୁ ସଂଗୀତେ ଗଢ଼ିବେ ।
ରମାର ଅନିଚ୍ଛା ନାହିଁ, ସ୍ୱୀକୃତ କମଳ;
କେବଳ ଅମତ ହେବ ବୃଦ୍ଧା ମାତାଙ୍କର ।
କିଏ ତାଙ୍କୁ ଦେବ ଦୁଃଖ ଏ ବୃଦ୍ଧ ବୟସେ ?
କଥାରେ କଥାହିଁ ରହେ, ବାଧା ପଡ଼େ ରସେ ।
ଇତିମଧ୍ୟେ ପାଇ ମାତା-ବେମାର ଖବର
ରମାକୁ ପଠାଏ ଗ୍ରାମେ କମଳ ଚଂଚଳ ।

ମାତା, ଜ୍ଞାତି, ବନ୍ଧୁଜନେ, ଶୁଭାକାଙ୍କ୍ଷୀଦଳ
ଲାଗିଛନ୍ତି କମଳର ପଛେ ବରାବର
କରିବାକୁ ପରିଣୟ । ଅଭାବ କିଛିର
ନାହିଁ ଆଉ; କାହିଁକି ସେ ନ ହେଉଛି ସ୍ଥିର
ଏଥର ସଂସାରେ; ବଞ୍ଚେ ସନ୍ନ୍ୟାସୀଙ୍କ ପରି,
କିବା ତା'ର ଅଭିଳାଷ, ନୁହେଁ ସ୍ଥିର କରି ।
ନିର୍ବିକାର କମଳ
ଉତ୍ତମ ପ୍ରସ୍ତାବ ଆସେ ଅନେକ କ୍ଷେତ୍ରରୁ
ସୁନ୍ଦରୀ ଶିକ୍ଷିତା କନ୍ୟା, ଯଉତୁକ ଗୁରୁ,

କେବା, ପିତାମାତାଙ୍କର କନ୍ୟା ଏକମାତ୍ର,
ସୁବିସ୍ତୀର୍ଣ୍ଣ ଜମିଦାରି, ସ୍ୱର୍ଣ୍ଣମୟ ଗାତ୍ର,
କମଳ ହୋଇବ ସେ ସବୁର ଅଧିକାରୀ,—
ପ୍ରତ୍ୟାଖ୍ୟାନ କରେ ସବୁ କିଛି ନ ବିଚାରି ।
ନାନା ଘଟକାଳି ହେଉଁ ଏପରି ବିଫଳ,
ସେ ପ୍ରସଙ୍ଗ କେହି ନାହିଁ ଉଠାନ୍ତି ଏଥର ।
ଜଳାବର୍ତ୍ତ-କେନ୍ଦ୍ର ପରି ସବୁ କର୍ମତଳେ
କମଳ ନିଶ୍ଚିନ୍ତ ନିର୍ବିକାର ରହି ଚଳେ ।

ଥରେକ ଛୁଟିରେ ଗ୍ରାମେ ରହିଛି କମଳ,
ଗ୍ରାମସାରା ଭୋଜି, ବିଭା, ନିମନ୍ତ୍ରଣ ସକଳ,
ଘରେ ଘରେ ଆମନ୍ତ୍ରିତ ବାନ୍ଧବୀ ବାନ୍ଧବ
ଭୋଜିଭାତ, ଖେଳ କଉତୁକର ଉତ୍ସବ ।
ଦିନେ ଯୋଗଦେବା ପାଇଁ ଉତ୍ସବେ କାହାର
କମଳର ସର୍ବେ ଯାଇ ଅଛନ୍ତି ବାହାର ।
ଘରେ ଏକା, ପଢୁଛି ସେ ଖଣ୍ଡେ ଉପନ୍ୟାସ,
ବର୍ଣ୍ଣିତ ବିସ୍ତୃତେ ଯହିଁ ଯୌବନ-ବିଳାସ;
ଉତ୍ତେଜିତ ହୋଇଆସେ ନିୟନ୍ତ୍ରିତ ସ୍ନାୟୁ,
ବିଚଳିତ କରେ ଚିତ୍ତ ସ୍ୱପ୍ନ ଆସି କାହୁଁ
ଗତ ଦିନମାନଙ୍କର, ନମଇ ନୟନ;
ଏକାଳେ କେ କରି ମଧୁଗନ୍ଧ ବିକିରଣ
ଆଖି ବୁଜି ପଛ ପଟୁ କମ୍ର ଅଙ୍ଗୁଳିରେ
ପୁସ୍ତକ ଛଡ଼ାଇନେଲା । କମଳ ଅଚିରେ
ଦେଖେ ଖୋଲି ଅଙ୍ଗୁଳିର ମଧୁ ଆବରଣ,—
ଉଭା ଆଗେ ସରସ୍ୱତୀ ସସ୍ମିତ ବଦନ ।
ଥଟା ଲେଖାଲେଖି ସେହୁ, ବଧୂ ପଡ଼ୋଶିନୀ,
ପୂର୍ବରୁ ସୁନ୍ଦରୀ, ଏବେ ମଧ୍ୟ-ଯଉବନୀ ।
ପ୍ରଗଲ୍ଭା ସେ, ମାତୃତ୍ୱରେ ନୁହେଁ ସେ ସନ୍ତୋଷ,
ରସାନ୍ୱେଷୀ, ସ୍ୱାମୀଠାରେ ଚିତ୍ତ ଅବଶୋଷ;
ନ ପାଇ ତା', ଖୋଜେ ଯହିଁ ପାଇବାର ଆଶା,
କମଳଠି ଅଛି ତାର ପ୍ରାଚୀନ ପିପାସା ।
କହଇ ଚାତୁର୍ଯ୍ୟେ ହସି, ''ଖୋଜି ମାଉସୀଙ୍କୁ

ପ୍ରଲୋଭନ ଓ ପଳାୟନ

ଆସୁ ଘରେ, କାହିଁ ନାହିଁ ଦେଖି କାହାରିକୁ,
ଖୋଜୁ ଖୋଜୁ ଦେଖିଲି ମୁଁ ପଢୁଛ ଏଠାରେ,
ବଡ଼ଲୋକଠାରୁ କାଳେ କିଛି ମିଳିପାରେ !
ସେ ଆଶାରେ ଗଲି ପଶି । ବିଭା ହେଲ ନାହିଁ
ଖାଇଥାନ୍ତୁ ଭୋଜିଭାତ, କେଉଁ ନାରୀ ଧାୟି,
ରହିଲ ବାଡୁଅ ହୋଇ, ବୁଢ଼ା ହେଲ ଆସି
ଯୁବାକାଳ ସବୁ-ସୁଖ ଗଲା ଭାସି ଭାସି !
କି ବହି ଏଇଟା ? ଅଛି କି ପାଠ ଏଥିରେ ?
ଦେବିନି ମୁଁ, ଯାଉଅଛି ନେଇ ମୁଁ ସାଥିରେ ।''

ଗମନଉଦ୍ୟତା ହେଲା କରି ସେ ଛଳନା,–
କମଳ କାକୁତି କରେ, 'ନିଅନା, ନିଅନା,
ଅଧା ମୁଁ ପଢ଼ିଛି ପରା,'–ଧରେ ତା'ର କର,
ହସ୍ତରୁ ପୁସ୍ତକ ପଶେ ବକ୍ଷ ଅଭ୍ୟନ୍ତର ।

'ନିଅ ଏଠୁ' କହେ ହସି । ବିମୁଗ୍ଧ କମଳ
କ୍ଷଣକାଳ କିଂକର୍ତ୍ତବ୍ୟେ ରହଇ ନିଶ୍ଚଳ ।
କହଇ ପ୍ରଗଲ୍‌ଭା ନାରୀ–'କି ପୁରୁଷ ତମେ,
ବହିଟେ ନ ପାର ନେଇ, ଭାବୁଅଛ ମନେ !'
'ଆଚ୍ଛା ହଉ' କହି ସେହି ଯୁବା ନିରୁପାୟ,
ଖୋଜେ ବକ୍ଷବସ୍ତ୍ରେ ବହି, କଂପେ ସାରା କାୟ
ଯାଦୁସ୍ପର୍ଶେ ସୁକୋମଳ କାମିନୀ-ବକ୍ଷର ।
ବକ୍ଷୁ ଯାଇ ବହି ରହେ ପୃଷ୍ଠେ ତରତର ।
ପଛକୁ ବଢ଼ାଉଁ ହାତ,ସୁଚତୁରା ନାରୀ
ଆଲିଙ୍ଗନେ ଘେନେ ତାକୁ, ନିଶ୍ୱାସ ତା' ଭାରି ।
ବହି ପଡ଼େ ପଚ୍ଛ-ଭୂମେ, ତାମ୍ବୁଳ-ବାସିତ
ରଂଜିତ ଅଧର କରୁ କୌଶଳେ ସ୍ଥାପିତ
କମଳର ଓଷ୍ଠ ପରେ, ଉତ୍ତେଜନାଭରେ
କମଳ ଚୁମ୍ବଇ ତାହା ଅତି ନିବିଡ଼ରେ ।

ବହୁକାଳ-ସୁପ୍ତ-ଇଚ୍ଛା ପାଉଁ ମୁକ୍ତି-ଦ୍ୱାର
କମଳ ଖୋଲଇ ବସ୍ତ୍ର ପ୍ରାପ୍ତନାୟିକାର ।
ଦେଖେ ବକ୍ଷ ମଧୁ ଶୋଭା,–ଏକାଳେ ରମଣୀ
କହେ ବ୍ୟସ୍ତେ, 'ଏ କି କର, ଏ ନୁହେଁ ରଜନୀ !

ଜଣା ନାହିଁ କିଏ କେତେବେଳେ ଆସିଯିବ,
ଆସିବି ମୁଁ ସଂଧ୍ୟାପରେ, ତମେ ନିଷ୍ଟେ ଥିବ ।''
କହି ଚଲେ ତରତରେ, ଅସ୍ପଷ୍ଟ କମଳ
ଡାକେ ପଛୁ ଦ୍ୱାରେ ଯାଇ, ''ଆସିବ ନିକର'' !

ରମଣୀ ତ ଗଲା ଚାଲି । ଛିତି ଯାଦୁକର
ହେଉଁ ଅପସୃତ; ସ୍ୱେଦ-ସିକ୍ତ କଳେବର
ଠିଆହୋଇ, ଅନୁତାପେ ଜଳଇ କମଳ,
'କି କଲି ମୁଁ' 'କି କଲି ମୁଁ' ଡାକଇ ଅନ୍ତର ।
କରୁଣା ଉଠଇ ଧ୍ୟାନେ, ମରଇ ମରମେ
ତା ସମ୍ମୁଖେ, ସୂଚୀ ବିନ୍ଧେ ମରମେ ମରମେ ।
କି ବୋଲିବେ ମାଆ ଭାଇ, ଜାଣିଲେ ଏ କଥା,
କି ଭାବିବେ ଛାତ୍ରବୃନ୍ଦ ଭକ୍ତି-ନତ-ମଥା !
ଛୁଇଁଲି ମୁଁ ନାରୀ ଅଙ୍ଗ, ପୁଣି ପର-ନାରୀ
ସାମାନ୍ୟରେ କରୁଣାଠି ହେଲି ମିଥ୍ୟାଚାରୀ ?
ଭେଟ ହେଲେ ପଚାରିଲେ ସୁଖେ ଗତ କଥା,
ମିଥ୍ୟା କହିବାଠୁ ଆଉ କାହିଁ ଅନ୍ୟ ପନ୍ଥା ?
ମନେହେଲା ତା'ର ଯେହ୍ନେ, କହିବ ଏ ନାରୀ
ସାରା ଗ୍ରାମେ ତା' ଭଣ୍ଡତା, ପ୍ରଚାରି ପ୍ରଚାରି ।
କି ଲଜ୍ଜାର କଥା, କେହ୍ନେ ଚାଲିବ ସେ ଦାଣ୍ଡେ
ଇଚ୍ଛା ହେଲା ଆତ୍ମ-ହତ୍ୟା କରିବ ସେ ଚାଣ୍ଡେ ।
କାନ୍ଦେ ଅବିରଳ, ନିଜେ ମାରଇ ଚାପୁଡ଼ା
ଚିରଇ ସେ ଉପନ୍ୟାସ କରି ପୁଡ଼ା ପୁଡ଼ା ।
ନିଜ ଦେହେ ଚାହେଁ ତପ୍ତ ବୀଭତ୍ସ ଘୃଣାରେ,
ଏଇ ଦେହ ଦେବି ପୁଣି କେହ୍ନେ କରୁଣାରେ ?
ପୁଣି ସେ ଆସିବ ନାରୀ, ଯିବି ପୁଣି ତଳେ,—
ନ ହେବ ତା, ହୋଇଛି ଯା ହେଉ ଭ୍ରମ୍ ଥରେ ।
ଉଠି ବସେ, ଯାଏ ତ୍ୱରା ଅଙ୍ଗ ବିଶୋଧନେ,
କରଇ ସାବୁନ-ସ୍ନାନ । ଅନୁତପ୍ତ ମନେ,
ସଲୋତକ ନେତ୍ରେ, ମାଗେ କ୍ଷମା କରୁଣାରେ
କାକୁତିରେ ଭିକ୍ଷା କରେ ଈଶ୍ୱର-କୃପାରେ ।
ବୋଉଙ୍କୁ ଖବର ଦେଇ ଚଳେ ସେହି ଦିନ
ପୁରୀ, କରି ପ୍ରାୟଶ୍ଚିତ୍ତ ହେବ କ୍ଳେଦ-ହୀନ ।

ଗ୍ରାମୁଁ ଫେରି କର୍ମ-ସ୍ଥାନେ, ଶୁଣଇ କମଳ
ଜନୈକ ସନ୍ନ୍ୟାସୀ ଯୋଗୁଁ ନଗର ଚଂଚଳ ।
ପାଶ୍ଚାତ୍ୟ-ଶିକ୍ଷିତ, ଅନର୍ଗଳ ଇଂରାଜୀରେ
କରନ୍ତି ବକ୍ତୃତା ଶୁଦ୍ଧ ଗୀର୍ବାଣ ବାଣୀରେ
ବୁଝାନ୍ତି ବି ବେଦାନ୍ତର, ଗୀତାର ନିର୍ଯାସ
ପ୍ରତିଦିନ ବହୁ ଲୋକ ଯାନ୍ତି ତା'ଙ୍କ ପାଶ ।
ଆସିଲେଣି ବହୁଦିନୁ ଚଳିବେ ଏଥର,
ଯୋଗାଡ଼ନ୍ତି ଭକ୍ତମାନେ ଖରଚପତର ।
ଦିନେ ସଂଧ୍ୟାକାଳେ, କେହି ନ ଥିବାର ବେଳେ
ଉପସ୍ଥିତ ସର୍ବେ ଦୂରେ, ଫୁଟ୍‌ବଲ୍ ଖେଳେ—
କମଳର ପାଶେ ଆସି କହନ୍ତି ସନ୍ନ୍ୟାସୀ,
''ତୁମରେ ଖୋଜି ହିଁ ମୁହିଁ ଏଠି ଅଛି ଆସି ।''
ବିସ୍ମିତ କମଳ କହେ ''ମୁଁ କିପରି ଜଣା !''
ସନ୍ନ୍ୟାସୀ ତା' କର ଧରି, ଦେଇ ସ୍ନେହେ ଟଣା,
କହନ୍ତି ସଧୀରେ କାନେ ''ଦୂତ କରୁଣାର,
ଏହି ନିଅ ଚିହ୍ନ ତାର''— କରିଲେ ବାହାର
ବସ୍ତ୍ରାଞ୍ଚଳୁ ଛୋଟ ପତ୍ର, ଲେଖାଅଛି ତହିଁ-
''ଚିରନ୍ତନ ମୁଁ ତୁମର, ଥାଅ ତମେ ଯହିଁ ।''
କରୁଣାର ହସ୍ତାକ୍ଷର,—ନାହିଁଛି ସନ୍ଦେହ,
ସ୍ପର୍ଶେ ପୁଲକିତ ଚିତ୍ତ, ପୁଲକିତ ଦେହ ।
କହନ୍ତି ସନ୍ନ୍ୟାସୀ ''ମୁହିଁ ମାମୁ-ଗୁରୁ ତା'ର
ଜାଣିଛ ସେ କଥା ତୁମେ, ଜେଲରୁ ବାହାର
ହେବାମାତ୍ରେ କରିଅଛି କରୁଣା-ସଂଧାନ,
ମୋ ସଂଗେ ଯେମନ୍ତେ ହେବ ସମ୍ପର୍କ-ବିଧାନ ।
ସେ ଏବେ ଲାହୋର ଦୁର୍ଗେ, ସ୍ୱାସ୍ଥ୍ୟ ଅଛି ଭଲ,
ବରାବର ଭେଟୁଛନ୍ତି ଗୁପ୍ତେ ଆମ ଦଳ ।

**କରୁଣାର ଛଦ୍ମ ଦୂତ**

ସେହି ସୂତ୍ରେ ଜାଣି ତାହାଠାରୁ ତମ କଥା
ଜାଣି ତା' ଗଭୀର ସୁକୁମାର-ହୃଦ-ବ୍ୟଥା,
ପତ୍ର ତା'ର ଧରି କରୁଅଛି ଅନ୍ୱେଷଣ,
ଦେଲି ପତ୍ର—ଶେଷ ମୋର ସମସ୍ତ କଷଣ ।
ଗୋପନ ରଖିବ ସବୁ । ଯାଏଁ ମୁଁ ଏଥର,
ଯେ କାମ କରୁଛ ତହୁଁ ନାହିଁ ଉଚ୍ଚତର,

କରୁଣା ସନ୍ତୁଷ୍ଟ ହେବ ଶୁଣି ଯା, ନିଶ୍ଚିତ—''
କମଳ ଭକ୍ତିରେ ହୁଏ ପାଦେ ପ୍ରଣମିତ ।

ରମା ଲେଖେ ଗ୍ରାମୁଁ ଯାର କିଛି କାଳ ପରେ,
''ଭାଇନା, ବୋଉର ହସ୍ତପଦ ନାହିଁ ଚଳେ ।
ବରାବର ଶଯ୍ୟାଶାୟୀ, ବଇଦ ଗ୍ରାମର
ଚିକିତ୍ସା କରୁଛି, ମାତ୍ର ନାହିଁ ଛାଡ଼େ ଜର ।
ତମକୁ ଚାହିଁଛି ଖାଲି ଦେଖିବାକୁ ଥରେ,
ଆସିଲେ ଆଣିବ କିଛି ଫଳ ସଂଗତରେ ।''
ପତ୍ର ପାଇ ସେହି ଦିନ ବାହାରେ କମଳ
ସଙ୍ଗେ ଚଳେ ଅରବିନ୍ଦ, ରମା ଭାବୀ-ବର ।
ଯାଇ ଦେଖେ ଜନନୀଙ୍କ ଶେଷ ଦିନାଗତ
ତା' ହେଲେହେଁ ଚିକିତ୍ସାର ଭଲ ବନ୍ଦୋବସ୍ତ
କରିବାକୁ ହେବ ନିଶ୍ଚେ । ଅରବିନ୍ଦ ଜାଣେ
ଉତ୍ତମେ ହୋମିଓପାଥି, ଦେଉଁ ପାନେ ପାନେ
ବୁଢ଼ୀର ଉନ୍ନତି ହୁଏ । ବଞ୍ଚିଯାଇପାରେ
ଏ ଘାଟି, ଏ ଆଶା ତାଙ୍କ ହେଉଛି ବିଚାରେ ।

ଦଳେ ଲୋକ ଗଲେ ବେଢ଼ି ଦାଣ୍ଡେ ଦିନେ ଯାଉଁ
କମଳେ । ଜିଜ୍ଞାସା କରୁଛନ୍ତି ''କିଏ ଆଉ
ଅଛି ଘରେ, ଉଠାଇବ ଖ୍ରୀଷ୍ଟାନ୍ ବାସନ ?
ବିଧବା ଭଉଣୀ ଦିଏ ତାକୁ ଦରଶନ !
ବ୍ରାହ୍ମଣ ଶାସନ ଇଏ ! ଆମ ଆଖି ତଳେ
କରିଯିବ ଅନାଚାର, ଆମ ରକତରେ
ସହ୍ୟ ହେବ ତାହା ? ଧର୍ମ ଗଲା କି ହୋ ବଣେ ?
ବିଧାତା ବଞ୍ଚାଇ କିପାଁ ରଖିଛି ବ୍ରାହ୍ମଣେ ?
ପୁଣି ଶୁଣୁଅଛୁ ଆଉ ବଡ଼ ପାପକଥା
ଖ୍ରୀଷ୍ଟାନ ସେ ପୁଣି ହେବ ରମାର ଭରତା !
ବିଧବା-ବିବାହ, ତାହା ପୁଣି ଖୀରସ୍ଥାନେ
ତା ପୁଣି ଦେଖିବୁ ଆମେ ନିଜ ଏଇ ଗ୍ରାମେ !
ଭଉଣୀକି ଯାହା ତମେ ପଢ଼ାଇଛ ପାଠ,
ତା ଫଳେ ବୁଲୁଛି ଅଲୁଚାରେ ବାଟଘାଟ,
ତାକୁ ଯଦି ସମ୍ଭାଳିବା ଦେଖୁଛ ଦୁଷ୍କର
ଦିଅ ଛାଡ଼ି ବଡ଼ଦାଣ୍ଡେ, ପାଉ ସେ ତା' ଫଳ !''

ଅରବିନ୍ଦ ଓ ରମା । ଉତ୍ତେଜିତ ଗ୍ରାମବାସୀ

ସବୁ ଶୁଣିଆସୁଥିଲା ନିଶ୍ଚିନ୍ତେ କମଳ
କିନ୍ତୁ ଏ ବୀଭତ୍ସ ଆଜ୍ଞେ ଭଗ୍ନୀ-ଚରିତ୍ରର,
ଅସଂଯତ ହେଲା କ୍ରୋଧେ–''ଅସଭ୍ୟ କୁକୁରେ''
କହି ଗର୍ଜେ ''କେଉଁ କଥା କହ କାହାକୁ ରେ,
ଜାଣି କି ରେ ନାହିଁ ପାର ? ଭଗିନୀକି ମୋର
ଛାଡ଼ିବି ମୁଁ ବଡ଼ଦାଣ୍ଡେ ? ନାହିଁ କରି ଗୋଳ
ଯାଅ ଏଠୁ । ଯାହା ଠିକ୍ ତାହା ମୁଁ କରିବି,
ତମପରି କୁକୁରଙ୍କୁ ନାହିଁ ମୁଁ ଡରିବି ।''

ସୁପ୍ତ ଅରବିନ୍ଦ ଅଙ୍ଗେ ଜ୍ୱଳନ୍ତ ଅଙ୍ଗାର
ପଡୁ ଚାଲୁଁ, ଉଠିପଡ଼ି କରେ ସେ ଚିତ୍କାର
ସେ ଦିନ ନିଶୀଥେ– ''ନିଆଁ ଲାଗିଅଛି ଘରେ
ଉଠ ଉଠ, ହେ କମଳ । ବୁଢ଼ୀଙ୍କୁ ସତ୍ୱରେ
କାଢ଼ି ଆଣ ।''

ସଂପ୍ରସାରି ଜିହ୍ୱା ଲେଲିହାନ

କମଳ ଗୃହରେ ଅଗ୍ନି-ସଂଯୋଗ

ବହ୍ନି ଗ୍ରାସିଲାଣି ଅଧେ, କ୍ଷିପ୍ର ଧାବମାନ
ହୋଇ ଇତସ୍ତତଃ କାଢ଼ିଆଣିଲେ ବୁଢ଼ୀକୁ
କେଉଁମତେ । ଉଚ୍ଚସ୍ୱରେ ଡାକି ପଡ଼ୋଶୀଙ୍କୁ
ଉତ୍ତର ନପାନ୍ତି କିଛି, ଉଠିଲେ ଯେ ଶେଷେ
ବିଜ୍ଞତା ଦେଖାଇ ଲାଗିଗଲେ ସେ ବିଶେଷେ
ଅଗ୍ନି ଯେହ୍ନେ ଦୂର ପଟେ ନାହିଁ ପ୍ରସରଇ,
ରୁଗ୍ଣା ବୁଢ଼ୀ କାରୁଣ୍ୟରେ ତଳେ ବିଳପଇ ।
ନିଶା ପାହୁ ଗଲା ଦେଖା ଦୀନ କମଳର
ନାହିଁ ବିଶ୍ୱେ ମୁଣ୍ଡ ଗୁଞ୍ଜିବାକୁ ଆଉ ଘର ।
ସହସା ଏ ବିପତ୍‌ପାତେ କମଳ ଜନନୀ
'ମତେ ନାହିଁ ଗ୍ରାସି କିପାଁ ଚଣ୍ଡାଳ ଏ ବହ୍ନି
ମୋ ପିଲାର ସଂସାରକୁ କଲା ଛାରଖାର'
କହି ତେଜୁଥାନ୍ତି ବାରମ୍ବାର ଅଶ୍ରୁଧାର ।

ଜନନୀର ମୃତ୍ୟୁ, କମଳର ଗ୍ରାମତ୍ୟାଗ

ନୀରବିତ ହୁଏ ସ୍ୱର ଅପରାହ୍ଣ ଆଡ଼େ,
ଦେହ ତ୍ୟାଗକଲେ ବୁଢ଼ୀ ତହିଁ ପାହାନ୍ତାଲେ

ସୁଖୀ ହେଉଥିଲା ଚାଲି ଯେ ଗ୍ରାମ-ମାଟିରେ
ଯା'ର ଦୁଃଖ ସୁଖ ବିଜଡ଼ିତ ତା ସ୍ମୃତିରେ,

ଯା'ର ଶୁଭ ପାଇଁ କରୁଥିଲା ସେ ସାଧନା
ତହୁଁ ପାଇ ଜୀବନର ନିଷ୍ଠୁର ଗଞ୍ଜଣା,
କମଳ ଛାଡ଼ିଲା ସେହି ଗ୍ରାମ, ଅଶ୍ରୁ ନୀରେ
ଘେନି ମାତା-ଅସ୍ଥି, ଗ୍ରାମ-ଧୂଳି ତା' ସାଥିରେ ।

## [ ସପ୍ତମ ସର୍ଗ : ସତ୍ୟାଗ୍ରହ ଓ ପୁନର୍ମିଳନ ]

ବିସ୍ତୀର୍ଣ୍ଣ ସୈନ୍ଧବ ବେଳା; ବାଲିବନ୍ତେ ବସି
କମଳ ଦେଖଇ କେହ୍ନେ ଦିଗ୍‌ବଳୟ ସ୍ପର୍ଶି
ପ୍ରସାରିତ ଦିଶେ ଦିଶେ ମହା ପାରାବାର;
ଲୋଟୁଛନ୍ତି ପରେ ପରେ କ୍ଷୁବ୍ଧ ଊର୍ମିଜାଳ;
ଦୂରେ ଦୂରେ ଦିଗନ୍ତରେ ବାଷ୍ପୀୟ ବହିତ୍ର
ଯାଏ କାହିଁ ଆକାଶରେ ଲେଖି ଧୂମ-ଚିତ୍ର ।
ବନ୍ଧୁ ବନ୍ତେ କଣ୍ଟକିତ ଗୁଡ଼ିକଂକ ଫୁଲ
ଉଡ଼ିଯାଲେ ଆପେ ଆପେ । ବାଲିମୃଗକୁଳ
ବୁଲୁଛନ୍ତି ଏଣେତେଣେ, କରି ଉଲ୍ଲମ୍ଫନ,
ଗତିବନ୍ତ ଚିତ୍ର ଯେହ୍ନେ ତାଙ୍କ ଅପଘନ ।
ଉଡୁଛନ୍ତି ସାମୁଦ୍ରିକ ପକ୍ଷୀ ଦଳେ ଦଳେ
ରଚି ଶ୍ୱେତ-କଇଁମାଳା ନୀଳାମ୍ବର ଗଳେ ।
ବିଜନ ସମଗ୍ର ବେଳା, ଅପରାହ୍‌ଣ କାଳ,
ଦୂରେ ଦୂରେ ଗ୍ରାମ-ଚିହ୍ନ ନାରିକେଳ, ତାଳ,
ଦିଏ ଦେଖା ଦନ୍ତୁରିତ ଶ୍ୟାମ ରେଖା ପରି,
ବରୁଣ ଗର୍ଜନେ ସାରା ବେଳା ଯାଏ ଥରି ।
କମଳ ଦେଖଇ ସବୁ, ଭାବଇ ଅନ୍ତରେ
ଯେ ଦୀକ୍ଷା ନେଇଛି ସେହୁ ନବୀନ ମନ୍ତ୍ରରେ,
ଯେ ମନ୍ତ୍ର କରିଛି ମୁଗ୍ଧ ଅୟୁତ ଅୟୁତ,
ଯେ ଅୟୁତେ ଲେଖୁଛନ୍ତି କାହାଣୀ ଅଦ୍ଭୁତ ।
ଭାବୁଛି ସେ କେହ୍ନେ ଦୂର ପଶ୍ଚିମ-ଭାରତେ
ପଶ୍ଚିମ-ବାରିଧି ତଟେ, ଦ୍ୱାରକା ନିକଟେ
ଜଣେ ରୁଗ୍‌ଣ, କ୍ଷୁଦ୍ରକାୟ ମନୁଷ୍ୟ, ଦୁର୍ବଳ,
କହେ କଥା ଶାନ୍ତ, ଶୁଦ୍ଧ, ସତ୍ୟ, ଅଳ୍ପାକ୍ଷର,

ଇଞ୍ଚୁଡ଼ିରେ ଲବଣ ସତ୍ୟାଗ୍ରହ । ସତ୍ୟାଗ୍ରହୀ କମଳ

କୋଟି କୋଟି ନାରୀ ନର ମୁଗ୍ଧ ସେ ବଚନେ,
ସୁଖ ତେଜି ବରୁଛନ୍ତି ଦୁଃଖ, ନିର୍ଯାତନେ ।
ଯୁଗ-ଯୁଗ-ଅବରୁଦ୍ଧ ଥିଲେ ପୁରନାରୀ,
ଅସଂକୋଚେ ସେହି ଡାକେ ଆସନ୍ତି ବାହାରି,
ବକ୍ଷ-ପୋଷ୍ୟ ଶିଶୁ ଘେନି ଚଳନ୍ତି ସଂଗ୍ରାମେ,
ଗୀତ ଗାଇ ଛାଡୁଛନ୍ତି ପ୍ରିୟ ଗୃହେ, ଗ୍ରାମେ;
ଯିବେ ଇଂରେଜଙ୍କର ନିରାନନ୍ଦ କାରାଗାରେ,—
ସ୍ୱାମୀ, ପୁତ୍ର, ଜ୍ଞାତି ଜେଲେ ଯା'ନ୍ତି ଅନ୍ୟ ଆଡ଼େ ।

କିଶୋରଙ୍କ କୋମଳାଙ୍ଗେ ରାଜ-କଟୁଆଳ
କଲେ କ୍ରୂରେ ବେତ୍ର ଅବା ଲାଠିର ପ୍ରହାର,
ନିରଶ୍ରୁ ନୟନେ ଭାଷି 'ଗାନ୍ଧିଜୀଙ୍କ ଜୟ'
ଦେଖାଇଦିଅନ୍ତି ଅଙ୍ଗ ପ୍ରଫୁଲ୍ଲ, ନିର୍ଭୟ ।
ଆସୁଛନ୍ତି ରାଜପୁତ୍ରେ ତେଜି ଅଟ୍ଟାଳିକା,
ଆସନ୍ତି ସାଧବେ ତେଜି ପଣ୍ୟ କିଣାବିକା ।

ଆସନ୍ତି କୃଷକେ ଛାଡ଼ି ପ୍ରିୟ ଶସ୍ୟକ୍ଷେତ୍ର,
ଯିବେ ଜେଲେ ଅବା ନେବେ ଅଙ୍ଗେ କ୍ରୂର ବେତ୍ର ।
ପିଣ୍ଡୀଭୂତ କ୍ଳେଦ ପୋଛି ବହୁ ଶତାବ୍ଦୀର
ବିଶୋଧିତ କରି ସ୍ପର୍ଶେ ଚଣ୍ଡାଳ-ଶରୀର,
ତା ବଚନେ, ବିପ୍ରେ ତୋଳି କୋଟି ପତିତରେ
ଦେଉଛନ୍ତି ନର-ପ୍ରାପ୍ୟ ବହୁ ଯୁଗ ପରେ ।
ହିନ୍ଦୁ, ଜୈନ, ମୁସଲିମ, ବ୍ରାହ୍ମ, ଖ୍ରୀଷ୍ଟିୟାନ
ନାରୀ ନର, ଦୀନ, ଧନୀ, କ୍ଷୁଦ୍ର ଓ ମହାନ,
ସର୍ବେ ଆଜି ମରପ୍ରାୟ, ଫିଙ୍ଗିବେ ଶୃଙ୍ଖଳ,
ହେବେ ମୁକ୍ତ, ଭୟହୀନ, ବୀର ଊର୍ଜ୍ଜସ୍ୱଳ ।

ନୂତନ ଆଧ୍ୟାତ୍ମିକ ଯୁଦ୍ଧ

ଥିଲା ଯେହ୍ନେ ଏକ ଜାତି-ମାନସ ଊଷର,
କାଉଁରି ଛୁଆଁଇ କେଉଁ ମହା ଯାଦୁକର,
ସହସା ଊଷରେ କଲା ରମ୍ୟ ଉପବନ
ଚଉଦିଗେ କରି ବର୍ଣ୍ଣ ଗନ୍ଧ ବିତରଣ ।
ଗାନ୍ଧି ସେହି ଯାଦୁକର, କ୍ଷୀଣାଙ୍ଗ, ଦୁର୍ବଳ
ଧରଣୀରେ ଅବତାର ସେବା ଓ ସତ୍ୟର ।

ମାନବର ସେବା ପାଇଁ ସତ୍ୟ-ଖୁରଧାରେ
ଚଳାଇ ନିଜକୁ ଲୋକ-ନେତ୍ର ଅନ୍ତରାଳେ,
ଆଜି ହିଂସା-ମିଥ୍ୟା-ମୟ ଧରା-ଦ୍ୱାରଦେଶେ
ହୋଇ ଉଭା ଦୀନ, ନମ୍ର କୃଷକର ବେଶେ
ଉଦ୍‌ଭ୍ରାନ୍ତ ମାନବେ ସତ୍ୟ, ପ୍ରେମ ବାର୍ତ୍ତା କହେ,
ସେ ଲାଗି ତାଚ୍ଛଲ୍ୟ, ଦୁଃଖ, ନିର୍ଯାତନା ସହେ ।
ତାହାରି ନିର୍ଦ୍ଦେଶେ ଏହି ନିରସ୍ତ୍ର ସମର
ଭାରତ ଚଳାଏ ବିରୁଦ୍ଧରେ ଇଂରେଜର,
କମଳ ତହିଁରେ ଏକ ସୈନିକ ସାମାନ୍ୟ,
କାଲି-ଦଳେ କରିବ ସେ ଆଇନ ଅମାନ୍ୟ
ଲୁଣ ମାରି ସିନ୍ଧୁଜଳେ । ପାଇ ଅବସର
ଆସି ବନ୍ତେ ବସି ହୁଏ ଭାବନା-ତତ୍ପର ।

ଅଦୂରେ ଇଁଚୁଡ଼ି ଗ୍ରାମ, ଉପକଣ୍ଠେ ତାର
କଂଗ୍ରେସ ଶିବିର ଠିଆ,—ଦୀନ କୁଟୀମାଳ ।
ପୂତ ଶଂଖ ନିନାଦରେ, ପୁରବାଳାଗଣ
କପାଳରେ ଦେଇ ସ୍ନେହେ ସିନ୍ଦୂର ଚନ୍ଦନ.
ପଠାନ୍ତି ନଗରୁଁ, ଗ୍ରାମୁଁ ସତ୍ୟାଗ୍ରହୀଦଳ,
ନିର୍ଜନ ବାଲୁକା ତେଣୁ ଉତ୍ସାହ ଚଞ୍ଚଳ ।
ଅନ୍ୟାୟ ଆଇନ ନହିଁ ମାନି ଇଂରେଜର
ମାରି ଲୁଣ, ପ୍ରତିଷ୍ଠିବେ ଜନତା ଦେଶର,
ନିଜ ସ୍ୱତ୍ୱ ନିଜ ଭୂମେ, କି କରିବ କରୁ
ସମ୍ମୁଖିବେ ଯେତେ ଅତ୍ୟାଚାର ରାଜା-କରୁ ।
ଦଳିତର ଦୁଃଖ-ଯଜ୍ଞେ ଅନ୍ୟାୟ, ଅନ୍ୟାୟୀ
ଦୁହେଁ ନେବେ ରୂପାନ୍ତର, ହୋଇ ଏ ଆଶାୟୀ
ନିରସ୍ତ୍ର ଅହିଂସସେନା ନବରଣୋଦ୍ୟତ,
ଦେଖିବାକୁ ପରିଣତି, ଉଦ୍‌ଗ୍ରୀବ ଜଗତ ।
ଦେଶେ ଦେଶେ ଯେତେ ସବୁ ପତିତ ଦଳିତ,
ଆଧ୍ୟାତ୍ମ୍ୟ ଏ ଯୁଦ୍ଧ ତାଙ୍କ ନେତ୍ର ଉନ୍ମୀଳିତ
କରୁଛି; ଯେତେକ ଅସହାୟ ନିଃସମ୍ବଳ
ଲଢ଼ିବାକୁ ନ୍ୟାୟ ପାଇଁ ତାଙ୍କ ହୃଦେ ବଳ
ଦିଏ ଏ ନୂତନ ରଣ । ପାଖକେ ଇଂରେଜ,—

ବିରାଟ ସାମ୍ରାଜ୍ୟ ତା'ର ଅମିତ ତା' ତେଜ ?
କେଉଁ ମାରଣାସ୍ତ୍ର ନାହିଁ ତା'ର ଅସ୍ତ୍ରାଗାରେ ?
ସଜ୍ଜିତ ବାହିନୀ ତା'ର ଦୁର୍ଦ୍ଧର୍ଷ ଧରାରେ ।
ଆର ପାଖେ କ୍ଷୀଣ ନଗ୍ନ ଗାଂଧି, ପଛେ ଠିଆ
ଶସ୍ତ୍ରହୀନ, ନଗ୍ନ-ପଦ , ଅନାବୃତ ହିଆ
ଭାରତର ଦୈନ୍ୟ-କ୍ଲିଷ୍ଟ ଲକ୍ଷ ନରନାରୀ,.
ମରିବାକୁ ପ୍ରସ୍ତୁତ ଯେ, ନାହିଁ କା'ରେ ମାରି ।
ଅଦ୍ଭୁତ ଏ ରଣୋଦ୍ୟମ !—ହିଂସା-ଜର୍ଜରିତ,
ବିଜ୍ଞାନ-ପ୍ରମତ୍ତ, ପ୍ରବଞ୍ଚନା-କଣ୍ଟକିତ
ବିଶ୍ୱ-ଜାତିସଂଘ ଆଗେ ଏ ନବ ସମର
ଖୋଲେ ପୃଷ୍ଠା ସଭ୍ୟତାର ନବ ଅଧ୍ୟାୟର ।

ଭାବୁଁ ଭାବୁଁ ହୁଏ କ୍ରମେ ସଂଧ୍ୟା ସମାଗତ,
କମଳ ଶିବିରେ ଫେରେ । କରିଛି ସମସ୍ତ
ସମାପ୍ତ କର୍ତ୍ତବ୍ୟ ତା'ର । ଅରବିନ୍ଦ, ରମା
ବିବାହିତ ହୋଇ ଚାଲିଯାଇଛନ୍ତି ବର୍ମା
ଜୀବିକାର ସୁବ୍ୟବସ୍ଥା ପାଇ ସେହିଠାରେ ।
ସାନ ଭାଇ ପଢ଼ିଲାନି, ଗଲା ହରିଦ୍ୱାରେ
ସାଧନ-ଭଜନ ପାଇଁ । ମୁକ୍ତ ଦାୟିତ୍ୱରୁ,
କମଳ ସମ୍ପ୍ରତି,—
ଯେହ୍ନେ ବେଢ଼ାହୀନ ତରୁ;
କ୍ଷମ, ସହିବାକୁ ଅଙ୍ଗେ ଦାଉ ପ୍ରକୃତିର,
ଇଚ୍ଛୁକ,ଶୁଝିବ ଋଣ ଧାତ୍ରୀ ପୃଥିବୀର ।
ନିକଟ କର୍ତ୍ତବ୍ୟ ସାରି, ଦୂର କର୍ତ୍ତବ୍ୟରେ
ଆଖି ଦେଉଁ, ଦେଖାଗଲା ଭାରତବର୍ଷରେ
ଗାଂଧି-ପ୍ରଣୋଦିତ ନବ ରଣ-ଉନ୍ମାଦନା,
ରାଷ୍ଟ୍ର କର୍ମେ ଆଧାତ୍ମିକ ତପସ୍ୟା-ସାଧନା;
ମହାନ୍ ଆଦର୍ଶ ଲାଗି କଷଣ-ବରଣ,
ପରାର୍ଥେ ହବନ-ଭୂମି କରିବା ଜୀବନ ।
ବିନା ବିଚାରରେ ଫିଙ୍ଗି ପଦ, ଅନୁଷ୍ଠାନ
ନ ଶୁଣି ପିଲାଙ୍କ ଅଶ୍ରୁ, କମିଟି ଜଣାଣ,
ଫିଙ୍ଗି ଅର୍ଥ-ସ୍ୱଚ୍ଛଳତା, ସୌଖ୍ୟର ଜୀବନେ
କମଳ ଦେଇଛି ଯୋଗ ନବ ଆନ୍ଦୋଳନେ ।

ଫେରୁ ଫେରୁ କ୍ୟାମ୍ପେ କିନ୍ତୁ ତଳେ ଚାହିଁ ଚାହିଁ
କମଳର ଆତ୍ମା କହେ, ' ସେ ଯେ ନାହିଁ ! ନାହିଁ !'
କରୁଣାର ଖଲାସିର ଦିନାଗତ ପ୍ରାୟ,
ହେଲେ ବି, ମିଳନ କାହୁଁ ସମ୍ଭବିବ, ହାୟ !'
ମାମୁ-ଗୁରୁ ଦେଇଥିଲେ ଯେତିକି ଖବର
ତା'ପରେ ଶୁଣିନି କିଛି । ପୁଣି ପର ପର
ଗଲାଣି ପାଞ୍ଚଟି ବର୍ଷ । ଦୀର୍ଘ ଏହି କାଳେ
ଦେହେ, ମନେ କିବା ରୂପାନ୍ତର ନୋହିପାରେ ?
ଥିଲେ ମଧ ସେହି ସ୍ନେହ; ଖୋଜୁଁ ମତେ ଆସି,
ଥିବି ମୁହିଁ କାହିଁ ଦୂରେ କାରାଗାରବାସୀ ।
ମିଳନର ଯୋଗ ନାହିଁ ହତଭାଗ୍ୟ ପ୍ରାଣେ,
କେବେ କାହିଁ ସମ୍ଭବ ତା' ନାହିଁ ମୁହିଁ ଜାଣେ ।'

X X X

ଚାଲିଲାଣି ଏକମାସ ନିରସ୍ତ୍ର ସଂଗ୍ରାମ
ଜନାକୀର୍ଣ୍ଣ ଅହୋରାତ୍ର ବେଳାଭୂମି-ଗ୍ରାମ
ସେ ଇଁଚୁଡ଼ି । ଦଳ ଦଳ ଆସନ୍ତି ପୋଲିସ
ଆତଯାତ ବହୁ ସଂଖ୍ୟେ ଦେଖାଳି ମଣିଷ ।
ଉତ୍କଳର ଚଉଦିଗୁ ସତ୍ୟାଗ୍ରହୀଦଳ
ଆସନ୍ତି ପ୍ରତ୍ୟହ, କ୍ରୂର କଟୁଆଳଙ୍କର
ଭୋଗିବାକୁ ଆନନ୍ଦରେ ସର୍ବ ଅତ୍ୟାଚାର,
କରି 'ଗାଂଧିଜୀ କି ଜୟ' ବଦନେ ଉଚ୍ଚାର ।
'ଗାଂଧିଜୀ କୀ ଜୟ' କହି ପୁରବାଳାଗଣ
ଏକତ୍ରେ ସମୁଦ୍ର ବାରି କରନ୍ତି ରନ୍ଧନ,
ବାଳକେ ଲବଣ ତୋଳି 'ଗାନ୍ଧିଜୀ କୀ ଜୟ'
କହି କରୁଛନ୍ତି ଭୂମି ଉନ୍ମାଦନାମୟ ।
'ଗାନ୍ଧିଜୀ କୀ ଜୟ' କହି ବୃଦ୍ଧ ବୃଦ୍ଧାଗଣ
ଚାଲୁଛନ୍ତି ବୀରଦର୍ପେ ଅନ୍ୟାୟ-ଲବଣ
ବିକିବେ ନଗରେ ଯାଇ । ରୋଧେ କଟୁଆଳ,
ଲବଣ ଫିଙ୍ଗଇ କ୍ରୋଧେ, କରଇ ଗ୍ରେପ୍ତାର ।
ପେଷି ରାଜା ଦଳ ଦଳ ଆଦ୍ୟେ କାରାଗାରେ,
ପରେ ଫିର କଲା ଖାଲି ଲଗୁଡ଼ ପ୍ରହାରେ

ନିଷ୍ପତ୍ତି କରିବ ଯୁଦ୍ଧ । ବୁଜି ଦେଇ ଆଖି
ମାରନ୍ତି ଲଗୁଡ଼େ ସତ୍ୟାଗ୍ରହୀ ନିରିମାଖି ।
ଗଡ଼ିଯାନ୍ତି ବାଲିପରେ, ଲାଲ, ରକ୍ତ ବହେ
'ଗାଂଧିଜୀ କୀ ଜୟ' କିନ୍ତୁ ସତ୍ୟାଗ୍ରହୀ କହେ ।
ସ୍ୱର୍ଗୀୟ ଏ ଦୃଶ୍ୟେ ଉନ୍ମାଦିତ ଗୋଡ଼ି ବାଲି
ଦେଖନ୍ତି ଦେଖଣାହାରି ନେତ୍ରୁ ଅଶ୍ରୁ ଢାଳି ।

ଅଦୂରେ ରହିଛି ଠିଆ ଚିକିତ୍ସା କୁଟୀର
କଂଗ୍ରେସ ଚିକିତ୍ସା କରେ ନିଜ ଜଖମୀର ।
ଖଞ୍ଜ, ଆଘାତିତ ନିଜେ ବହୁ ସତ୍ୟାଗ୍ରହୀ
ଅନ୍ୟ ଜଖମୀରେ ଆଣୁଅଛନ୍ତି ସେ ବହି ।
ଅଧିକାଂଶ ସଙ୍ଗେ ସଙ୍ଗେ ହୁଅନ୍ତି ବିଦାୟ;
ଆସ୍ତେ ହୋନ୍ତି ଚିକିତ୍ସିତ, ବିକଳିତ-କାୟ ।

କରାଅଛି ବନ୍ଦୋବସ୍ତ ସେବିକା, ସେବକ,
ତାଙ୍କ -ଯତ୍ନ-ସେବା,ଶ୍ରେଷ୍ଠ ଔଷଧ ରୋଚକ ।
ନବତମ ରୋଗୀ ଏବେ ଚିକିତ୍ସା ମନ୍ଦିରେ
କମଳଲୋଚନ, ପଟି ବନ୍ଧା ତା'ର ଶିରେ;
ପଟି ବନ୍ଧା ହସ୍ତେ, ବକ୍ଷେ, ଶାନ୍ତ ଅଚେତନ
ଦୁଇ ଦିନ ପଡ଼ି ଖାଲି କରଇ ଗର୍ଜନ ।

ନେତାଏ ଗଲେଣି ଜେଲେ, କିନ୍ତୁ ପରେ ପରେ
ଡିକ୍‌ଟେଟର ବଛା ହୋଇ ଚଳନ୍ତି ସମରେ ।
ଷଷ୍ଠ ଡିକ୍‌ଟେଟର୍‌ରୂପେ ହୋଇ ନିର୍ବାଚିତ
କମଳ ଚଳାଏ ଯୁଦ୍ଧକ୍ରିୟା ବୀରୋଚିତ ।
ସପ୍ତାହେକ ପରେ ବାଛି ଅନ୍ୟ ଡିକ୍‌ଟେଟର
ସ୍ୱୟଂ ସେ ଆଗେଇ ଚାଲେ ସତ୍ୟାଗ୍ରହୀଦଳ ।

ପୋଲିସର ମାଡ଼ରେ ଜଖମୀ କମଳ

ଭାରତୀୟ କଟୁଆଳେ ଏ ଅନାକାଙ୍‌କ୍ଷିତ
କର୍ମ କରି ହୋଇଲେଣି ଅନ୍ତରେ ବ୍ୟଥିତ,
ଜନତା ନ କରୁଁ ତାଙ୍କ ସଙ୍ଗେ ସହଯୋଗ
ଖାଦ୍ୟ ବାସେ ବଢ଼ିଲାଣି ତାଙ୍କର ଦୁର୍ଯୋଗ,
ଊର୍ଦ୍ଧ୍ୱୁ ତେଣେ ଚାପ ଦିଏ ବିଦେଶୀ ସର୍କାର
ଆନ୍ଦୋଳନ ବଢ଼େ, କଟୁଆଳେ କି ବେକାର ?

ତେଣୁ କର୍ତ୍ତାଙ୍କର ଏବେ ଗୁପତ ନିର୍ଦ୍ଦେଶ
ଜୋର୍ କରି ଲାଠିମାଡ଼, ଭୟ-ନିର୍ବିଶେଷ ।
ପିଟ ସମସ୍ତଂକୁ, ସତ୍ୟାଗ୍ରହୀ ବା ଦେଖାଳି
ତୁରନ୍ତ ଭାଗିବେ ସର୍ବେ ଯେହ୍ନେ ସ୍ଥାନ ଛାଡ଼ି ।

କମଳର ଦଳ ହେଲେ ପ୍ରଥମ କବଳ
ଏହି ଗୁପ୍ତ ନିର୍ଦ୍ଦେଶର । ଧରି ତା'ର ଦଳ
କମଳ ଚଳଇ 'ବନ୍ଦେ ମାତରମ୍' ଗାଇ
ଦୂର ଦୂର ଗ୍ରାମ ଜନେ ରହିଛନ୍ତି ଚାହିଁ;
ଅର୍ଦ୍ଧ-ପଥେ କରେ ତାଙ୍କୁ ପୋଲିସ ଚଢ଼ାଉ
ନ ଦେଇ ସୁଯୋଗ ଲୁଣ-ମରା ପାଇଁ ଆଉ ।
ଚେଷ୍ଟାକରୁ ସତ୍ୟାଗ୍ରହୀ ଆଗେ ଯିବା ଲାଗି
ପଡ଼େ ତାଙ୍କ ମୁଣ୍ଡେ କଟୁଆଳ ଲାଠି ଭାଙ୍ଗି ।
ମୁଣ୍ଡେ, କାନ୍ଧେ, ବକ୍ଷେ ପାଇ ଲଗୁଡ଼ ପ୍ରହାର
ଟଳିପଡ଼େ କମଳର ଦେହ ସୁକୁମାର,
'ଗାଂଧିଜୀ କୀ ଜୟ' କହି ବିକଳ ବଚନେ
ପଡ଼ିରହେ ବେଳାବାଲି ପରେ ଅଚେତନେ ।
ଟେକିନେଲେ ସତ୍ୟାଗ୍ରହୀ ଚିକିତ୍ସା ମନ୍ଦିରେ,
ଚିକିତ୍ସା କରନ୍ତି ତାକୁ ସେବକେ ସଧୀରେ ।

କ୍ରମେ ଟିକେ ସୁସ୍ଥ ହେଉଁ ସପ୍ତାହକ ପରେ
କମଳ ଦେଖଇ ଏକ ଚିଠି, ଶଯ୍ୟା ତଳେ;
ଦେହମୟ ତା'ର ବହୁ ସ୍ଥାନର ମୋହର
ଠିକଣା ସୂଚଇ କରୁଣାର ହସ୍ତାକ୍ଷର
ଖୋଲେ ପତ୍ର, ଲେଖିଅଛି କରୁଣା ସତ୍ୟରେ—:
'ଫେରିଛି ମୁଁ ପ୍ରିୟ ପୁଣି ମୁକ୍ତ-ଜଗତରେ ।
କାହିଁ ଅଛ ନାହିଁ ଜାଣେ, ଲେଖେ ଅନୁମାନେ,
ଅଳ୍ପ ଦିନେ ଭେଟିବି ମୁଁ ଥିବି ଯଦି ଧ୍ୟାନେ,
ତଳ ଠିକଣାରେ ଦିଅ ତୁରନ୍ତ ଉତ୍ତର
ଉଦ୍‌ଗ୍ରୀବ ମୁଁ ଜାଣିବାକୁ ତୁମ୍ଭର ଖବର ।'
ଠିକଣାରୁ ବୁଝେ ଇତିମଧ୍ୟେ ପକ୍ଷେ ଗତ
ଅନୁମାନେ, କରୁଣା କି ହେଉଥିବ ବ୍ୟସ୍ତ
ନ ପାଇ ଉତ୍ତର ତା'ଠୁ । ସେବକେ ହକାରି

କାଗଜ, ଲଫାପା ପାଇଁ କହେ ସେ ଚିତ୍କାରି ।
ଲଫାପା ଆସିବ କାହୁଁ ? ଦୂର ଡାକଘର,
ଆଣିବାକୁ ଦିନକରୁ ନ ହେବ ସଅଳ ।
କମଳ ଅସ୍ଥିର ହୁଏ, ଏକାଳେ କେ କହେ
'ଦୂରାଗତ ମହିଳା କେ ଦ୍ୱାରପାଶେ ରହେ,
ଚାହାନ୍ତି ସେ ଆପଣଙ୍କ ତୁରନ୍ତ ଦର୍ଶନ',
ହୁଏ କମଳର ଦକ୍ଷ-ନୟନେ କଂପନ ।

କରୁଣାର ଆବିର୍ଭାବ

ଆଡ଼ ହୋଇଯାନ୍ତି ଆନେ, ପଶନ୍ତି ସେ ନାରୀ
କମଳ ତା' ଶୟନରୁ ଉଠଇ ଚିତ୍କାରି,
''କରୁଣା, କରୁଣା ! ତମେ ଏଠାରେ କିପରି ?''
ସହାସ୍ୟବଦନା ଶାନ୍ତ-ଚେତା ଦେବୀ ପରି,
କରୁଣା , ସଧୀରେ ବସି ଶଯ୍ୟାରେ ତାହାର
କହେ, 'ଶୁଅ ସ୍ଥିର ହୋଇ, କହିବାର କାଳ
ଅଛି ପରେ ।'' ଡାକେ ଧୀରେ ତତ୍ରତ୍ୟ ସେବକେ;
ବୁଝିନିଏ ସବୁ କଥା ତା'ଠୁ ନିମିଷକେ ।
ତା' ପରେ ସେ କହେ ''ସବୁ ରୋଗୀଙ୍କ ଜଞ୍ଜାଳ
ନେଲି ମୁଁ, ନିଅ ହେ ଅନ୍ୟ କରମର ଭାର
ତମେ ସବୁ ।''
କ୍ଷଣକରେ ହୁଏ ପ୍ରଚାରିତ,
ଆସିଛି କରୁଣା ସଂଗ୍ରାସିକା ସୁବିଦିତ,
ଆସି ନେଇଅଛି ଆପେ ରୋଗୀ-ସେବା ଭାର,
କମଳ ସଂଗତେ ଆଗୁଁ ଚିହ୍ନା ପୁଣି ତାର !
ତାକୁ ଖୋଜି ଖୋଜି ଆସିଅଛି ଏହି ସ୍ଥାନେ,
ଉଭୟେ ପ୍ରଣୟୀ ପରି ଲୋକେ ଅନୁମାନେ ।

ପ୍ରଣୟୀ ନିଶ୍ଚୟ, ଆଉ କହିବା କାହାରେ ?
ଦ୍ୟାବା ଓ ପୃଥିବୀ ପରି ଯେହୁ ଏକ ଆରେ
ଖାଲି ଚାହିଁ ଚାହିଁ କଟାଇଲେ ଯଉବନ,
ମିଶୁ ମିଶୁ ଭାଙ୍ଗିଗଲା ଯେ ମଧୁମିଳନ ।
କରୁଣା ବିମୁକ୍ତ; ତା'ର ସ୍ୱପ୍ନର ସଂପଦ
କମଳ, କେଜାଣି କାଲି ହେବ କାରାବଦ୍ଧ !
କେତେ ଦିନ ଥିବ ଚାଲି ଏହି ଲୁଚକାଳି,

ପ୍ରଣୟ କି ଖାଲି ବିରହର ଅଶ୍ରୁ-ବାରି ?
ପ୍ରଣୟ କି ହେବ ଖାଲି ଜନସେବା ବ୍ରତ ?
ନାହିଁ ତା'ର ଜନାନ୍ତିକ ? ନିଜର ନିଭୃତ ?
କରୁଣାର ନାରୀମନ ଚାହେ ନିଜ ନୀଡ଼,
ପ୍ରାଣର ଅନନ୍ୟଠାରୁ ପରଶ ନିବିଡ଼,
ବିରାଟ ଆକାଶ ତା'ର କିବା ଦରକାର ?
ସେ ଚାହେ ସାମାନ୍ୟ, ଯାହା ହେବ ଆପଣାର ।
ସୁସ୍ଥ ହୋଇ ପୁଣି ଯୋଗଦେବ ସତ୍ୟାଗ୍ରହେ
କମଳଠୁ ଶୁଣି, ଚିତ୍ତ ନାହିଁ ସ୍ଥିର ରହେ
ବିରହିତା କରୁଣାର । କିଛି କହେ ନାହିଁ,
ମନେ ମନେ ଖାଲି ନାନା କଥା ଭାବୁଥାଇ ।

କଂଗ୍ରେସ ଶିବିରେ ଥିଲେ ପ୍ରବୀଣ କର୍ମିଣୀ
କେଉଁ ନେତାଙ୍କର ପତ୍ନୀ; ଶୁଦ୍ଧା, ମନସ୍ୱିନୀ ।
ମାତାରୂପେ ଥାନ୍ତି କ୍ୟାମ୍ପେ, ଘେନି ସର୍ବମନ,
କରି ପ୍ରାତ୍ୟହିକ ଯେତେ ଦୁଃଖ ପ୍ରଶମନ ।
କରୁଣା ତାଙ୍କରି ପାଖେ କନ୍ୟା ପରି ଥାଏ,
ଚିକିତ୍ସା ମନ୍ଦିରେ ଦିବସରେ ଆସେ ଯାଏ ।
ନିଭୃତେ ତାହାଠୁ ବୁଝି ଗତ ଇତିହାସ
ବୁଝିଲେ ପ୍ରବୀଣା, କରୁଣାର ଗୁପ୍ତ ତ୍ରାସ ।
ଦିନେ ଯାଇ ଅସଂକୋଚେ କହିଲେ କମଳେ
''ଆଗେ ତମେ କରୁଣାରେ ବିଭା ନାହିଁ କଲେ,
ଯୋଗ ଆଉ ନାହିଁ ଦେଇପାର ଆନ୍ଦୋଳନେ
ଜାଣ ନାହିଁ ତମେ ନାରୀ କି ଚାହେ ଜୀବନେ ।''

ଉତ୍ତରେ କମଳ ''ମୁଁ ଯେ, ଭିଖାରି ଜଗତେ
ମୁଣ୍ଡ ଗୁଞ୍ଜିବାକୁ ଥାନ ନାହିଁ ଏ ମରତେ,
କାହିଁ ତାକୁ ରଖିବି ମୁଁ, ମାଆ ମତେ କହ,
କରୁଣା ହୁଅନ୍ତା କା'ରେ ଅସୁଖ ବିଷୟ ?''
କହନ୍ତି ପ୍ରବୀଣା ହସି, ''ତା'ର ସମାଧାନ
କରୁଣା ସାରିଛି କରି, କର ଅବଧାନ
ଏଇ ପତ୍ରେ ।''
ସମ୍ମୁଖେ ତା' ଦେଖଇ କମଳ
ଉଇଲି କରୁଣା ପିତା ଅବିନାଶଙ୍କର ।

ତ୍ୟାଗପୀଠରେ ବିବାହ । ଅବିନାଶଙ୍କ ଉଇଲ୍

ସ୍ପଷ୍ଟ ଲେଖାଅଛି ତହିଁ ତାଙ୍କ ସଂଚୟର
ତୃତୀୟାଂଶ ନେବେ ତାଙ୍କ କନ୍ୟା, ତା'ର ବର ।
ଅନୁମାନେ ମୂଲ୍ୟ ହେବ ଦୁଇ ଲକ୍ଷ ସରି,
ଅଛି ଘର, ଜମିଦାରି, ବ୍ୟାଙ୍କେ ଜମା କରି
ଯାଇଛନ୍ତି; ପୁଣି ଟଙ୍କା—ସମସ୍ତ ଏ ଧନ,
କମଳର ପଦେ କରି ନିଃଶେଷେ ଅର୍ପଣ
କରୁଣା ଚାହୁଛି ତା'ର ହୃଦୟ-ଆଶ୍ରୟ,
ତାହା ବିନା ଆବର୍ଜନା ମାତ୍ର ଏ ସଂଚୟ ।

ତ୍ୟାଗରେ ବିବାଦ ଶେଷ । କରୁଣାର ଭାଇ
ବାରିଷ୍ଟର,—ଆସିଗଲେ ଦ୍ରୁତେ 'ତାର' ପାଇ,
ଦେଶର ପବିତ୍ର ମୁକ୍ତି-ଯଜ୍ଞ-ବେଦୀ ପରେ
ଆଚାର୍ଯ୍ୟ ବାନ୍ଧିଲେ ଦୁହେଁ ମଙ୍ଗଳସୂତ୍ରରେ ।
ଦୁଇ ପକ୍ଷୀ କାହୁଁ ଆସି ଦୂରଦୂରାନ୍ତରୁ
ବସୁଁ ଡାଳେ, ମିଳାଇଲା ତାଙ୍କୁ କେଉଁ ତରୁ ।

ବିବାହ-ନିଶୀଥେ ପାଇ ଏକାନ୍ତେ ପ୍ରିୟରେ
କରୁଣା ଆଶ୍ଳେଷେ ଭିଡ଼ି କମଳେ ଦେହରେ
ନିଜ ନେତ୍ରଲୁହେ ପ୍ରିୟ-ଗଣ୍ଡ କରେ ସ୍ନାତ
କାନ୍ଦି କାନ୍ଦି ଦିଏ ପ୍ରିୟେ ଚୁମ୍ବନ-ଉତ୍ପାତ ।
''ତୁମକୁ ପାଇବି ସତେ ନ ଥିଲା ମୋ ଆଶା,
ଦେଖିବି ଏ ଚିହ୍ନାମୁଖ, ଶୁଣିବି ଏ ଭାଷା,
ମୋ ଲାଗି ସହିଲ ଦୁଃଖ, ମରିଯାଏଁ କିନା;
ସୁଖେ କଟିଥାନ୍ତା ଦିନ ନାହିଁ ଥିଲେ ଚିହ୍ନା
ଏ ଅଧମା ସାଥେ ।''—ଚୁମ୍ବି କରୁଣା ଅଧର
କମଳ ଦିଅଇ ଅଭିଯୋଗର ଉତ୍ତର;
କହେ ପୁଣି—''ତମେ କ'ଣ ସତେ ନାହିଁ ଜାଣ
ମୁଁ ଏକ ସାମାନ୍ୟ ଜୀବ ! ତୁମରି ଆଘ୍ରାଣ
ଯା' କିଛି ସୌରଭ ଦେଇଛି ମୋ ପ୍ରାଣ-ଫୁଲେ,
ଗ୍ରହୀତା ତୁଳନା କାହିଁ ହୁଏ ଦାତା ତୁଲେ ?
କି କଷ୍ଟ ଭୋଗିଛ ନିଜେ ଭୁଲିଯାଅ ପରା,
ସ୍ୱର୍ଣ୍ଣପାତ୍ର ହୋଇଅଛି ମୃତ୍ତିକାର ସରା;

ନାରୀ ସିନା ପୁରୁଷରେ ଖୋଜଇ ଆଶ୍ରୟ;
କିଇବା ତୁମରେ ଦେଲି ? ଦେହ ଓ ହୃଦୟ
ନିଜେ ଥୋଇ ମୋର କରେ କରିଛ ମହାନ
ଏ ଦୀନରେ । ଲଜ୍ଜା ଦିଏ ମତେ ଏ ସମ୍ମାନ ।
ଥାଉ, ଅପ୍ରାସଙ୍ଗିକ ତାହା । କହ ମତେ ଧନ
ମୂଳରୁ ଏ ଦୀର୍ଘ ଦଶବର୍ଷ ବିବରଣ
କହ, କଥା ଶୁଣିବି ମୁଁ ଗୋଟି ଗୋଟି କରି,''—
''ନାହିଁ ନାହିଁ, ତମ କଥା''—କହଇ ସୁନ୍ଦରୀ
'' ତମେ ମତେ ଆଗେ କହ । ମୋ କଥା ତ ଜାଣ
କିଛି ନୁହେଁ ବିଶେଷ ତା' । କାରା ଅବସ୍ଥାନ
ବାହାରକୁ ଯେତେ କଷ୍ଟ, ଭିତରେ ତା ନୁହେଁ''—
'' ଯାହା ହେଉ ଶୁଣିବି ମୁଁ''—ବନ୍ଦ କରି ମୁହେଁ
କରୁଣାର, ନିଜ କରେ, କହଇ କମଳ;
କରୁଣା ଏ ସ୍ନେହ-ଖେଳେ ହସି କରକର
କହେ ପୁଣି—''ନାହିଁ, ନାହିଁ, ତୁମକୁ ମୋ ରାଣ,
କର ଆଗେ ଆପଣାର କଥାଟି ବଖାଣ ।
ମାନିବ କି ନାହିଁ ରାଣ ?''

କୋଳେ ନେଇ ଟାଣି
ସ୍ନେହମୟୀ ସେ ନାରୀରେ , କହି ପ୍ରେମବାଣୀ,
ନିଜ ଅଙ୍ଗେ ଏକୀଭୂତ କରି ଆଲିଙ୍ଗନେ,
ପିଇ ତାର ଓଷ୍ଠ-ମଧୁ ନିବିଡ଼ ଚୁମ୍ବନେ,
କମଳ ଉତ୍ତରେ ତା'ର ଛୋଟ ପ୍ରଶ୍ନଜାଳ
ଗଳ୍ପରେହିଁ ମଧୁରାତ୍ରି ହୁଅଇ ସକାଳ ।
ଶଯ୍ୟା ତେଜି ନବବଧୂ, ପୂର୍ବ ସନ୍ତ୍ରାସିକା,
ସ୍ନାନ ସାରି ହୁଏ ସ୍ୱାମୀ ବିନୀତ ସେବିକା ।
ଘର ଲିପେ, ଚୁଲି ଧରେ, ଅନ୍ନ ଓ ବ୍ୟଞ୍ଜନ
କରାଇ, ସ୍ୱାମୀରେ ଡାକି କରାଏ ଭୋଜନ;
ସ୍ୱାମୀ ପରେ ସ୍ୱାମୀଥାଳେ ଖାଇ ଆନନ୍ଦରେ,
ଧ୍ୟାନ କରେ,— ମିଳୁ ଏହା ଜନ୍ମ-ଜନ୍ମାନ୍ତରେ ।

କମଳର ମନ କିନ୍ତୁ ନ ମାନେ ବନ୍ଧନ,
ଦେଖିବାକୁ ଚାହେଁ ସେ ଯେ ଅନନ୍ତ ଗଗନ,

କମଳର କାରାବରଣ

ସହ୍ୟ ହେବ ତାକୁ କାହୁଁ ଘରର କ୍ଷୁଦ୍ରତା ?
ଚାହେ ସାରା ବସୁଧାକୁ ଦେବ ସେ ମମତା ।
ଦେଖିବ ବିଚିତ୍ର ବିଶ୍ୱ, ଅରଜିବ ପ୍ରାଣେ
ନାନା ଅଭିଜ୍ଞତା ନାନା ଜନୁଁ, ନାନା ସ୍ଥାନେ ।
କରୁଣାକୁ ଦେଇ କାମ୍ପେ ରୋଗୀ-ସେବାଭାର,
ବୁହାଇ ନିଭୃତେ ତା'ର ଗଣ୍ଡେ ଅଶ୍ରୁଧାର,
କମଳ ଉତ୍ସାହେ ପୁଣି ପଶେ ଆନ୍ଦୋଳନେ
ପାଏ ଏକବର୍ଷ କାରା ରାଜ-ବିଚାରଣେ ।

## [ ଅଷ୍ଟମ ସର୍ଗ : ଦଳତ୍ୟାଗ ]

'ମହାତ୍ମା ଗାନ୍ଧି କୀ ଜୟ' କରି ଉଚ୍ଚାରଣ
ସହସ୍ର ସହସ୍ର ଯାହା କଷଣ ବରଣ
କଲେ ଆନନ୍ଦରେ, ମୁକ୍ତି ଲାଗି ଭାରତର
କ୍ରମେ ତା ଦଂଶିଲା, ବିବେକରେ ଇଂରେଜର ।
କମାଣ, ବଂଧୁକ ନାହିଁ, ନାହିଁ ବକାବକି,
ନାହିଁ ନର-ରକ୍ତପାତ, ନାହିଁ ଛକାଛକି,
କିଛିହିଁ ଗୋପନ ନାହିଁ, ସତ୍ୟାଗ୍ରହୀ କହେ
ଆଗୁଁ କେଉଁ ସ୍ଥାନେ ତା'ର ଯୁଦ୍ଧଭୂମି ରହେ ।
ଅସ୍ତ୍ରଶସ୍ତ୍ର ନାହିଁ ତା'ର, କରିଲେ ଆଘାତ
ଆଶିଷ ଢାଳଇ ମୁଖୁ ହୋଇ ଭୂମିସାତ ।
ଇଂରେଜ ଶାସନ ହିଂସା-ଶାସ୍ତ୍ର ପ୍ରତିଷ୍ଠିତ,
ନିରସ୍ତ୍ର ଅହିଂସ ରଣେ ହୁଏ ବିଚଳିତ ।
ମହାତ୍ମାଙ୍କ ଉଦ୍‌ଭାବିତ ଏ ନବ ସମର
ଫଉଜେ, ପୋଲିସେ କାବୁ କରେ, ଇଂରେଜର ।
କାରାରୁ କଂଗ୍ରେସେ ତେଣୁ କରି ଉନ୍ମୋଚନ
ସନ୍ଧିର ସରତ କରେ କଥୋପକଥନ ।

କଂଗ୍ରେସ ଓ ଇଂରେଜ ସନ୍ଧି

ଦେଶଲାଗି ଏକ ବର୍ଷ କାରାବାସ ପରେ
କମଳ ବାହାରେ କିନ୍ତୁ ଖଣ୍ଡିତ ଚିତ୍ତରେ ।
ଆନ୍ଦୋଳନେ ନାହିଁ ତା'ର ଉତ୍ସାହ ପୂର୍ବର;

ଦେଖିଛି ସେ ଟେକି ପର୍ଦ୍ଦା ସ୍ୱଦେଶପ୍ରେମର ।
ନେତାଙ୍କର ଅହମିକା, ସ୍ୱାର୍ଥର ସଂଘର୍ଷ,
ତ୍ୟାଗ କା'ର ମରମକୁ କରି ନାହିଁ ସ୍ପର୍ଶ;
ଖଦଡ଼ଟା ଭେକ ମାତ୍ର, ଅହିଂସା ଉପାୟ—
ଅନେକଙ୍କୁ କାରାବାସ ବ୍ୟବସାୟ, ହାୟ ।
ଲୁଚାଏ ସାଗର-ଗର୍ଭ ହିଂସ୍ର ଜଳଚରେ

କଂଗ୍ରେସର ଛଦ୍ମତା

ଯେହ୍ନେ ରମ୍ୟ ନୀଳ ଊର୍ମି ଚଳାଇ ଉପରେ,
ଗାନ୍ଧିଜୀଙ୍କ ବିଶ୍ୱବ୍ୟାପୀ ସାତ୍ତ୍ୱିକ ପ୍ରଭାବ,
ଘୋଡ଼ାଇଛି କଂଗ୍ରେସର ସକଳ ଦୁର୍ଭାବ ।
ନାନା ଦଳ, ନାନା ସ୍ୱାର୍ଥ, ଚର୍ଚ୍ଚା, ଚୁଗୁଲିର
ଦେଖି ଶୁଣି କମଳର ବିବେକ ଅସ୍ଥିର ।
ଦୂରୁ ଯା'ଙ୍କୁ ଭାବିଥିଲା ଦେବ-ସଂଘ ବୋଲି,
ନିକଟେ ଦେଖଇ ତାଙ୍କୁ କ୍ଳେଦ ବୋଳାବୋଳି ।
ପୁଷ୍ପାଭାବେ ପୂଜା ପାଇଥାଏ ଦୂର୍ବାଦଳ,
ଦୁର୍ଭିକ୍ଷରେ ସାରୁ ପତ୍ର ଭୋଜନ ପୁଷ୍କଳ,
ଅତି ସାଧାରଣ ଲୋକେ, ଘଟଣା-ଚକ୍ରରେ
ମିଶିଯାଇ ଆନ୍ଦୋଳନେ, ଜନତା-ନେତ୍ରରେ
ଅନ୍ୟ ଲୋକ ଅଭାବରେ ସାଜିଛନ୍ତି ନେତା,
ଜ୍ଞାନ ବା ଚରିତ୍ର, ତ୍ୟାଗ, —କିଏ ପଚାରେ ତା ?
ଜନତାକୁ ଆନ୍ଦୋଳନେ ମତାଇବା ପାଇଁ
ମିଥ୍ୟା କହିବାରେ ତାଙ୍କୁ କିଛି ବାଧା ନାହିଁ,
ବ୍ରହ୍ମାସ୍ତ୍ର —ଇଂରାଜେ ଦେବା ଗାଳି ସର୍ବସ୍ଥଳେ,
ନିଜ ଦୋଷ ଦେଖିବାକୁ ଆତ୍ମା ଭୟକରେ ।
ଚରଖା-ଅହିଂସା-ଗାଂଧି-ଆଚ୍ଛାଦନ ତଳେ
ବ୍ୟାପ୍ତ ସର୍ବେ ହିଂସା, ସ୍ୱାର୍ଥ , ମିଥ୍ୟାର ସମରେ ।

କିଛି କାଳ ପରେ ହୁଏ ଦେଶେ ନିର୍ବାଚନ
ଘୋରତର ହୁଏ କଂଗ୍ରେସରେ ସ୍ୱାର୍ଥ-ରଣ ।
କେ ହେବ ଆସେମ୍ବ୍ଲି-ସଭ୍ୟ ଲାଗେ ଟଣାଟଣି,
ତ୍ୟାଗର ତାଲିକା ଏକେ ଏକେ ଯାନ୍ତି ଗଣି ।
ମନ୍ତ୍ରୀ-ବଛାବଛି ହୁଏ ତା'ର ପରେ ପରେ
ନାମ ଶୁଣି ଚିତ୍ତ ଭରେ ଘୃଣା, ବିସ୍ମୟରେ ।

କରିବାକୁ ସମ୍ପତ୍ତିର ଉତ୍ତମ ବ୍ୟବସ୍ଥା
କରୁଣା ଯାଇଛି କିଛି କାଳ କଲିକତା,
ଶାନ୍ତି ପାଇଁ, କର୍ତ୍ତବ୍ୟର ନିର୍ଦ୍ଧାରଣ ପାଇଁ
ବିରକ୍ତେ କରୁଣା ପାଶେ ତୁରନ୍ତ ପଳାଇ
କହେ ତାକୁ ସବୁ କଥା—

''ଦଳ -ଅନୁଷ୍ଠାନେ
ନିଜକୁ ଚାଳିବା ମାତ୍ର ଉପାଦାନ—ସ୍ଥାନେ,
ଦେଶ, ଜାତି ନାମେ ପାପ, ଅସତ୍ୟ ସହିବା
ଏହାକୁହିଁ ତମେ ଦେଶସେବା ବୋଲ କିବା ?
ମିଥ୍ୟାରୁ ମିଥ୍ୟାର ଜନ୍ମ, ଅନ୍ୟାୟୁ ଅନ୍ୟାୟ,
ସ୍ୱାର୍ଥ କାହୁଁ ହେବ ଲୋକକଲ୍ୟାଣ ସହାୟ ?
ଦେଶ ବା ସମାଜ ଅବା ଦଳ, ଆନ୍ଦୋଳନ,
ବ୍ୟକ୍ତିର ଚରିତ୍ରେ ଠିଆ ସମଷ୍ଟି-ଜୀବନ ।
ବ୍ୟକ୍ତି ପ୍ରଥମ ଓ ଶେଷ, ବ୍ୟକ୍ତିହିଁ ପ୍ରଧାନ,
ବ୍ୟକ୍ତି-ଶୁଦ୍ଧତାହିଁ ଦେବ ଗୋଷ୍ଠୀକୁ ସମ୍ମାନ ।
ଦଳର ମର୍ଯ୍ୟାଦା ପାଇଁ ବ୍ୟକ୍ତିର ଗଲତି
ଘୋଡ଼ାଇଲେ, ଆତ୍ମହତ୍ୟା ମାତ୍ର ପରିଣତି ।
ତେଣେ ମୁଁ ଛାଡୁଛି ଦଳ, ଛାଡ଼ିଛ ତ ତମେ,
ଦଳ ଓ ବ୍ୟକ୍ତି
କରିବା ମାନବସେବା ଆପଣା ଧରମେ ।
ଘେନିବି ଜୀବିକା ପୁଣି ଅନ୍ୟ ଜନ ପରି
ତମର ପ୍ରଦତ୍ତ ବିତ୍ତେ ଅପେକ୍ଷା ନ କରି ।
ଅନ୍ୟର ଅର୍ଜିତ ତାହା; ବିନା ପରିଶ୍ରମେ
ଭୋଗିବା ଅନ୍ୟାୟ ବୋଲି କହେ କେ ମରମେ;
ରଖି ତାହା ଲଗାଇବା ଜନତା-କଲ୍ୟାଣେ,
ଶାନ୍ତି ଦେବା ସ୍ୱର୍ଗସ୍ଥିତ ପିତୃ-ମାତୃ ପ୍ରାଣେ ।
ମତେ ତ ବରିଛ ତମେ ଦରିଦ୍ର ବେଳରୁ,
ମୁଁ କିପାଁ ହେବାକୁ ଯିବି ଧନ-କଳ୍ପତରୁ ?''

କରୁଣାର ନାହିଁ ଆଉ ପୂର୍ବ ଚପଳତା,
କମଳର କଥା ଏବେ ଶୁଣେ ପୋତି ମଥା ।
କମଳକୁ ସଖା ବୋଲି ମନେ ନାହିଁ କରେ
ସେ ଆଜି ନମସ୍ୟ, ମାନ୍ୟ, ସ୍ୱାମୀ ତା' ଚିତ୍ତରେ ।

ଚତୁରୀ ସେ; ଭାବେ, ଦେଖାଇଲେ ସ୍ୱତନ୍ତ୍ରତା
ଦରିଦ୍ର କମଳ କାଳେ ଭାବିବ ଅନ୍ୟଥା,
ଏ ଲାଗି ସମ୍ପତ୍ତି ସାଥେ ସମଗ୍ରେ ନିଜରେ
ସମର୍ପିଛି କମଳର ପଦେ ନିଃଶେଷରେ !
ନିଜ ଗୃହେ କମଳର ଅନୁଜ୍ଞାକାରିଣୀ
ପରି ଚଳେ, ସର୍ବଗୁଣବନ୍ତୀ ମନସ୍ୱିନୀ ।
ପୁରସ୍କାର ଲଭେ କିନ୍ତୁ ସେହି ସେ ବିନୟେ
ସାମ୍ରାଜ୍ଞୀର ସିଂହାସନ କମଳ-ହୃଦୟେ ।
ସସ୍ମିତେ କହଇ କଥା ଶୁଣି କମଳର
"ଉଚିତ ଭାବୁଛ ଯାହା ନିଶ୍ଚିନ୍ତରେ କର ।"

କିଛି ଚେଷ୍ଟା ଫଳେ ଏକ ଇଂରାଜୀ କାଗଜେ
କମଳକୁ ମିଳେ ଏକ ଚାକିରି ସହଜେ ।
ହୁଏ ସିଟି-ରିପୋର୍ଟର୍—କଠିନ କରମ,
ସବୁବେଳେ ଦରକାର ଥିବା ସଚେତନ ।
ରାତ୍ରେ ଦିନେ ଯେତେବେଳେ ଯାଏ ସେ ବାହାରେ
କରୁଣା ଅପେକ୍ଷେ ନିଦ୍ରାହୀନେ, ଅନାହାରେ ।
ଭୋଗିଲେହେଁ ଏଥିଲାଗି ସ୍ୱାମୀ ତିରସ୍କାର
ନାହିଁ ଛାଡ଼େ ଏଇ ଏକ ଅବାଧତା ତାର ।
କମଳକୁ ନୂଆ କାମ ଲାଗୁଅଛି ଭଲ
ଦର୍ଶନ ମିଳଇ ନିତ୍ୟ ବଡ଼ଲୋକଙ୍କର,
କଲାଣି ସେ ମଧ୍ୟେ ମଧ୍ୟେ ଏପରି ସାକ୍ଷାତ
ସାହିତ୍ୟେ ବିଜ୍ଞାନେ ଯେହୁ ପୃଥିବୀ-ବିଖ୍ୟାତ ।
ନିଜେ ଖୁସୀ, ଖୁସୀ ମଧ୍ୟ ପ୍ରଭୁଦଳ ତାର
ବର୍ଷ ପରେ ତେଣୁ ଖୋଲେ ପ୍ରଗତିର ଦ୍ୱାର
କାଗଜର ଜଣେ ଲୋକ କିଛି କାଳ ପାଇଁ
ଯିବ ଦୂର ନିଉୟର୍କେ; କାଗଜହିଁ ଦାୟୀ
ସବୁ ତାର ଖର୍ଚ୍ଚ ଲାଗି, ଥିଲେ ସ୍ତ୍ରୀ ସାଥିରେ
ଆଉ ଅଧେ ଖର୍ଚ୍ଚ ଦେବ କମ୍ପାନୀ ଖୁସିରେ ।
କମଳ ହିଁ ହେଲା ବଛା । ଟଙ୍କା-ପଇସାଦି
ଭାଇକି ଡକାଇ ସବୁ ସଯତ୍ନେ ସଂପାଦି,

କମଳର ଖବର-କାଗଜରେ ନୌକରି

ପ୍ରସ୍ତୁତ ହୋଇଲେ ଦୁହେଁ ଯିବେ ଆମେରିକା,
ଶ୍ରୀକମଳ ସାଂବାଦିକ, କରୁଣା ରକ୍ଷିକା ।

| ଦୁହିଁଙ୍କର ଆମେରିକା ଯାତ୍ରା |
|---|

ବାବାଙ୍କ ପବିତ୍ର-ସ୍ମୃତି-ମଧୁ-ଅହଂକାରେ
କରୁଣା କହଇ ଖାଲି "ଦେଖୁଛ ନା ବାରେ,
ବାବା ଅଙ୍ଗୀକାର ପୂର୍ଣ୍ଣ ହୁଏ ଆକସ୍ମିକେ
କିପରି ଏଥିରେ ! —ସତେ, ବାବାଙ୍କ ପରି କେ !"

## [ ନବମ ସର୍ଗ : ଆମେରିକା ଓ ବିଶ୍ୱଜନୀନତା ]

ସୁଏଜ୍ ଖାଲର ମୁଣ୍ଡେ ସଏଦ୍ ବନ୍ଦରେ
ଲେସେପ୍‌ସର ଦୀର୍ଘ ମୂର୍ତ୍ତି, ଟେକି ଦକ୍ଷ କରେ
ଅଙ୍ଗୁଳି ସଙ୍କେତେ ଦିଏ ଇଉରୋପରେ ବାଟ
ଯିବାକୁ ଏସିଆଖଣ୍ଡେ । କଂକ୍ରିଟର ଘାଟ,
ଭୂମଧ୍ୟ-ସାଗର ଧକ୍କା ଖାଉଛି ଶାଶ୍ୱତେ
ତିନି ମହାଦେଶ ତା'ର ଛିଡ଼ା ତିନି ପଟେ ।
କମଳ-କରୁଣା ଘୂରି ମୂର୍ତ୍ତି ପାଦତଳେ
ଭାବୁଛନ୍ତି ନାନା କଥା । ଉଠଇ ମନରେ
ଏଇ ପ୍ରଶ୍ନ—ଇଉରୋପର ଏସିଆ-ଗମନ
ସୁଖକର ହେବ ବୋଲି ଏ କୂଲ୍ୟା ଖନନ
ହେଲା ସିନା, ତେଣୁ ଏହି ଫରାସୀ ସ୍ଥପତି
ନିର୍ଦ୍ଦେଶନ୍ତି ଏସିଆକୁ ଇଉରୋପର ଗତି ?
ଶତାବ୍ଦୀ-ଶତାବ୍ଦୀ ଧରି ଏସିଆ-ମଣ୍ଡଳ

| ସୁଏଜ କେନାଲ, ଏସିଆ ଓ ୟୁରୋପ |
|---|

ମାନବିକ, ସଭ୍ୟତାର ମହାଉତ୍ସସ୍ଥଳ;
ସଂପଦେ, ବିଳାସେ, ଧର୍ମେ, ସାମ୍ରାଜ୍ୟ-ଶାସନେ
ଦର୍ଶନ-ବିଜ୍ଞାନ-ମୂଳ-ତତ୍ତ୍ୱ ନିର୍ଦ୍ଧାରଣେ
ଏସିଆ ଅଗ୍ରଣୀ ବିଶ୍ୱେ; ତୀର୍ଥ ମାନବର,—
ଭକ୍ତିରେ କି ନ ହୁଅନ୍ତା ଯାତ୍ରା ଇଉରୋପର ?
ଏସିଆ ଓ ଆଫ୍ରିକାର ସମୃଦ୍ଧାର ବକ୍ଷେ
କିନ୍ତୁ ଇଉରୋପ ବସି ଶୋଷଇ ନିଃଶଙ୍କେ
ପୁଷ୍ଟ, ପୁରାତନ ରକ୍ତ । ସଭ୍ୟ ଜାତି-ସଂଘ,
ଶିଖାଇଲେ ବିଶ୍ୱେ ଯେହୁ ସଭ୍ୟତା ପ୍ରସଙ୍ଗ,

ଇଉରୋପ-ଦାସତ୍ୱେ ଆଜି ବଞ୍ଚନ୍ତି ସେମାନେ,
ଶ୍ୱେତାଙ୍ଗ ସୃଜଇ ବିଭୀଷିକା ତାଙ୍କ ପ୍ରାଣେ ।
ଇଉରୋପ ଚଳେ ଆଜି ଏସିଆ ଲୁଣ୍ଠନେ,
ଏସିଆ ପଶ୍ଚିମେ ଆସେ ଆଶ୍ଚର୍ଯ୍ୟ-ନୟନେ
ଦେଖିବାକୁ ୟୁରୋପର ଦୁର୍ଦ୍ଦାନ୍ତ ବିଭବ,
ବୁଝେନା ସେ କାହା ଧନେ ସେସବୁ ସମ୍ଭବ ।
ୟୁରୋପର ବିଜ୍ଞ ଜନେ, ଦୁର୍ଗମ ଜଙ୍ଗଲେ,
ବିଲେ, ବେଳାଭୂମେ, ମରୁସ୍ଥାନେ, ଶୈଳ ଖୋଲେ,
କଷ୍ଟେ ଖୋଜି ଏସିଆର ପ୍ରାଚୀନ ସଭ୍ୟତା,
ବିମୁଗ୍ଧ-ବିସ୍ମୟେ ନୋଇଁଥାନ୍ତି ନିଜ ମଥା ।
ବିଚଳିତମନା ଏବ ଏସିଆ ଯୁବକେ,
ନ ପଚାରି ନିଜ ରତ୍ନେ, ଧାଆନ୍ତି ପୁଲକେ
ଦେଖିବାକୁ ଇସ୍ପାତୀୟ କୁତ୍ସିତ ସଭ୍ୟତା
ୟୁରୋପର, ଦେଶେ ଫେରି ବର୍ଣ୍ଣେ ସେହି କଥା,
—ନଈ-ପୋଲ, ଯନ୍ତ୍ର-ଧୂମ, ରେଲୱେ ଷ୍ଟେସନ
ରଙ୍ଗମଞ୍ଚେ ଶ୍ୱେତ-ନଟୀ ଅଶ୍ଳୀଳ-ନର୍ତ୍ତନ
କି ଆତ୍ମ-ପ୍ରସାଦ ଭୋଗେ, କି କୃତକାର୍ଯ୍ୟତା !
ୟୁରୋପର ଧୂଳି-ସ୍ପର୍ଶେ କି ଉନ୍ନତ ମଥା !
କମଳ ଭାବଇ ମନେ, ହୁଏତ ଅଚିରେ
ସଭ୍ୟତାର ରଥ-ଚକ୍ର ଯିବ ଘୂରି ଧୀରେ,
ୟୁରୋପ ତଳକୁ ଯିବ, ଏସିଆ ଉପରେ,
ଘଟିନି କି ଇତିହାସେ ଏହା ସ୍ତରେ ସ୍ତରେ ?

କରୁଣାର ଚିତ୍ତେ ନାହିଁ କିଛି ପ୍ରଶ୍ନୋତ୍ତର,
ଚିତ୍ତ ତାର ଉଲ୍ଲସିତ ସ୍ୱାଦେ ନୂତନର ।
ଯୌବନରେ କାରାବଦ୍ଧ ରହୁଁ ସେ ବିଚାରୀ,
ଆତ୍ମା ତା'ର ଖୋଜୁଥିଲା ଯିବ ଡେଣା ଝାଡ଼ି
ମହା ନଭ ଚତୁର୍ଦ୍ଦିଗେ । କମଳର ପାଇଁ
ଖାଲି ହୋଇଥିଲା ସିନା ଦିନେ ନୀଡ଼ାଶାୟୀ;
ବିଚ୍ଛେଦର ଶେଷେ ଆଜି କମଳ ତା ପାଖେ,—
ଯା କିଛି ଦେଖେ ସେ ସୃଜେ ମାୟା ତା'ର ଆଖେ ।
ଲୋହିତ ସାଗରେ ଚଳୁଁ ବାଷ୍ପୀୟ ବୋଇତ
ଦୁଇ ତୀର ଦିଶେ ପାଖେ, ସଲିଳ-ବିନୀତ ।

ପାଖକେ ଆଫ୍ରିକା ରହେ, ପାଖକେ ଏସିଆ
ଭୌଗୋଳିକ ଆନନ୍ଦରେ ନାଚେ ତା'ର ହିଆ ।
ସୁଏଜ କୂଲ୍ୟା ବକ୍ଷେ, ଦିଗନ୍ତ-ବିସ୍ତାରୀ
ଆରବର ମରୁଭୂମି—ଧୂ-ଧୂ କରେ ବାଲି ।
କାଏରୋରେ ପିରାମିଡ଼; ଭୂମଧ୍ୟ-ସାଗରେ
ନୀଳ ଜଳ, —ନୀଳ ଯେହ୍ନେ ମିଶିଛି ଜଳରେ,
ନେପଲ୍‌ସରେ ବିଶୁଭୀସ ଆଗ୍ନେୟ ପର୍ବତ
ତା' ତଳେ ପମ୍ପାଇ—ତା'ର ଶରୀର ବିଧ୍ୱସ୍ତ
ବିଶୁଭୀସ ଅଗ୍ନି-ଶ୍ୱାସେ; ବିଳାସିନୀ ପାରୀ
ରମ୍ୟ ବୁଲୁଭାର୍ଦେ ଯାନ୍ତି ରମଣୀୟା ନାରୀ;
କୁତ୍ସିତ କୁବେର-ଭୂମି ବିରାଟ ଲଣ୍ଡନ,
ଅନ୍ତରେ ଜଗଦାଶ୍ରୟ ମୁଖେ ଅପ୍ରସନ୍ନ ।
ଦେଖି ଦେଖି ଏ ସମସ୍ତ କଲେ ଯାତ୍ରା, ଶେଷେ
ସମୁଦ୍ରର ଶେଷ ତଟେ, ସୂର୍ଯ୍ୟାସ୍ତର ଦେଶେ,
ସୂର୍ଯ୍ୟାସ୍ତର ବର୍ଣ୍ଣ ଘେନି ଯହିଁ ଆଦିବାସୀ
ଥିଲେ ରକ୍ତ-ବର୍ଣ୍ଣ, ବନ୍ୟ, ଶୋଣିତ-ବିଳାସୀ ।
ଦିନେ ପଡ଼େ ସେହି ରାଜ୍ୟ ଶ୍ୱେତାଙ୍ଗ ନଜରେ,
କୁମାରୀ ମୃତ୍ତିକା ଦେଖି ମୁଖୁ ଲାଳ ଝରେ ।
ସେ ଦିନର ଅଶିକ୍ଷିତା ଅସ୍ପୃଷ୍ଟା କୁମାରୀ
ଶ୍ୱେତାଙ୍ଗର ବୀର୍ଯ୍ୟ ଲଭି ମହାବଳଶାଳୀ
ବୀର-ବାହୁ ସଭ୍ୟତାରେ କରିଛି ପ୍ରସବ,
ପୃଥିବୀକି ଭିକ୍ଷା ଦିଏ, ଆଜି ତା' ବିଭବ ।
ଶ୍ୱେତ, କୃଷ୍ଣ, ପୀତ, ରକ୍ତ—ସବୁ ଚମତ୍କାର
ମନୁଷ୍ୟଙ୍କ ହୋଇଅଛି ସେ ମୁକ୍ତି-ବିହାର ।
କମଳ କରୁଣା ଦୁହେଁ ଉଦ୍‌ବିଗ୍ନ ଅତି
କୂଳ ଛୁଇଁ ପ୍ରତ୍ୟକ୍ଷରେ ଦେଖିବେ ସମ୍ପ୍ରତି,
ମାନବିକ ସଭ୍ୟତାର ନବ ରାଜସୂତ.,
ହୋଇଅଛି ଗୁଣ, ଦୋଷ ଯା'ର ବହୁଶ୍ରୁତ ।

ଜାହାଜ ପଶଇ ଧୀରେ ନ୍ୟୁୟର୍କ ବନ୍ଦରେ,
ସ୍ୱାଧୀନତା-ମହାମୂର୍ତ୍ତି ଦିଶେ ଜେଟୀ ପରେ;
ହସ୍ତେ ତା'ର ଅଗ୍ନିଶିଖା, ଆକାଶେ ନୟନ

ନ୍ୟୁୟର୍କ ବନ୍ଦରରେ ସ୍ୱାଧୀନତାର ମୂର୍ତ୍ତି

ଅଟଳ ସଂକଳ୍ପ, ଧୈର୍ଯ୍ୟ, ନିର୍ଦ୍ଦେଶେ ବଦନ,
ଆମେରିକା ସଭ୍ୟତାର ପ୍ରତୀକ ମହାନ୍,
ଯା ଲାଗି ସେ କରିଅଛି ନିଜ ରକ୍ତ ଦାନ
ନିଜର ମାଟିରେ; ଭାଇ ଭାଇ ଗଡ଼ାଗଡ଼ି
ହୋଇଛନ୍ତି ଦ୍ୱନ୍ଦଯୁଦ୍ଧେ; ହୋଇ ଛଡ଼ାଛଡ଼ି
ଆଜୀବନ ଜ୍ଞାତି ବନ୍ଧୁ, ଗୁଳି ପରସ୍ପରେ
ମାରିଛନ୍ତି, ରଖିବାକୁ ଜୀବନ୍ତ ଦେଶରେ
ମାନବିକ ମହତ୍ତ୍ୱର ପୂତ ହୋମଶିଖା,—
ଏଇ ସେ ମହାନ୍ ଜାତି, ବୀର ଆମେରିକା ।
କମଳ, କରୁଣା ହସ୍ତ ଧରି ଭକ୍ତିଭରେ
ନମଇ ସେ ମୂର୍ତ୍ତି ଲକ୍ଷ୍ୟେ; ପ୍ରାର୍ଥଇ ଅନ୍ତରେ
" ହେ ଦେବି, ସେ ଶୁଭଦିନ ଅଛି କେତେ ଦୂରେ
ଯେ ଦିନ ତୋ ମୂର୍ତ୍ତି-ପୂଜା ହେବ ପଲ୍ଲୀ-ପୁରେ
ଭାରତର, ଛାଡ଼ି କାଷ୍ଠ, ଶିଳା ଉପାସନା,
ଛାଡ଼ି ଧର୍ମ-ଜାତି-ଭେଦ, ବର୍ବର ଅର୍ଚ୍ଚନା
ବାନର, ପିଶାଚ, ସର୍ପ, ଚତୁଷ୍ପଦଙ୍କର,
ଛାଡ଼ି ଆଶ୍ରିବାର ପୁରୋହିତ ପଦତଳ
ଜୀବନର ନିମ୍ନ-ସ୍ତର ସୁଖ ଆଶା କରି,-
ମୋ ଜାତି ଖୋଜିବ ଖାଲି ଆଶିଷ ତୋହରି ?
ହେ ଦେବି, ଚଳ ମୋ ଦେଶେ, ଜାଳ କାଳାନଳ
ହୃଦେ ହୃଦେ କୋଟି କୋଟି ମୋ ଦେଶ ଜନର
ପୋଡ଼ି ଧର୍ମ-ସଂକୀର୍ଣ୍ଣତା, ପୋଡ଼ି କ୍ଷୁଦ୍ର ଲାଭ,
ସେ ଅଗ୍ନିରେ ପ୍ରସରୁ ମା' ତୋହରି ପ୍ରଭାବ ।"

ନ୍ୟୁୟର୍କ ବିଳାସଭୂମି,—ବ୍ରଡ଼ୱେ ଅଞ୍ଚଳ,
ହେହି ସ୍ଥାନେ ବନ୍ଧୁଦ୍ୱୟ ନେଲେ ବସାଘର ।
ଅଭ୍ରଂଲିହ ଷଷ୍ଠିତଳ ପ୍ରାସାଦ ଉପରେ
ବାତାୟନ ଦେଇ ଯହିଁ ମେଘ କ୍ରୀଡ଼ା କରେ ।
ତହିଁ ଏକ କକ୍ଷେ ବସି କରୁଣା ଭାଷଇ
"ଏହାକୁ ହିଁ ସତ୍ୟେ ସତ୍ୟେ 'ବସା' ବୋଲି କହି ।
ତଳେ ଦେଖ ପଥ-ଯାତ୍ରୀ ମୂଷା-ପଲ ପରି;
ବିରାଟ ବହିତ୍ରଜାଳ, ଯେହ୍ନେ ବା ଶଫରୀ

ପରି ଦେଖାଯାନ୍ତି— ଏଣେ ଦେଖ ସମୁଦ୍ରରେ;
ରୌପ୍ୟ ରଜ୍ଜୁ ପ୍ରାୟ ଦିଶେ ଦୂର ଦିଗନ୍ତରେ
ଉଦାର ହଡ୍‌ସନ ନଦ । ଆକାଶରେ ଆମେ,
କିନ୍ତୁ ନାହୁଁ ଶୂନ୍ୟେ,—ଅଛୁଁ ସ୍ଥଳର ଆରାମେ ।

ନ୍ୟୁୟର୍କ-ନିବାସ । ବିଦ୍ୟୁତ୍‌କୁମାରୀର ମାନବ ସେବା

କିବା ସିଦ୍ଧି ବିଜ୍ଞାନର ! ଧୂଳି, ଧୂମ ନାହିଁ,
ଅନିର୍ମଳ କିଛି ନାହିଁ, —ଏକ ସ୍ଥାନ-ସ୍ଥାୟୀ
ରହନ୍ତି ଯଦିବା ଜନ ସହସ୍ର ନିୟୁତ,
ବହୁ ଦେଶୁ ସମାଗତ, ଭିନ୍ନ, ଅସଂପୃକ୍ତ ।
ଏ ବିରାଟ ଜନସଂଘେ ଯୋଗାଉଛି ପାଣି,
ରାନ୍ଧେ ଖାଦ୍ୟ, ନିଏ, ଆଣେ, ସେବେ ମନ ଜାଣି
ଜଣେ ମାତ୍ର ଚାକରାଣୀ,—ବିଦ୍ୟୁତ୍-କୁମାରୀ,
ସଂଧ୍ୟାଗମେ ସେହି ଦିଏ କୋଟି ବତି ଜାଳି ।
ସେହି ରଖେ ଚାରିଆଡ଼ ଶୁଦ୍ଧ, ପରିଷ୍କାର
ନୈଷ୍ଠିକ ତପସ୍ୱୀଙ୍କର ଯେହ୍ନେ 'ଯଜ୍ଞଶାଳ';
ପ୍ରକୃତିକି ବଶ କରି ବିଜ୍ଞାନର ମନ୍ତ୍ରେ
ମାୟାବୀ ଶ୍ୱେତାଙ୍ଗ ସୁଖ ସୃଜିଛି କେମନ୍ତେ !
ମନେପଡ଼େ ପୁରାଣର ଆସୁର ସଭ୍ୟତା,
ସେବିବା ଦୈତ୍ୟଙ୍କ ପାଦେ ସକଳ ଦେବତା !''

କମଳ କହଇ— ''ମାତ୍ର କେତେ ବର୍ଷ ତଳେ
ଏଇ ସ୍ଥାନ ପୂର୍ଣ୍ଣ ଥିଲା ଘୋର ଜଙ୍ଗଲରେ,
ଲୀଳା ସ୍ଥଳ ବନ୍ୟ ଅଶ୍ୱ, ବାଇସନ୍‌ଙ୍କର
ଅବା ରେଡ୍ ଇଣ୍ଡିୟାନ୍, ମୁଣ୍ଡେ-ଗୁଞ୍ଜା-ପର ।
ସେହି ସ୍ଥାନେ ଆଜି ନଭଶ୍ଚୁମ୍ବୀ ଅଟ୍ଟାଳିକା
ଦେଖାଉଛି ମାନବିକ ଶକ୍ତିର ପରୀକ୍ଷା ।
ପ୍ରକୃତିକି ଭାଙ୍ଗି, ଦଳି, ଦେଇ ରୂପାନ୍ତର
ଯାହା ଥିଲା ବନ୍ୟ, ଘୃଣ୍ୟ, ପଂକିଳ ପ୍ରାନ୍ତର
ସେଇ ଆଜି ଋଦ୍ଧିମନ୍ତ, ବିଳାସର ସ୍ଥଳୀ
ମାନୁଷ ସମୃଦ୍ଧି ଯହୁଁ ନାହିଁ ପାରେ ବଳି ।

ଇତିହାସ-ଜରଦ୍‌ଗବ ପ୍ରାଚ୍ୟ ପୁରାତନ
ଯୁବା-ପ୍ରତୀଚୀର ଦେଖି ଏ ଯାଦୁ-କରଣ
ବିମୁଗ୍ଧ ବିସ୍ମିତ ହେବା ସ୍ୱାଭାବିକ ଅତି,

ବୃଦ୍ଧ ବୀର ଯେଉଁ ନେତ୍ରେ ଚାହେଁ ଶିଶୁପ୍ରତି ।
ଜାତିର ବି ହୁଏ ପ୍ରିୟେ, ଜନ୍ମ-ଜନ୍ମାନ୍ତର

ସଭ୍ୟତାର ଉତ୍‌ଥାନ ପତନ

ଶାସକ ପିନ୍ଧଇ ଦିନେ ବେଡ଼ି ଦାସତ୍ୱର ।
ଥିଲା ଦିନେ ଯାହା ଋଦ୍ଧିମନ୍ତ ଏହିପରି
ସାମ୍ରାଜ୍ୟର ଉତ୍ତମାଙ୍ଗ, ବିଶାଳ ନଗରୀ,
ସେ ଆଜି ହୋଇଛି ବସା ସାପ, ଶୃଗାଳର
କାହାଣୀ ତା' ଖୋଜାହୁଏ, ଉଖାରି ପଥର ।
ନିରଜନ ବେଳାଭୂମେ, ବାଲୁକା ପ୍ରାନ୍ତରେ
କୋଣାର୍କ ଉଠିଲା ଯେବେ ଓଡ଼ିଆ ହସ୍ତରେ
ବୃନା କରି ଦୂର ଶୈଳ, ପୋତି ନଦୀ-ଜଳ
ସେତେବେଳେ ଆମେରିକା ଥିଲା ବନ୍ୟସ୍ଥଳ ।
ଓଡ଼ିଆ ସ୍ୱାଧୀନ ଥିଲେ, ସାମ୍ରାଜ୍ୟ ତାଙ୍କର
ଗଙ୍ଗାଠାରୁ ଛୁଇଁଥିଲା ଦୂର ରାମେଶ୍ୱର ।
ବନ୍ୟ ଆମେରିକା ଆଜି ସଭ୍ୟ, ଧନବନ୍ତ,—
କୋଣାର୍କର ସ୍ରଷ୍ଟା ଆଜି ବିକଳ, ବିନଷ୍ଟ ।
ପତନ-ଉତ୍‌ଥାନମୟ ଇତିହାସ ପନ୍ଥା,
ମନୁଷ୍ୟ ଉପରେ ଆଉ ଅଛି କେ ନିୟନ୍ତା
ବାଣ୍ଟଇ ସମୃଦ୍ଧି ଯେହୁ ଜାତିରେ ଜାତିରେ,
ଚଞ୍ଚଳା ଚଳନ୍ତି ଅବା ମାଟିରୁ ମାଟିରେ ।
ଯେ ବିଜ୍ଞାନ ଶ୍ୱେତାଙ୍ଗଙ୍କୁ କରିଅଛି ବଳୀ
ସେହି କ୍ରମେ ତାକୁ କରିପାରେ ନିଜ ବଳି ।
ମେଘରୂପେ ସୃଜି ପୁଣି ବାଷ୍ପରୂପେ ଖାଏ
ଯେହ୍ନେ ରବି, ସେହିପରି ସଂସାର ଖେଳାଏ
ସେ ଅଦୃଷ୍ଟ ମହାଶକ୍ତି, ରଚଇ, ନାଶଇ
ଏ ସଭ୍ୟତା-ଭବିଷ୍ୟତ୍ କିଏ ପାରେ କହି ?"

ନିଉୟର୍କେ ଏକ ବର୍ଷ ବସବାସ ପରେ
କରୁଣାର ବାନ୍ତି ହୁଏ ଦିନେ ପ୍ରଭାତରେ ।

କରୁଣାର ମାତୃତ୍ୱ

କମଳ ବିବ୍ରତ ହୁଏ, କରୁଣା ହସଇ
ଲାଜେ ଲାଜେ, 'କିଛି ନାହିଁ' 'କିଛି ନାହିଁ' କହି ।
କମଳ ଜାଣଇ କ୍ରମେ ଦୋସର ତାହାର
ପାଇଅଛି ମାତୃତ୍ୱର ପୁଣ୍ୟ ଅଧିକାର ।

ମାସେ ମାସେ ଅଙ୍ଗେ ଫୁଟେ ଗରଭ ଲକ୍ଷଣ,
ସ୍ତନାଗ୍ର ପିଙ୍ଗଳ ହୁଏ, ପାଣ୍ଡୁର ବଦନ ।
ରାତ୍ରାଗମେ ଦୁହେଁ ବସୁଁ ଅଗ୍ନିକୁଣ୍ଡ ପାଶେ
କରୁଣାକୁ ଧରି କୋଳେ, ମୃଦୁ, ପ୍ରିୟଭାଷେ
କମଳ ତୋଷଇ ଆତ୍ମା ପ୍ରାଣ-ଦୋସରର,
କୌତୂହଳେ ଦେଖେ କେବେ ଗର୍ଭ-ପରିସର ।
ନବୀନ-ଜୀବନ-ଯାତ୍ରୀ ସେ ପ୍ରେମୀ ଯୁଗଳେ
ଏ ଚିରାଚରିତ ଭରୁଥାଏ ବିସ୍ମୟରେ ।

ଯଥାକାଳେ କନ୍ୟା ଏକ ହୁଅଇ ପ୍ରସୂତ
ତା' କ୍ରନ୍ଦନ ଢାଳେ ତାଙ୍କ ଶ୍ରବଣେ ଅମୃତ ।
ବକ୍ଷ ଖୋଲି ଦିଏ ସ୍ତନ୍ୟ ନୂତନ ଜନନୀ,
ପ୍ରିୟ ଥିଲେ ପାଶେ, ଲାଜେ ସସ୍ମିତ-ବଦନୀ;
ନ ଥିଲେ ପାଖରେ ଡାକୁଥାଇ ବାରମ୍ବାର
କହି "ଆସ, ଦେଖ କିନା ଝିଅ କାରବାର ।"
ତିନିମାସେ ଶିଶୁ ମୁଖେ ଫୁଟୁ ଦରହାସ,
ଜନକ ଜନନୀ ଚିତ୍ତେ ବିଶେଷ ଉଲ୍ଲାସ,
କୋଳୁଁ କୋଳେ ହୋଇ ହୋଇ ଆଦାନ-ପ୍ରଦାନ
ସ୍ନେହ-ଅଭିଷିକ୍ତ ଶିଶୁ ହୁଏ ବର୍ଦ୍ଧମାନ ।
କରୁଣା କରଇ ଖେଦ କିନ୍ତୁ ଥରେ ଥରେ
'ପୁଅ ଏ ହେଲାନି କିଆଁ ? ତା କ୍ଷୁଦ୍ର ମୁଖରେ
ତୁମକୁ ହିଁ ଦେଉଥାନ୍ତି ଅଛିନ୍ନ ଆଦର,
ତମ ବଂଶ ଧରାରେ କେ ରଖିବ ଆବର ?"

ହେବାକୁ ଏତୁଡ଼ିଘରେ ସାହାଯ୍ୟକାରିଣୀ
ରହେ ସଙ୍ଗେ ଯାଙ୍କି ନର୍ସ; ସୁମିଷ୍ଟହାସିନୀ ।
ନିରଳସେ କର୍ମ କରେ, ଦିବସ ଶର୍ବରୀ,
ଦରକାର ଯେବେ ଯାହା, ଅପେକ୍ଷା ନ କରି ।
କ୍ରମେ ତାର କାମ କମେ; ଶେଯୁ ଉଠି ଚାଲେ
କରୁଣା, ନିଜର କଥା ନିଜେଇ ସମ୍ଭାଳେ ।
ସେବିକାଟି ପାଖେ ଅବା ନିକଟ କକ୍ଷରେ
ବସି ଗପସପ କରେ, ଅବା ବହି ପଢ଼େ ।

କରୁଣା ଦେଖିଲା ଦିନେ ହାତରେ ତାହାର
ଏକ ବହି,—'ରେଡ୍ କ୍ରସ, ଭାରତେ ପ୍ରଚାର ।'
ବହି ନାମେ ବଢ଼େ ତା'ର ମୁଗ୍ଧ କୌତୂହଳ,
ପଚାରେ କେଯାଏଁ ଜାଣେ ତଥ୍ୟ ଭାରତର,
କେବହୁଁ ଜାଗ୍ରତ ତାର ଇଣ୍ଡିଆ-ଚେତନା,
ଭାରତେ ଯିବାକୁ ତା'ର ଇଚ୍ଛା ଅବା ମନା ।

ନର୍ସ ମିସ୍ ୱାଟ୍‌ସନ
କରୁଣା-ନିହତ
ପାଦ୍ରୀର କନ୍ୟା

ଉତ୍ତରେ ଯା' ଶୁଣେ ତାହା ସ୍ତବ୍ଧ ତାକୁ କରେ
ନ କହି ବିଶେଷ ଆଉ, ଅନ୍ୟ କାମ ଧରେ ।

ଶୁଣେ, ସେ—ନର୍ସର ଜନ୍ମ ଇଣ୍ଡିଆ ମାଟିରେ,
ଦକ୍ଷିଣ-ଭାରତେ ପୁଣ୍ୟ କାବେରୀର ତୀରେ,
ପିତା ୱାଟସନ୍ ଥିଲେ ପାଦ୍ରୀ-ଅଧ୍ୟାପକ,
ମାନ୍ଦ୍ରାଜରୁ ବଂଗଳାକୁ ବିଜ୍ଞାନ ଶିକ୍ଷକ
ହୋଇ ଆସିଥିଲେ,—ନର୍ସ, ପାଞ୍ଚବର୍ଷ ବେଳେ,
ଯାଉଁ ନିମନ୍ତ୍ରଣ ଲଭି ଅନ୍ୟ ବଂଧୁମେଳେ
କଲିକତା ବିଦ୍ୟାପୀଠ କନଭୋକେଶନେ,
ପିତା ମଲେ ସଂନ୍ତ୍ରାସକ-ଗୁଳି-ନିକ୍ଷେପଣେ ।
ଆମେରିକୀ ବନ୍ଧୁ ଏକ ଘେନି ପରିଣୟେ
ମାଆଙ୍କୁ ବାନ୍ଧବ ହେଲେ ବିପନ୍ନ ସମୟେ ।
ଆସିଲା ସେ ଆମେରିକା; ବଢ଼ିଛି ସେଠାରେ;
ଇଣ୍ଡିଆ-ସଂପର୍କ କିନ୍ତୁ ଜାଗ୍ରତ ଆତ୍ମାରେ ।
ବିଶ୍ୱବ୍ୟାପୀ ରେଡ୍‌କ୍ରସ୍ ପୁଣ୍ୟ ଆନ୍ଦୋଳନେ
ଦେଇଛି ସେ ଯୋଗ । ଅଛି ସ୍ୱପ୍ନ ତାର ମନେ
ନିଜେ ଯିବ ଇଣ୍ଡିଆକୁ । ଖ୍ରୀଷ୍ଟ ନାମ ସ୍ମରି,
ଯେଉଁ ମାଟି ତା'ର ପିତୃ-ଅସ୍ଥି ଅଛି ଧରି,
ସେ ମାଟିରେ ପିତାଙ୍କର କାମ ଆରମ୍ଭିବ
ତା' ହିଁ କରି ପିତାଙ୍କର ଆତ୍ମାକୁ ତୋଷିବ ।

କହୁ କହୁ ନର୍ସ-ନେତ୍ର ହୁଅଇ ସଜଳ,
କରୁଣାର ନେତ୍ର ମଧ ହୁଏ ଛଳଛଳ;
ଚିତ୍ତ ଫେରେ ଅତୀତକୁ ବିଂଶବର୍ଷ ତଳେ
ଯାହା ଯାହା ଘଟିଥିଲା କଞ୍ଚା ବୟସରେ,
ମନେପଡ଼େ ଭୟାବହ କନଭୋକେଶନ,

ମନେପଡ଼େ ପାଦ୍ରୀ-ଦ୍ୱୟ-ଚିତ୍କାର ଗର୍ଜନ,
ତା'ପରେ ଆରେଷ୍ଟ, ଦୀର୍ଘ କାରାବାସ କାଳ
ଦୁଃଖେ ହେବା ପିତାମାତା ଇହଧାମୁଁ ପାର ।
ୱାଟସନ୍ ବି ପିତା ଏକ;—କନ୍ୟା ଠିଆ ଆଗେ,
ନେତ୍ରୁ ତା'ର ନୀର ଝରେ ପିତୃ-ଅନୁରାଗେ ।
ନିର୍ଦ୍ଦୋଷ, ଧାର୍ମିକ, ବିଜ୍ଞ, ନର-ସେବାକାରୀ
କି ମିଳିଛି କରୁଣାକୁ ସେ ଖ୍ରୀଷ୍ଟାନେ ମାରି ?
କେ ଇଂରେଜ ଦେଲା ତା'ର ବାପେ ଅପମାନ,
କାହାର ବାପାକୁ ମାରି ରଖିଲା ସେ ମାନ ?
ଦୁଇ ବାପ ସ୍ୱର୍ଗ-ପୁରେ, ନିରୀହ ଉଭୟେ,
ସ୍ନେହ-ଉତ୍ସ ନାହିଁ କେଉଁ ପିତାର ହୃଦୟେ ?
କନ୍ୟା ହୋଇ ମରାଇଛି ଆରେକ ପିତାରେ
କରୁଣାର ଚିତ୍ତ ପୂରେ ଲଜ୍ଜା ଓ ବ୍ୟଥାରେ ।
ମିସ୍ ୱାଟସନ୍ ପ୍ରତି ଭଗିନୀର ସ୍ନେହ
ଆସି ଅବ୍ୟକ୍ତରେ ଥରେ କରୁଣାର ଦେହ ।
ବାହାରେ ପ୍ରକାଶେ ଖାଲି,—''ମିସ୍ ୱାଟସନ୍,
ମୋ ଉପରେ ରହୁ ତବ ଇଣ୍ଡିଆ-ଗମନ ।
ରେଡ୍-କ୍ରସ ସୋସାଇଟି ସଭ୍ୟ ମତେ କର
ଆଜିଠାରୁ ହେଲ ତମେ ଭଗିନୀ ମୋହର ।''

କମଳ କରୁଣା ଦୁହେଁ ଦୁଇ, ଏକ କ୍ଲବେ
ସଭ୍ୟ ହେଉଁ କ୍ରମେ ସଖ୍ୟ, ପୀରତି ସଂଭବେ
ବହୁ ନର ନାରୀ ସାଥେ ବହୁତ ଦେଶର;
ସବୁଠାରୁ ସାର୍ବଭୌମ ନ୍ୟୁୟର୍କ ନଗର ।
ଆଫ୍ରିଦୀ, ଆଫ୍ରିକ, ଫ୍ରେଞ୍ଚ, ଚୀନ, ଜରମାନ,
ନିଗ୍ରୋ, ସ୍ପାନିଆର୍ଡ଼, ଗ୍ରୀକ୍, ରେଡ୍ ଇଣ୍ଡିଆନ୍,
ଭିନ୍ନ ଭିନ୍ନ ଉପବନୁଁ ପୁଷ୍ପ ସଂଗୃହୀତ
ହୋଇ ଯେହ୍ନେ ହୁଏ ରମ୍ୟମାଳା ବିରଚିତ,
ତେସନେ ଏ ଭିନ୍ନ ଦେଶୀ ଭିନ୍ନଧର୍ମୀ ନରେ
ନୂତନ ସୂତ୍ରରେ ଗୁନ୍ଥା ନ୍ୟୁୟର୍କ ନଗରେ ।
ମାନବିକ ସାମ୍ୟ, ମୈତ୍ରୀ ସେ ଦୃଢ଼ ସୂତ୍ରର
ଦୁଇ ଖିଅ—ତଳେ ନର, ଉପରେ ଈଶ୍ୱର ।

ସମଗ୍ର ମାନବ ମୁକ୍ତ, ମୁକ୍ତତର ନାରୀ
ଶାସ୍ତ୍ର ସମାଜର ଭୟ ଯାଇଛି ବାହାରି ।

ନ୍ୟୁୟର୍କରେ ସାର୍ବଜନନୀ ଜୀବନ । ନିଗ୍ରୋ ଆର୍ଟିଷ୍ଟ୍ ଓ ସ୍ପେନିସ୍ କବି

କରୁଣାରେ ପୁଚ୍ଛେ ଦିନେ କମଳ ଗପରେ-
''ଦେଖ କି ପ୍ରଭେଦ ନିଜ ଦେଶ, ଏ ଦେଶରେ ?''
କହଇ କରୁଣା, ''ଭିନ୍ନ ମୂଳୁଁ ମଥା ଯାଏ,
ମାନବିକ ଭିନ୍ନତାହିଁ ପ୍ରଧାନ ଦେଖାଏ ।
ଭାରତରେ ଛନ୍ତି ହିନ୍ଦୁ, ଜୈନ, ମୁସଲମାନ,
ବଂଗାଳୀ, ଓଡ଼ିଆ, ଶୂଦ୍ର, ବ୍ରାହ୍ମଣ, ଖ୍ରୀଷ୍ଟାନ;
ମନୁଷ୍ୟ ହିଁ ଛନ୍ତି ଆମେରିକା, ଇଂଲଣ୍ଡରେ
ନରତ୍ୱହିଁ ଆଗ କଥା, ଭିନ୍ନତା ପଛରେ ।''

ଦୁହିଁଙ୍କର ଯେତେ ଥିଲେ ବାନ୍ଧବ ବାନ୍ଧବୀ—
ଦୁଇଟି ପ୍ରଧାନ ତହିଁ,—ଜଣେ ଆଙ୍କେ ଛବି
କୃଷ୍ଣଚର୍ମ ଆଫ୍ରିକୀୟ । କବି ଅନ୍ୟ ଜଣେ;
ଜନ୍ମ ତା'ର ଇକ୍ୱେଟରେ ଅମାଜନ-ବଣେ ।
ନିଗ୍ରୋ ବନ୍ଧୁ ଗୀତପ୍ରିୟ, କବି, ନୃତ୍ୟ-ପଟୁ,
ଉଭୟଙ୍କୁ ଉଦ୍ଧାରିଛି ଆର୍ଥିକ ସଂକଟୁ
କମଳ ତା' କ୍ଷୁଦ୍ର ଦାନେ । କରୁଣାର ଛବି
ଆଙ୍କିଛି ଆର୍ଟିଷ୍ଟ୍ ବସି; ସ୍ପାନିୟାର୍ଡ଼ କବି
ଦମ୍ପତିକି ଲକ୍ଷ୍ୟକରି ଲେଖିଛି ସନେଟ୍;
କ୍ଲବେ, ଘରେ ତିନିଙ୍କର ପ୍ରାୟ ହୁଏ ଭେଟ ।
କବି ଦିନେ ଦିନେ ଆସି ସ୍ପାନିସ୍ ରନ୍ଧନ
କରୁଣାରେ ଦିଏ କହି,—ଭୋଗ୍ୟ-ଆସ୍ୱାଦନ ।
କନ୍ୟା ପାଏ ବନ୍ଧୁବର୍ଗ ମିଳିତ ଆଦର,
ନିଶ୍ଚିନ୍ତ ସେ ପାଇ ସ୍ନେହ ବିଭିନ୍ନ ଦେଶର;
ସମଗ୍ର ପୃଥିବୀ ସହଯୋଗ-ସୂତ୍ର ପାଇଁ
ଦେଇଛନ୍ତି 'ବିଶ୍ୱ-ମିତ୍ରା' ତା' ନାମ ରଖାଇ ।

ନିଉୟର୍କେ ତିନିବର୍ଷ କଟାଇଲା ପରେ
ଭାବୁଛନ୍ତି ଦୁହେଁଯାକ ଫେରିବାକୁ ଘରେ
ଦ୍ୱିତୀୟ-ପୃଥିବୀ-ଯୁଦ୍ଧ-ବାରୁଦର-ମେଘ
ଉଠି ନଭେ ସୃଜେ ବିଶ୍ୱେ ମହା ଉଦବେଗ ।
ଏଥିଅପି, ଚୀନ୍ ଆଉ ଚେକୋସ୍ଲୋଭାକିଆ
ଆକ୍ରମିତ ହେଲେ ଘେନି ସାମାନ୍ୟ କଳିଆ;

ଫାସିଷ୍ଟ ଆକ୍ରମଣ କରେ- ମହାଯୁଦ୍ଧର ଆରମ୍ଭ

ଦୁର୍ବଳ, ନିରପରାଧ ଏହି ଦେଶ ଜନେ
ଦୁର୍ଦ୍ଧାନ୍ତ ଫାସିଷ୍ଟ ଶକ୍ତିବର୍ଗ ଆକ୍ରମଣେ
ଯାଆନ୍ତି ଉଚ୍ଛନ୍ନ, ଭୋଗି ଅଶେଷ କଷଣ
ସଭ୍ୟତାକୁ ଧ୍ୱଂସକରେ ବୋମା-ବରଷଣ ।
କୁଟାପରି ପୋଡ଼ିଯାଏ ନଗର ଓ ପଲ୍ଲୀ
ଦୁର୍ମଦ ଫାସିଷ୍ଟ ତାହା ବର୍ଣ୍ଣେ କାବ୍ୟ ପରି ।
ଆକ୍ରମିତ ଜାତିପାଇଁ ଯେତେ ଚେଷ୍ଟା, ତହିଁ
କମଳ କରୁଣା ଦୁହେଁ ନିଶ୍ଚେ ଥିବେ ରହି ।
ଲେଖାଲେଖି, ବୋଲାବୋଲି ଅର୍ଥର ସଂଗ୍ରହ
ସବୁଥିରେ ଦୁହିଁଙ୍କର ସଂପର୍କ, ଆଗ୍ରହ ।
ଦେଖୁ ଦେଖୁ ଯୁଦ୍ଧ ବ୍ୟାପେ ସମଗ୍ର ବିଶ୍ୱରେ
ଜାପାନର ବଞ୍ଚକତା ପୂରାଏ ସମରେ
ଯୁକ୍ତରାଷ୍ଟ୍ରେ, ତେଣେ ମିଶେ ମହା ସୋଭିଏଟ୍;
ରଣାଙ୍ଗନେ ହୁଏ ଯେହ୍ନେ ସୁରାସୁର ଭେଟ ।
ଜଳେ, ଜଳ ତଳେ, ଭୂମେ, ପୁଣି ବିହାୟସେ
ସର୍ବତ୍ର ସଂଗ୍ରାମ,—ସବୁଠାରେ ଧ୍ୱଂସ ହସେ
କ୍ଷିତିରେ ତାଣ୍ଡବ୍ୟ କରି ବିଭୀଷିକାମୟ,
ମାନବ ସଭ୍ୟତା ହୁଏ ଚଞ୍ଚଳ ଅଥୟ ।
ଦେଶେ ଦେଶେ ଚାଲୁଅଛି ତରୁଣ ସଂଗ୍ରହ;
ହେବେ ବଳି, ମୃତ୍ୟୁ ଜିହ୍ୱା କରେ ଲହଲହ ।
ବିଜ୍ଞାନୀଏ ଲାଗିଛନ୍ତି କରିବେ ବାହାର
ଅଧିକୁ ଅଧିକେ ଯାହା ମନୁଷ୍ୟ-ସଂହାର
କରିବ ସେ ଅସ୍ତ୍ରମାନ । ଦେଶ ଦେଶ ଯାକ
ଭୋଗୁଛନ୍ତି ଜନ୍ତୁପରି ଦୁର୍ଭିକ୍ଷ-ବିପାକ ।

ଭାରତ-କଂଗ୍ରେସ ଦାବି କରୁଁ ସ୍ୱାଧୀନତା
ଚର୍ଚ୍ଚିଲ ସାମ୍ରାଜ୍ୟଲିପ୍ସୁ, ଦିଏ ଉତ୍ତର ତା'
—ନେହୁରୁ ଗାନ୍ଧିଜୀ ଆଦି ନେତାଙ୍କୁ ପଗଡ଼ି,
ଏମାନେ ଫାସିଷ୍ଟ-ବଂଧୁ ବୋଲି ପାଟିକରି ।
ସମଗ୍ର ଭାରତ ଉଠେ ଇଂରେଜ ବିଦ୍ରୋହେ,
କମଳର ଚିତ୍ତ ମଧ ପୂରିଉଠେ କୋହେ ।

ଭାରତୀୟ କଂଗ୍ରେସର ଯୁଦ୍ଧରେ ଅସହଯୋଗ

କରୁଣା ଅନ୍ତରେ ପୁଣି ହୁଏ ଉଜ୍ଜୀବିତ
ପୂର୍ବ ସଂନ୍ତ୍ରାସକ ଭାବ, ଇଂରେଜର ପିତ୍ତ
ନିଷ୍କାସିବ ଗୁଳିକରି,— ଇଂରେଜ ତା' ଅରି,
ଯେ ଚାହେ ଇଣ୍ଡିଆ ଥିବ କ୍ରୀତଦାସ ପରି ।
ଯୁଦ୍ଧରେ ସାହାଯ୍ୟ ମାନେ ଇଂରେଜେ ସାହାଯ୍ୟ,
ସାହାଯ୍ୟ ମାଗନ୍ତି ତେଣେ ଆକ୍ରମିତ ରାଜ୍ୟ ।
ଦ୍ୱିଧା-ବିଚଳିତ-ଚିତ୍ତ କିଛିଦିନ ଯାଏଁ
ଠିକ୍ ନ ପାରନ୍ତି କରି । କମଳ ଶୁଣାଏ
ଦିନେ ବହୁ ଚିନ୍ତାକରି—''କେବଳ ଦର୍ଶନ
କରିବା, ମଉନେ ମାନବର ନିର୍ଯାତନ,
ନିଜ ଲାଭ-କ୍ଷତି ସ୍ମରି, ଅମାନୁଷିକତା,
ତର୍କ କି ଜାଣିବ କେବେ ମାନବର ବ୍ୟଥା ?
କାଞ୍ଚନର ପଥପ୍ରାନ୍ତେ ବାଳିକା ଅନାଥ
କାନ୍ଦେ ବସି, ବିକ୍ଷତ ତା' ପଦ, ମୁଖ, ହାତ
ଜାପାନୀ ବୋମାର ଅଂଶେ; କେହି ନାହିଁ ତା'ର—
ବୋମାରେ ଯାଇଛି ତା'ର କୁଟୁମ୍ବ, ସଂସାର ।
ତା' କାରୁଣ୍ୟ ବୁଝିବ କି ରାଜନୀତି-ଫର୍ଦ୍ଦ
ଇତିହାସ ଭୂଗୋଳର ସୀମା, ସରହଦ ?
ଦେଶ, ଜାତି, ଧର୍ମ ଡେଇଁ ମାନବ-ହୃଦୟ
ଉଚିତ ନୁହେଁ କି ହେବା ତାହାରେ ସଦୟ ?
ଦେଶରୁ ମାନବ ବଡ଼; ମାନବର ଦୁଃଖ
ଡାକୁଛି ଆଶ୍ରୟ ପାଇଁ ହୋଇ ଲକ୍ଷ-ମୁଖ ।
ସଂଗ୍ରାମର ଦୁଇ ପକ୍ଷେ ମାନବ-ବେଦନା
ଅଧିକୁ ଅଧିକ ହେଉଥିବା ପଡ଼େ ଜଣା ।
ଦୁହେଁ ଚାଲ ସେବାକାର୍ଯ୍ୟେ ଦେବା ଯୋଗଦାନ
ଭୁଲିଯାଇ ଏ ମୁହୂର୍ତ୍ତେ ଦେଶର ସମ୍ମାନ ।''

ମାନବିକ ସେବା ପାଇଁ କରୁଣା-କମଳର ଯୁଦ୍ଧରେ ଯୋଗଦାନ

ଦୁହେଁ ଦେଲେ ଯୋଗ ଯୁଦ୍ଧେ; ତିଆଗେ କମଳ
ପ୍ରତିଭୂତ୍ୱ ଭାରତସ୍ଥ ସଂବାଦପତ୍ରର ।
ସେବାକର୍ମେ ଦୁହେଁ ପଠା ହୁଅନ୍ତି ଚାଇନେ
'ମିତ୍ରା'କୁ କୋଳାଡି ଯେତେ ଇଆଙ୍କି ସଇନେ ।

## [ ଦଶମ ସର୍ଗ : ଜନ୍ମମାଟି ]

ଛଅବର୍ଷ-ବ୍ୟାପୀ ଘୋର ପୃଥିବୀ-ସମରେ
ଶେଷେ ଏକ ଅଣୁ ଘେନି ପୂର୍ଣ୍ଣଚ୍ଛେଦ ପଡ଼େ ।
ବିଶ୍ୱଜୟୀ ସିକନ୍ଦର କୀଟ-କବଳିତ
ହେଲାପରି ଏ ବ୍ୟାପାର ଅଦ୍ଭୁତ ପ୍ରତୀତ ।
ଶିବାଶିଷୁଁ ଜାତ ହୋଇ ଯେହ୍ନେ ଭସ୍ମାସୁର
ଧାଏଁ ପୁରେ ପୁରେ ଛୁଇଁବାକୁ ଶିବ-ଚୂଳ—
ତେସନେ ବିଜ୍ଞାନ ଏହି ମନୁଷ୍ୟ-ସୃଜିତ,
ଭୂତ ପରି ନରେ ଆଜି କରେ ଆତଙ୍କିତ ।
ଅନ୍ତରେ ରହିଛି ନର, ଶିଶୁ ଅସଂଯତ,
ସଭ୍ୟତାଟା ଥିଏଟରେ ରାଜ-ବେଶବନ୍ତ
ଦୀନ ଅଭିନେତୃ ଅଙ୍ଗେ; ବାସ୍ତବକ୍ଷେତ୍ରରେ
ତେଣୁ ସଭ୍ୟତାର ମୁଖା ଫିଙ୍ଗି ଦେଇ ନରେ
ଶିଶୁ ପରି ଲଢୁଛନ୍ତି ଗୋଡ଼ି ମାଟି ପାଇଁ,
ବିଜ୍ଞାନ ଦେଉଛି ତାଙ୍କୁ ଫୋପଡ଼ ଯୋଗାଇ ।
କେ ଜାଣେ ଧରାର ଏହି କ୍ଷୁବ୍ଧ ଶଇଶବ
ୟୁଦ୍ଧାବସାନ
କଟି ହେବ ସଭ୍ୟତାର ଯୌବନ ଆରମ୍ଭ,
ଯେବେ ନରନାରୀ ଖାଲି ଭୁଂଜିବେ ଏ ଧରା
ବିଜ୍ଞାନ ଥୋଇବ ଖାଲି ଉପଚାର ପରା !
ବିଜ୍ଞାନ କରଇ କିନ୍ତୁ ମନୁଷ୍ୟେ ଅଜ୍ଞାନ
ନିଜ ଶକ୍ତି ଅହଙ୍କାରେ ଭୁଲେ ସେ, ମହାନ
ଯେ ଶକ୍ତି ରହିଛି ପୂରି ରେଣୁ ରବି ଯାଏ
କୀଟୁଁ ବିଶ୍ୱ-ବ୍ରହ୍ମାଣ୍ଡକୁ ଯେ ଶକ୍ତି ବଞ୍ଚାଏ ।
ନ ଦେଲେ ତାହାକୁ କୃତଜ୍ଞର ନମସ୍କାର
ଭୁଷୁଡ଼ିବ ମୂଳ-ହୀନ ନର ଅହଂକାର ।

ବହୁ ବର୍ଷ ଦୁଇ ବନ୍ଧୁ ରହି ପ୍ରବାସରେ
କମଳ କରୁଣା ଏବେ ଫେରନ୍ତି ସ୍ୱଘରେ ।
କମଳର ବେଶଭୂଷା, ଚିନ୍ତା, ଦେହ, ମନ

ଅନେକ ହୋଇଛି ବୈଦେଶିକ ଭାବାପନ୍ନ ।
ନାହିଁ ପୂର୍ବ ମୁହଁ-ଚୋରା ନିରୀହ କମଳ
ଯୁଦ୍ଧ କରିଅଛି ବହୁ ଅଦଳବଦଳ ।
ସେ ଏବେ ପ୍ରଚୁର କ୍ଷିପ୍ର, ଇଉରୋପବେଶୀ,
ସୁନ୍ଦର ଇଂରାଜୀ କହେ, ତୈଳଶୂନ୍ୟକେଶୀ ।
ଅନ୍ତରରେ ଦୁହିଁଙ୍କର ଆହୁରି ବଦଳ,—
ଦେଶର ନୁହନ୍ତି ଆଉ- ସମଗ୍ର ବିଶ୍ୱର ।
ସବୁ ଜାତି ସବୁ ଦେଶେ ଅଛନ୍ତି ବାନ୍ଧବେ
ସମଗ୍ର ଧରାର ବ୍ୟଥା ହୃଦ ଅନୁଭବେ ।

| କମଳ କରୁଣାର ବିଶ୍ୱ-ମାନବିକତା; ଭାରତ ଛାଡ଼ି ଯିବାର ପ୍ରସ୍ତାବ |
|---|

ଚାଇନାରେ ଶତ ଶତ ଯୁଦ୍ଧ ଶିଶୁଙ୍କର
ମାତା ହୋଇ କରୁଣାର କୋମଳ ଅନ୍ତର
ଲଭିଛି ପ୍ରସାର; କ୍ଷୁଦ୍ର ଦେଶ, ଗୋଷ୍ଠୀ ଭାଙ୍ଗି
ଦେଶ-ଅନୁରାଗୀ ନୋହି, ଜନ-ଅନୁରାଗୀ ।
ଭାବୁଛନ୍ତି କିଛି କାଳ ରହି ସ୍ୱଦେଶରେ
ପୁଣି ଯିବେ କନ୍ୟା ସାଥେ ଦୂର-ଦୂରାନ୍ତରେ,
ଚର୍ମ-ନିର୍ବିଶେଷେ ଦୁଃଖ ନେବେ ମାନବର,
କନ୍ୟାକୁ କରିବେ ଯେହ୍ନେ ଯୋଗ୍ୟା ତା' ନାମର ।

ଭାରତରେ ପୂର୍ବ ପରି ଲାଗିଛି ତାମସା,
କ୍ଷୀଣ ଗାନ୍ଧି ଓଷ୍ଠୁ ଫୁଟେ ପ୍ରଫେଟ୍‌ର ଭାଷା*
ସତ୍ୟ, ପ୍ରେମ, ବିଶୁଦ୍ଧତା ଅହିଂସା ପ୍ରଚାରି ।
କଂଗ୍ରେସୀଏ ଶୁଣନ୍ତି ତା କରେ ମସ୍ତକ ଟୁଙ୍ଗାରି,
ଗାନ୍ଧିନେତ୍ର ପଛେ, କିନ୍ତୁ, ଖଦୀବସ୍ତ୍ର ତଳେ
ସମସ୍ତ ଭଣ୍ଡାମି, ମିଥ୍ୟା, ଅତ୍ୟାଚାର ଚଳେ ।
କମଳ ଭାବଇ, ଖାଲି ଖଟିଲେ ଜିଅଲ
ଆଶା ଯଦି ହିଂସ୍ର, ଠକ ହୋଇବାର ଭଲ,
ସବୁଠୁଁ ନମସ୍ୟ ତେବେ ସର୍କସର ପ୍ରାଣୀ
କାରାବାସ ତାଙ୍କ ସାରା ଜୀବନଟା ଜାଣି ।
ଦେବତ୍ୱ ଫୁଟଇ ଯେବେ ଲାଠିର ପ୍ରହାରେ
ଦେବତା ଅଛନ୍ତି ବନ୍ଧା ଗୁହାଳେ-ଗୁହାଳେ ।
ଯା' କିଛି ଭାରତେ ହୋଇଅଛି ଜାଗରଣ
ତା' କେବଳ ଜଣକର ଅଦ୍ଭୁତ ସାଧନ

---

*ପ୍ରଫେଟ୍— ଇଂରାଜୀ ଶବ୍ଦ; ଅର୍ଥ—ଧର୍ମପ୍ରଚାରକ, ଦିବ୍ୟଦ୍ରଷ୍ଟା ।

ଅଟେ ସେ ଈଶ୍ୱର-ପୁତ୍ର, ମାନବ-ଶିକ୍ଷକ,
ସଭ୍ୟତାର ଅନ୍ଧକାରେ ପ୍ରଦୀପ-ରକ୍ଷକ,
ସେହି ସେ ମହାତ୍ମା ଗାନ୍ଧି ପତିତପାବନ
ପତିତ ଭାରତେ ଆଣିଅଛି ଜାଗରଣ ।

ମାତ୍ର ନବ ବର୍ଷାଧାରା, ନବ ଶସ୍ୟ ସାଥେ
କୋଟି କୋଟି ଘୃଣ୍ୟ କୀଟ ବିଲେ, ଗଛେ, ବାଟେ
ଜାତ କଲା ପରି, ଦେଶେ ଗାନ୍ଧି-ଆନ୍ଦୋଳନ
ଜାତି-ଜାଗରଣ ସଙ୍ଗେ କରିଛି ସୃଜନ
ଛଦ୍ମ-ମୁଖ, ଖଦ୍ଦଡ଼ିତ କର୍ମୀଙ୍କର ଥାଟ
ଦେଶପ୍ରେମ ହେଲା ଯାଙ୍କ' ଜୀବିକା ଏକାନ୍ତ ।

ଦେଶ ଓ ବିଶ୍ୱ,
ହିଂସା ଓ ଅହିଂସା,
ଜେନେରାଲ୍ ମର୍ଫି,

ତ୍ୟାଗର ପତାକା ଉଡ଼ିଆଇ ସମ୍ମୁଖରେ
ପଦ-ଭୋଗ-ଅଁା ଜଳୁଥାଏ ଯା' ଅନ୍ତରେ ।
କମଳ ଭାବଇ ପୁଣି,—ଏୟାଇ ତ ଘଟେ,
ଶିଷ୍ୟଙ୍କର ଅପକର୍ମେ ମରନ୍ତି ପ୍ରଫେଟେ ।

ମନେପଡ଼େ ଜେନେରାଲ୍ ମର୍ଫି ଚାଇନାରେ,
ନିଉଜିଲାଣ୍ଡର ଲୋକ,—ସତ୍ୟ, ସାଧୁତାରେ,—
ଗାନ୍ଧି ଶିଷ୍ୟ ସଂଘେ ଯା'ଙ୍କ ନାହିଁ ପଟାନ୍ତର
ଯଦି ବା ହାତରେ ତାଙ୍କ ସଦା ରିଭଲ୍‌ଭର ।

ଏକାନ୍ତ ନିରାମିଶାଷୀ, ଧର୍ମପରାୟଣ,
ଦିନର ପ୍ରଥମ କର୍ମ ଈଶ୍ୱର-ଭଜନ;
ଶ୍ରମେ ତାଙ୍କ କ୍ଳାନ୍ତି ନାହିଁ, କର୍ତ୍ତବ୍ୟହିଁ ଧର୍ମ
ସୁକଠୋର ଡିସିପ୍ଲିନ୍, ସୁକୋମଳ ମର୍ମ ।

ଗୀତା ସୁପଠିତ, ବାଇବେଲ ପକେଟରେ
ଥାଏ ତାଙ୍କ ସଖାରୂପେ ଘରେ ବା ସମରେ ।
ବିବାହ ନାହାନ୍ତି କରି,—ବୃଦ୍ଧାମାତା କାଳେ
ଅନାଦୃତା ହେବ ବୋଲି ବଧୂର ସଂସାରେ ।
ଶୁକ୍ଳକେଶ ହେଲେ ଆସି ମାତା ସୌଖ୍ୟ ପାଇଁ,
କେଉଁ ଗାନ୍ଧିଚେଲା କରେ ଏ ତ୍ୟାଗ ବଡ଼ାଇ ?
ବହୁଦିନ, ବହୁ ରାତ୍ରି କଟାଇ କମଳ
ତାଙ୍କ ସଙ୍ଗେ, ଭାଗୀ ହୋଇ ତାଙ୍କ ବନ୍ଧୁତ୍ୱର,

ଭୁଲିଅଛି ହିଂସା, ଅହିଂସାର ବ୍ୟବଧାନ,
ଘୃଣ୍ୟ ତାହା, ପ୍ରତାରଣା ଯହିଁ ପାଏ ସ୍ଥାନ ।
ହିଂସାରେ ତା' ସ୍ଥାନ ନାହିଁ, ଅଛି ଅହିଂସାରେ,
ପ୍ରତାରଣା ଉପରେ କି ରାଷ୍ଟ୍ର ଚଳିପାରେ ?
ଏହିପରି ନାନା କଥା ଭାବି ମନେ ମନେ
ବିଚାରନ୍ତି ପୁଣି ବାହାରିବେ ବା ଭ୍ରମଣେ,
ପ୍ରବାସ ହୋଇବ ଘର, ପର ଦେଶୀ, ଭାଇ
ପ୍ରାଣ ଦେବେ ବସୁଧାକୁ ଜନ୍ମମାଟି ଧାୟି ।

ଏ ସମୟେ ପତ୍ର ଏକ ହୁଏ ହସ୍ତଗତ
ଓଲଟାଇ ଦିଏ ତାଙ୍କ ପ୍ରସ୍ତାବ ସମସ୍ତ ।

**ଗାଆଁର ମାଳତୀ ନାନୀର ପତ୍ର: ବିଶ୍ୱମାନବିକତାରୁ ଜନ୍ମମାଟିକୁ ପ୍ରତ୍ୟାବର୍ତ୍ତନ**

ବହୁସ୍ଥାନ ଘୂରି ଘୂରି ଆସିଅଛି ପତ୍ର
ଲଫାପାରେ ଡାକ-ଚିହ୍ନ ମରା ଯତ୍ର ତତ୍ର ।
ନାରୀ ହସ୍ତାଙ୍କିତ ପତ୍ର,—''କମଳ ଭାଇନା,
ଜାଣେ ନାହିଁ ତମର ମୁଁ ମନେ ଅଛି କି ନା ।
ମୁଁ ଇ ସେ ମାଳତୀ, ତମ ପିଲାବେଳ ସାଥୀ
ଖେଳୁଥିଲେ ଗ୍ରାମଦାଣ୍ଡେ ଧୂଳିଘର ପାତି ।
ଯାଉଥାଉ ସାଙ୍ଗ ହୋଇ ଗ୍ରାମ ଚାଟଶାଳେ
ଛୁଟି ହେଲେ ବୁଲୁଥିଲୁ ଗାଆଁ ତୋଟାମାଳେ ।
ଛୁଞ୍ଚିପତ୍ର-ଦୁଧ ବୋଉ ବାଢ଼ି ନିଜ କରେ
ଦୁହିଁଙ୍କୁ ଖୁଆଇଥାଏ ଏକ ବାସନରେ ।
ଏକ୍ଷଣି ଚଇତ୍ର ମାସ, କଞ୍ଚା ଆମ୍ବ ଗନ୍ଧେ—
ଲୁଚି ଖରାବେଳେ ସେବେ—କେ ଦେଖିବ ପଛେ—
ତୋଟାରୁ ତୋଟାରେ ପଶୁଁ, ଡେଇଁ କଣ୍ଟାବାଡ଼;
ମତେ ଦେଇଥାଅ ଘରୁ ଲୁଣ ନେବା ଭାର—
ଲୁଣ ଘେନି ଖଟା ଆମ୍ବ ଖାଉଁ ମହାନନ୍ଦେ,
ବିଚାର ଚାଲଇ ପୁଣି ଚଉର୍ଯ୍ୟ ସମ୍ବନ୍ଧେ
ଆଗାମୀ ମଧ୍ୟାହ୍ନ କାଳେ । କମଳ ଭାଇନା,
କାଲି ପରି ଲାଗେ ସବୁ, ମନେଅଛି କି ନା
ତମର ସେ ସବୁ କଥା,—ବଡ଼ଲୋକ ଘରେ
ବିଭାହେଲ; ବୁଲିଗଲ ଦେଶ-ଦେଶାନ୍ତରେ,
ବଡ଼ଲୋକ ତମେ ଏବେ, ଗାଉଁଲି ମନିଷ

ଆମ ପରି ତମ ଆଖେ ହେବେ କି ଦିରିଶ ?
ହେଉଁ ଅତି ରୋଗଗ୍ରସ୍ତ, ଅତି ନିଆଶ୍ରିକ
ନାହିଁ ଜାଣି କା' ଆଗରେ ମାଗିବି ମୁଁ ଭିଖ,
କହିବାରୁ ତମ ନାମ ଗ୍ରାମେ କେତେଜଣ,
ସରମରେ କରୁଛି ମୋ ଚରିତ ବର୍ଣ୍ଣନ
ତମ ଆଗେ ଏ ପତ୍ରରେ । ସେଦିନ ମାଳତୀ
ନାହିଁଛି ଭାଇନା ଆଉ; ବାପାର ସଂପତ୍ତି
ତମକୁ ଅଜଣା ନାହିଁ; ଧନ ଦେଖି ନନା
ଦେଇଥିଲେ ବିଭା ମତେ—ଭାଗ୍ୟ ତ ମୋ କଣା,
ଏକ ପାଖେ ସୁଖ ଆସି ଅନ୍ୟେ ବହିଯାଏ;
କେତେ ଦିନ ଅଭାଗିନୀ ସ୍ୱାମୀସୁଖ ପାଏ ?
ଝିଅ ମୋର ଗର୍ଭେ ଅଛି ସ୍ୱାମୀ ଗଲେ ଛାଡ଼ି
ବରଷକେ ଭାଇମାନେ ହେଲେ ବାଡ଼ାବାଡ଼ି ।
ମତେ କେ ରଖିବ ଆଉ ? ବିଳପି ବିଳପି
ଆସିଲି ମୁଁ ବାପଘରେ ଦୁର୍ଗା ନାମ ଜପି ।
ନନା ବଂଚିଥିଲାଯାଏଁ ଯାଉଥିଲା ଚଳି,
ନନା ତ ମଲେଣି, ଦୀର୍ଘ ପାଞ୍ଚ ବର୍ଷ ଧରି,
ଭାଇ-ଭାଉଜର ଘର,—କାନିରେ ମୋ ବନ୍ଧା
ଝିଅ ପୁଣି; କରୁଥିଲି ଯାହା କାମଧନ୍ଦା,
ଫିଟାଉ ନ ଥିଲେ କେହି ମୁହଁ ଜୋର୍ କରି,
ବର୍ଷେ ହେଲା ବାତରୋଗ ଗ୍ରାସେ କାଳପରି,
କାମ ନାହିଁ ପାରେ କରି—ରୋଗର ଯନ୍ତ୍ରଣା;
ବସାଇ କରିବ କିଏ ଦୁହିଁଙ୍କ ଅର୍ଚ୍ଚନା ?
ସେଦିନର ସୁକୁମାରୀ ମାଳତୀ ଭଉଣୀ
ଆଜି ଅନ୍ୟ ପିଣ୍ଡାତଳେ କାନ୍ଦେ ଦୁଃଖ ଗୁଣି,
ଆଜି ସେ ଅବସ୍ଥା ହେତୁ ଅତି ଅଲକ୍ଷଣୀ,
ଦହିରୁ ନ ଉଠେ ଯଦି ପ୍ରଚୁର ଲବଣି,
ଘରେ କା'ର ହେଲେ ଜର, ହଜିଲେ ବାଛୁରୀ,
ଡାକିନୀ ମାଳତୀ ଯୋଗୁଁ ବୋଲି ପଡ଼େ ହୁରି ।
ଝିଅଟା ମୋ ଖଟି ମରେ, ବଂଚେ ଅଇଁଠାରେ
ବିନା ଦୋଷେ ମାଡ଼ଖାଏ ମୋ'ରି ସାମନାରେ

ମୁଁ ତ ଉଠି ନାହିଁ ପାରେ, ମରିବି ଏଥର
ଝିଅପାଇଁ ଖାଲି ମୋର ଲେଖୁଛି ପତର ।
ତା' ପାଇଁ ବ୍ୟବସ୍ଥା ଯଦି କିଛି ପାର କରି
ଆନନ୍ଦେ ମରନ୍ତି ମୁହିଁ ତମ ନାମ ଧରି ।
କେ ଚଣ୍ଡାଳେ ପୋଡ଼ାଇଲେ ତବ ବାସ୍ତୁଭିଟା
ସେଇ ବୋଧେ ଥିଲା ଜଗନ୍ନାଥଙ୍କର ଇଚ୍ଛା,
ତମେ ଗଲ ବିଦେଶକୁ, ରମା ସୁଖେ ରହେ,
ଚଣ୍ଡାଳଙ୍କୁ ସେହିପରି ଦୁଃଖ ଦୈନ୍ୟ ଦହେ ।
ସେତେବେଳେ ଶାଶୁଘରେ;—କେତେ ମୁଁ କାନ୍ଦିଲି,
କେମନ୍ତେ ଜାଣିବ ତମେ, ଦୂରେ ମୁଁ ଥିଲି ।
ଗାଆଁକୁ କି ଆସିବନି ? ଦେଖିବୁନି ଆମେ
ବୋହୂଙ୍କୁ ତମର, ପୂର୍ବସାଥୀ ସବୁ ଗ୍ରାମେ ?
କିଏ ସିନା କଲା ଦୋଷ, କି ଦୋଷ ଗାଆଁର ?
ଶୁଣୁଛି ମୁଁ କରୁଅଛ ବହୁ ଉପକାର
ବହୁ ଲୋକଙ୍କର, ନିଜ ଗାଆଁ କକା ଭାଇ
ନ ପାଇବେ ତମଠାରୁ କିଛିହିଁ କିପାଇଁ ?
ପଡ଼ିଛି ମୁଁ ପିଣ୍ଡାତଳେ,—ସତେ ସରସ୍ୱତୀ
କଣ୍ଠେ ତବ ବିଜେ କରି ବଳାଇବେ ମତି,
ମାଳତୀ ତମକୁ ଥରେ କରିବ ଦର୍ଶନ
ଶେଷ ହେବ ମୋ ରାଧାର ଅଇଁଠା-ଭକ୍ଷଣ ।''

କମଳ ନିର୍ବାକ ରହେ ଦୁଇ ଦିନ କାଳ
ପତ୍ର ପଢ଼ି । ବ୍ୟସ୍ତ ପ୍ରଶ୍ନ ଯେତେ କରୁଣାର
ମସ୍ତକ ଟୁଂଗାରି ଖାଲି ମଉନେ ଉତ୍ତରେ,
ଶେଷେ ଦିଏ ପତ୍ରଖଣ୍ଡି କରୁଣାର କରେ ।
ପତ୍ର ପଢ଼ି ମୃଦୁ ହସି କରୁଣା ଭାସଇ;
''ଏତେ ବ୍ୟସ୍ତ ହେବାର ବା ଏଥି କି ଅଛଇ ?''
କମଳ କହିଲା, ''ଯିବି ଗ୍ରାମେ, ମୁଁ ବିଚାରେ,
କଥା ଅଛି ଖାଲି ତମ ମାଆ-ଝିଅଠାରେ ।
ତମେ ଦିହେଁ ସେଠି ଯାଇ ଚଳିବ କିପରି
ସେଇ କଥା ଭାବେ ବସି । ଦଳୁଆ ପୋଖରୀ—
ସେଇଠାରେ ମାଆ ଝିଅ କରିବ ସ୍ନାହାନ

ଗ୍ରାମ୍ୟ ନାରୀଙ୍କର ଦଳେ । ହେବ ଖାଦ୍ୟ, ପାନ
ଗାଉଁଲି ରୀତିରେ ଯାହା । ମାଟି ଚାଳଘରେ
ଶୋଇବ ମସିଣା ପାରି । ସଂଧ୍ୟା ପରେ ପରେ
ଆସିବେ ହୁଙ୍କାରି ଆନୋଫିଲିସ୍‌ର ପଲ
ବିଷାକ୍ତ ଦଂଶନେ କରୁଥିବେ କଲବଲ ।
ଜାଣି ଜାଣି ତୁମକୁ ମୁଁ ନେବି ସେଇ ସ୍ଥାନେ ?
ମର୍ମ ତାର,—ନେଇଯିବା ଦୁହିଁକୁ ଶ୍ମଶାନେ ।
ତୁମେ ଦୁହେଁ ରହ ଏଥି । ମୁଁ ଯିବି ପଲ୍ଲୀରେ—
ସେଇ ଶେଷ କର୍ମସ୍ଥାନେ । ମୋ ଜନ୍ମମାଟିରେ
ବୁଣିବି ମୋ ବିଶ୍ୱ-ପ୍ରଦକ୍ଷିଣ-ଅଭିଜ୍ଞତା,
ସହରେ ରହିଲେ ହେବ ଅକୃତଜ୍ଞ କଥା ।
ନିଜ ଦେଶ ଛାଡ଼ି ଯଦି ଯାଉଁ ଦେଶାନ୍ତରେ
ସ୍ୱଦାୟିତ୍ୱ ଦେବା ହେବ ଅପର ହସ୍ତରେ ।
ପଲ୍ଲୀରେ ରହେ ମୋ ଜାତି,—ପ୍ରତୀକ ମାଳତୀ,
ନାହିଁ ବାସ, ନାହିଁ ଧନ, ଚିକିତ୍ସା ବା ପଥି;
ସଭ୍ୟତା ଶୋଷଇ ତା'ର ଶୋଣିତ ନିରତେ
ସହସ୍ର ଦୁଆର ଦେଇ । ତେଣୁ ଗାନ୍ଧିମତେ
ଭାରତ-ସ୍ୱରାଜ୍ୟ ଅର୍ଥ ପଲ୍ଲୀ-ସଂଜୀବନ,
ଅର୍ଥହୀନ ବାକି ଯେତେ ବାକ୍ୟ ଉଚ୍ଚାରଣ ।''

ସେଦିନ ନିଶୀଥେ ଯାଇ କମଳ-ଶୟନେ
କରୁଣା କହଇ କଥା ବିମର୍ଷ ବଦନେ,
''ଜୀବନର ଶେଷପାଦେ ଏଇ ଅପମାନ,—
ତମର ମୋହର ହେବ ଭିନ୍ନ ଭିନ୍ନ ସ୍ଥାନ !
ଭୁଲିଗଲ ଏକ ରାତ୍ରେ ବିଂଶ ବର୍ଷ ତଳେ
କଟକରେ ବାବାଙ୍କର ଗୃହଛାତ ପରେ,
ଠିକ୍ ଏଇ କଥା କହି ଦେଉଥିଲ ବାଧା;
ପାରିଲ କି ? ସେଦିନର କୋମଳାଙ୍ଗୀ ରାଧା
ହୋଇଅଛି ବର୍ଷୀୟସୀ । ତେଣୁ ଏ କଳ୍ପନା,
ନୁହେଁ କି ଗୋ ?''

ଉଠିପଡ଼ି, ହୋଇ ବ୍ୟସ୍ତମନା,
କମଳ ଆଶ୍ଳେଷେ ଘେନେ ପ୍ରିୟା କରୁଣାରେ

ବୋଧି, ନିଜ କରେ ପୋଛେ ତା'ର ଅଶ୍ରୁଧାରେ ।
ପ୍ରାୟ ସପ୍ତାହକ ପରେ ହୁଏ ବିଘୋଷିତ
ଦୁଇ ଲକ୍ଷ ମୁଦ୍ରା କରିଛନ୍ତି ସମର୍ପିତ
ଦୁରିତର ସେବାପାଇଁ ରକ୍ତ-କ୍ରୁଶ ପାଶେ
କମଳ-କରୁଣା । ରଖି ଆପଣା ସକାଶେ
କିଛି ସ୍ୱଅର୍ଜିତ, —ଗ୍ରାମେ ଚଳିଯିବା ପାଇଁ
ପୈତୃକ ଧନର କିଛି ଅବଶେଷ ନାହିଁ ।
ଟେଲିଗ୍ରାମେ ଡକାହେଲେ ମିସ୍ ବାଟ୍‌ସନ୍
'ମିତ୍ରା'ର ସେ କରାଇଲେ ପାଠନ, ରକ୍ଷଣ,
ମିସନ୍‌ର କାର୍ଯ୍ୟ ସାଥେ । ମୁମୂର୍ଷୁ ମାଳତୀ
ଦେଖେ ଦିନେ, ଦେବୀ କେହି ଦେହ ଆଉଁସନ୍ତି ।

> ରେଡ୍‌କ୍ରସକୁ ବିରାଟ ସଂପତ୍ତି ଦାନ

## [ ଏକାଦଶ ସର୍ଗ : ଶେଷ ଦୃଶ୍ୟ ]

ଗ୍ରାମ ପ୍ରାନ୍ତେ ନଦୀକୂଳେ 'କରୁଣା-ଆଶ୍ରମ'
କମଳ କରିଛି ଠିଆ, ସୁଖ ଯହିଁ ଶ୍ରମ;
ଯହିଁ ମୃତ୍ ଯନ୍ତ୍ର, ଆଉ ହସ୍ତ ମାନବର,
ପ୍ରକୃତି, ତା-ଶତ୍ରୁ ନର, ପଲ୍ଲୀ ଓ ନଗର,
ଛାଡ଼ି ପରିଚିତ ପାରସ୍ପରିକ ବିରୋଧ,
ପରସ୍ପର ସହଯୋଗେ କରିଛନ୍ତି ରୋଧ
ପଲ୍ଲୀର ଦୁର୍ଗତି-ପଥ, ଦୈନ୍ୟ ଜନତାର;
ପଲ୍ଲୀପଥେ ଲକ୍ଷ୍ମୀ ପୁଣି କରନ୍ତି ବିହାର ।
ପ୍ରମତ୍ତ ପଦବୀ-ରଣେ ବରେଣ୍ୟ ନେତାଏ,
ନାନା 'ଦଳେ' ଜାତି-ଜଳ ଛାଇହୋଇଯାଏ,
କଳା ଶିଳ୍ପ ସାହିତ୍ୟେ ବି ପଶେ ଆସି ଦଳ,
ନାହିଁ କାହିଁ, ପୋଷେ ହେଲେ ସଲିଳ ନିର୍ମଳ ।
ରାଜତ୍ୱ କରଇ ଦେଶେ ମିଥ୍ୟା, ମିଥ୍ୟାଚାର,
ପ୍ରତିଭା ମୂର୍ଖକୁ କରେ ଶତ ନମସ୍କାର;
ଦେଶେ ଯେବେ ଚାଲିଅଛି ଏହି ଅଭିନୟ
କମଳ ତପସ୍ୟା କରେ ଅକ୍ଷୁବ୍ଧ-ହୃଦୟ,
ଦୂର ତା'ର ପଲ୍ଲୀକୋଳେ,—ରୋଗ ପ୍ରପୀଡ଼ିତ,

> ଦେଶରେ କ୍ଷୁଦ୍ର ସ୍ୱାର୍ଥର ତାଣ୍ଡବଲୀଳା । କମଳର ନୀରବ ସାଧନାପୀଠ— କରୁଣା କଲୋନି ।

ଖବରକାଗଜୁଁ ଦୂର, ସଭ୍ୟତା-ବର୍ଜିତ,
ଈଶ୍ୱର-ବର୍ଜିତ ସ୍ଥାନେ । ଦୀର୍ଘ ପାଞ୍ଚ ବର୍ଷ
କଟାଇଛି ନୀରବରେ, ନିଜ ଶୋକ, ହର୍ଷ
ମିଶାଇ ଦୁର୍ଗତ ପଲ୍ଲୀଜନ ସୁଖ-ଶୋକେ
ଆଶ୍ରୟ ସ୍ୱରୂପ ହୋଇ ତାଂକ ରୋଗେ, ଭୋଖେ ।
କରିଅଛି ଆସ୍ତେ ଆସ୍ତେ ବିବିଧ ସଂସ୍କାର
ଚାଷେ କରିଅଛି ସହଯୋଗର ପ୍ରଚାର,
କୁଟୀରେ ଫେରିଛି ଶିଳ୍ପ, ଯାଇଛି ଆଳସ୍ୟ;
ନିଶା, ନୋହି ପ୍ରଭୁ ଗ୍ରାମେ, ହୋଇଅଛି ବଶ୍ୟ ।
ହୋଇଅଛି ଖୋଲା ଗ୍ରାମେ ଶିଳ୍ପ ବିଦ୍ୟାଳୟ,
ବାଳକ-ବାଳିକାଙ୍କର ଅଙ୍ଗୁଳି-ନିଚୟ
ଶୈଶବରୁ ଜ୍ଞାନ ସାଥେ କରେ ଧନାର୍ଜନ
ହାତ-ପାଇଟିକି ଘୃଣା ହୋଇଛି ବର୍ଜନ ।
ସାରା ଗ୍ରାମ ପରିଷ୍କୃତ, ଆବର୍ଜନା ଯେତେ
ଦୂରେ ଖତ ହୋଇ, ଶସ୍ୟ ବଢ଼ାଉଛି ଖେତେ ।
ଶ୍ରାଦ୍ଧେ ବା ବିବାହେ ନାହିଁ ବୃଥା ଅପଚୟ,
ପାଖକେ ଆଖଡ଼ା, ପାଖେ ସଂଗୀତ-ନିଳୟ
ସେଇ ଅର୍ଥେ ଠିଆ ଗ୍ରାମେ; ଗ୍ରାମ ଟୋକାଦଳ
କରନ୍ତି ସଙ୍ଗୀତେ, ଖେଳେ ସର୍ବତ୍ର ମୁଖର ।
କୃଷି ସାଥେ ଗ୍ରାମେ ଅନ୍ୟ ଯାହା କାରବାର
ସବୁ ହୁଏ ଯୌଥ ଭାବେ; ସୌଖ୍ୟର ପ୍ରସାର
ହୁଏ, ଫଳେ ଘରେ ଘରେ । ଗ୍ରାମ ନାରୀଗଣେ
କଳିର ସମୟ ଏବେ ଦିଅନ୍ତି ସୀବନେ,
ଅବା ଲାଗି ହସ୍ତଶିଳ୍ପେ କରନ୍ତି ଅର୍ଜନ,
ସଞ୍ଚିତ ଯା' ହୁଏ ବ୍ୟାଙ୍କେ । ଆନନ୍ଦବର୍ଦ୍ଧନ
କରୁଛନ୍ତି ଘରେ ଦାଣ୍ଡେ ସୁସ୍ଥ ଶିଶୁଦଳ
ମୁଖ ତାଙ୍କ ହସହସ ନିର୍ମଳ ଉଜ୍ଜ୍ୱଳ ।
ମନୁଷ୍ୟର ହସ୍ତ ଯାହା ନାହିଁ କରିପାରେ
ଉପୁଜୁଛି ତାହା କ୍ଷୁଦ୍ର କ୍ଷୁଦ୍ର ଯନ୍ତ୍ରଶାଳେ,
ନର-ଦାସ ହୋଇ ଯନ୍ତ୍ର ଯୋଗାଏ ମାଧୁର୍ଯ୍ୟ
ନାହିଁ କେ ବେକାର, ନାହିଁ ଦ୍ରବ୍ୟ ଅପ୍ରାଚୁର୍ଯ୍ୟ ।
କରୁଣା, ଏ ରଙ୍ଗମଞ୍ଚେ ଅଧିଷ୍ଠାତ୍ରୀ ଦେବୀ

ଅତରାଳେ ଥାଏ ଶତ ରୋଗୀ ଭୋଖୀ ସେବି,
କମଳର ଦୁଇ କରେ ସେହି କିନ୍ତୁ ବଳ,
ତା'ରି ଗୁଣେ ବଶ ଏଥି ନରନାରୀଦଳ,
ଗ୍ରାମଟିକୁ କହନ୍ତି କେ 'କରୁଣା-କଲୋନି'
ନାରୀସ୍ପର୍ଶେ ଅପଚରା ଆଜି ଶୁଭଯୋନୀ ।

ଦୀର୍ଘ ସାଧନାର ପରେ କରି ସିଦ୍ଧି ଲାଭ,
ବୁହାଇ ପ୍ରାଚୁର୍ଯ୍ୟ ଗ୍ରାମେ, ଘୁଞ୍ଚାଇ ଅଭାବ,
ରୋଗ, ଆବର୍ଜନା ସ୍ଥାନେ ସୌନ୍ଦର୍ଯ୍ୟ ଫୁଟାଇ
ସହଯୋଗ-ଧର୍ମେ ଲୋକ-ନୟନ ଫିଟାଇ,
'କରୁଣା-କଲୋନି' ନାମେ ଇଂରାଜୀ ଭାଷାରେ
କମଳ ପ୍ରକାଶେ ଗ୍ରନ୍ଥ; ପ୍ରଚାର ଆଶାରେ
ପଲ୍ଲୀର ସମୃଦ୍ଧି ଫେରିଆସିବ କେସନେ
ଯନ୍ତ୍ର ହେବ ପରିଣତ କମଳା-ଆସନେ ।
ପଟଭୂମିରୂପେ ତହିଁ ଦେଲା ସେ ସୂଚନା,
ରାଜନୀତି କେହ୍ନେ ମାରାତ୍ମକ ପ୍ରବଞ୍ଚନା;
ଦଳ ହୋଇ ଶେଷେ ଏକ ବ୍ୟକ୍ତି-ହତିଆର
ହୁଅଇ ଅଲଂଘନୀୟ ସ୍ୱାର୍ଥର ପ୍ରାକାର ।
ଏଇ ଇତିହାସ ସବୁ ଦଳ, ସମାଜର;
ବ୍ୟକ୍ତି ହୁଏ ନିଷ୍ପେସିତ ସଂଘ-ପଦ-ତଳ ।
ସମାଜର ଶୁଭ କିନ୍ତୁ ଠିଆ ବ୍ୟକ୍ତି ପରେ,
ଅନ୍ୟାୟ ତା'—ବ୍ୟକ୍ତିଠାରେ ଅଶୁଭ ଯା' କରେ ।
ବ୍ୟକ୍ତିଠାରେ ବିଷପରି ଯାହାକାର୍ଯ୍ୟ କରେ
ସମାଜ ବିଷାକ୍ତ ହେବ ଦିନେ ସେ ଗରଳେ ।
ଦଳ, ଗୋଷ୍ଠୀ ନାମେ ଯଦି ଦଳପତିଗଣ
କରୁଥାନ୍ତି ଅନାଚାର, ଲୋକ-ପ୍ରବଞ୍ଚନ,
ଦିନେ କି ନୋହିବ ତାଙ୍କ ପାପର ବିଚାର ?
କେ ନେବ ଈଶ୍ୱର ଆଗେ ପ୍ରପାଗଣ୍ଡା-ଭାର ?
ଯଦି କେ କରଇ ଇଚ୍ଛା ଜନତା-ମଙ୍ଗଳ,
ବ୍ୟକ୍ତିଭାବେ ହେଉ ଆଗେ ବିଶୁଦ୍ଧ ଅନ୍ତର,
ନିଜ ସ୍ୱେଦ ଢାଳି ଯଦି କରେ ସେ କିଂଚିତ,
ସେହି ହେବ ତା' ଜୀବନେ ମହାନ୍ ସଞ୍ଚିତ ।

କମଳର ଆତ୍ମଚରିତ

ଏ କ୍ରମେ ନିଜେ ସେ ଛାଡ଼ି ସବୁ ଗୋଷ୍ଠୀ, ଦଳ
ନିଜର ବ୍ୟକ୍ତିତ୍ୱେ କରି ଏକାନ୍ତ ନିର୍ଭର,
କରିଛି ଉର୍ବର କେହ୍ନେ ନିଜ ଜନ୍ମମାଟି
'କଲୋନି' ଉଠିଲା କେହ୍ନେ ଆବର୍ଜନା କାଟି,
ଦେଇଛି ପୁସ୍ତକେ ତାର କ୍ରମିକ ବର୍ଣ୍ଣନା
ଜଗଦ୍‌ଗବେ ଯଉବନ ଦେବାର ସାଧନା ।

ରକ୍ତକୁଶେ ଦାନ ସଂଗେ, ଏ ଗ୍ରନ୍ଥ ପ୍ରସାର
କମଳର ନାମ କରେ ଚୌଦିଗେ ପ୍ରଚାର ।
ଆସୁଛନ୍ତି ଦଳେ ଦଳେ ଖ୍ରୀଷ୍ଟ ମିସନାରୀ,
ଆସୁଛନ୍ତି ଜଣେ ଜଣେ ପର୍ଯ୍ୟଟନକାରୀ ।
ଆମେରିକା ବଂଧୁଗଣ ଲେଖୁଛନ୍ତି ପତ୍ର
ଆଉ ଥରେ ଏ ଦମ୍ପତି ନ ଯିବେ କି ତତ୍ର ?
ଜେନିଭାର ରକ୍ତ-କ୍ରୁଶ-କେନ୍ଦ୍ର ଅଫିସରୁ,
ଡାକ ଆସେ ବହୁ ଅନୁଷ୍ଠାନ ତରଫରୁ ।
କମଳ କରୁଣା ଦୁହେଁ ସବୁ ପ୍ରତ୍ୟାଖ୍ୟାନ
କରି, ରଖି ମନୁ ଦୂରେ ପ୍ରଚାର, ସମ୍ମାନ;
ପଲ୍ଲୀର ସେବାରେ କରୁଛନ୍ତି ନିୟୋଜିତ
ଆପଣାକୁ । ଭାବନ୍ତି ସେ ହେବେ ତିରୋହିତ
'କଲୋନି'ରୁ ଯଦି ମାତ୍ର କିଛି ଦିନ ଲାଗି
କେ ଜାଣେ କି ବିପଦ୍‌ପାତେ ପଡ଼େ ସବୁ ଭାଙ୍ଗି !

(ଦେଶ-ଦେଶାନ୍ତରେ ଖ୍ୟାତି ଓ ବିଦେଶରୁ ନିମନ୍ତ୍ରଣ ଓ ସେସବୁର ପ୍ରତ୍ୟାଖ୍ୟାନ)

ଏଣେ ଦୁହେଁ ଜାଣିଲେଣି ପରଶ ଜରାର,
ବୟସ ଦୁହିଁକ ଭାଲେ କାଟୁଛି ଶିଆର,
ଦୁହିଁକର କୃଷ୍ଣ କେଶ ହୁଏ ଶୁକ୍ଳୀକୃତ,
କ୍ଷୀଣ ଏବେ କରୁଣାର ପୂର୍ବ କେଶଗୁଚ୍ଛ ।
ନବୀନ କଦଳୀପତ୍ର ପରି ଯା ଚିକ୍‌କଣ,
ଥିଲା କରୁଣାର ଗଣ୍ଡ, ହରାଇଛି ବର୍ଣ୍ଣ,
ହୋଇଛି ସେ ଟିକେ ସ୍ଥୂଳ,—ପୂର୍ବ ସଂତ୍ରାସିକା
ହୃଦ୍‌ରୋଗ ଘେନି ଭୟେ ଚଳଇ ଅବିକା ।
ବରାବର ହେଉଅଛି ମଧ୍ୟେ ମଧ୍ୟେ ଜର,
ତା'ର ସ୍ୱାସ୍ଥ୍ୟ ବଡ଼ ଚିନ୍ତା ଏବେ କମଳର ।

(ପ୍ରଣୟୀ ଯୁଗଳର ବାର୍ଦ୍ଧକ୍ୟ)

ତା'ରି ଯୋଗୁଁ ଧନୀ-କନ୍ୟା ବିଳାସ-ଲାଳିତା
ହୋଇଛି କୁଟୀରବାସୀ, ଗ୍ରାମର ବନିତା ।
ସହରେ ଚିକିତ୍ସା କଥା ଶୁଣାଇଲେ କାନେ
କରୁଣା କହଇ ''ପଡ଼ିଛନ୍ତି ରୋଗୀମାନେ
ଏତେ ଏଠି । ମୋ ପ୍ରାଣ କି ଏଠୁଁ ମୂଲ୍ୟବାନ,
ଯାଙ୍କୁ ଛାଡ଼ି କରିବି ମୁଁ ସହରେ ପ୍ରୟାଣ,
ନିଜ ସ୍ୱାସ୍ଥ୍ୟ ଲାଗି ? ଯାହା ନ ପାରିବି ଦେଇ
ଏମାନଙ୍କୁ, ସୁଖୀ ହେବି ନିଜ-ଭୋଗେ ନେଇ ?''

'ବିଶ୍ୱମିତ୍ରା' ସଂଗେ ଧରି ମିସ୍ ବାଟ୍‌ସନ୍
ବରାବର ଆସେ ଗ୍ରାମେ ଗ୍ରାମ୍ୟ-ଜନମନ
କରାଇ ଚଂଚଳ ତା'ର ସ୍ୱାଧୀନ ବିହାରେ,
'ମିତ୍ରା' ସଂଗେ ହୋଇ କଥା ଇଂରାଜୀ ଭାଷାରେ ।
'ମିତ୍ରା'ର ନ୍ୟୁୟର୍କେ ଜନ୍ମ, ଶୈଶବରୁ ତା'ର
ପାଇଛି ସେ ବିଶ୍ୱଦେଶବାସୀ ଅଧିକାର ।
ଚାହାନ୍ତିନି ଅନୁଭବୀ ଜନକ ଜନନୀ
ତା'ର ସାର୍ବଭୌମତାରେ କାଟିବେ ବନ୍ଧନୀ;
ତାଙ୍କ ଇଚ୍ଛା ନିଜ ଗୁଣେ ଲଭୁ ସେ ପୂର୍ଣ୍ଣତା
ତା'ର ବାଟ ହେବ କିପାଁ ପିତୃ-ଅଭିଜ୍ଞତା ?

[ବିଶ୍ୱମିତ୍ରା]

ଯୋଗଦେଇଥିଲା ଅରବିନ୍ଦ, ବର୍ମା-ରଣେ,
ରମା ଆସିଥିଲା ଦେଶେ ଶ୍ୱଶୁର-ଗହଣେ ।
ବନ୍ଦୀ ହୁଏ ଅରବିନ୍ଦ ଜାପାନୀଙ୍କ କରେ,
ବଜ୍ରପାତ ହୁଏ ଯେହ୍ନେ ରମା ମସ୍ତକରେ ।
ଏକମାତ୍ର ପୁତ୍ରେ ଧରି କାନ୍ଦେ ଅବିରଳେ
କମଳ ସେକାଳେ ଥାଏ ଚୁଂକିଙ୍ଗ ସହରେ,
ଏ କଥା ନ ଥିଲା ଜାଣି । ଯୁଦ୍ଧ ଅବସାନେ,
ଜଣାପଡ଼େ ଇଂରେଜର ଆହତ-ସଂଧାନେ,—
ବନ୍ଦୀ-କ୍ୟାମ୍ପେ ଜାପାନୀଙ୍କ କ୍ରୁର ବ୍ୟବହାରେ
କରିବାରୁ ପ୍ରତିବାଦ ବୀରତ୍ୱ ପ୍ରକାରେ,
ଜାପାନୀଏ କରିବାକୁ ବିଦ୍ରୋହ ଜବତ
ଅରବିନ୍ଦେ ଗୁଳିକଲେ ରାସ୍ତା-ଶ୍ୱାନବତ ।

[ଅରବିନ୍ଦର କରୁଣ ମୃତ୍ୟୁ]

ଶୁଣି ଏ କରୁଣ ବାର୍ତ୍ତା, କରୁଣା, କମଳ
ସ୍ମରି ସ୍ମରି ବିସର୍ଜିଲେ ଅଶ୍ରୁ ଅବିରଳ ।

ରମା କଥା କଳ୍ପନୀୟ । ମନଫେରା ପାଇଁ
ସପୁତ୍ର ରମାରେ ଆଣେ ପାଶେ ନିଜେ ଯାଇ
କମଳ ସେ ବନ୍ଧୁଗ୍ରାମେ । ସୁନ୍ଦର କୁମାର
ମୁଖେ ରେଖା ଅବିକଳ ଚେହେରା ମାଆର,

ନଣନ୍ଦ-ଭାଉଜ

ତେଣୁ ଥିଲା ଜନକର ଆଦରର ଧନ,
ସେଇ ଅଟକାଇ ଅଛି ଜନନୀ-ଜୀବନ ।
କରୁଣା ତ ନାହିଁ ଦେଖିଥିଲା ନଣନ୍ଦରେ,
ଦେଖା ହେଲା ଆଦ୍ୟେ ଏହି ଦୁଃଖ ମୁହୂର୍ତ୍ତରେ;
ତେଣୁ ତାକୁ ସ୍ନେହ କରେ ଆହୁରି ଅଧିକେ
ରମା-ମନ ନବ ସଖ୍ୟେ ଫେରେ ଟିକେ ଟିକେ ।

ଦିନେ ଉପସ୍ଥିତ ଗ୍ରାମେ ତରୁଣ ସନ୍ନ୍ୟାସୀ
ନାମ ମହାନନ୍ଦ ସ୍ୱାମୀ; ଦୁଗ୍ଧ-ଫଳ-ବାସୀ,
ରାମକୃଷ୍ଣ ମିଶନର, ଗୈରିକ ବସନ
ବ୍ରହ୍ମଚର୍ଯ୍ୟ ତେଜେ ଯୁବା ଆନନ ପ୍ରସନ୍ନ ।
କମଳର ଘର ପାଇଁ ପଚାରନ୍ତି ବାଟ

ମହାନନ୍ଦ ସ୍ୱାମୀ । ଦୁଇ ଭାଇଙ୍କର କରୁଣ ମିଳନ

କୌତୂହଳେ ପଛେ ଚାଲେ ଛୋଟ ଜନ-ଥାଟ ।
କମଳ ନ ଥିଲା-ଘରେ; କଲେ ସେ ଅପେକ୍ଷା
କିଛି କ୍ଷଣେ ଘର-ଆଗେ, ପଥେ ହୁଏ ଦେଖା ।
ସାଧାରଣ କ୍ରମେ ହେଉ ପଚରାପଚରି
ସନ୍ନ୍ୟାସୀର ମୁଖେ ଚାହେଁ ନିରୀକ୍ଷଣ କରି
କମଳ 'ମଦନ ତୁ ରେ' ? ପଚାରେ ବିସ୍ମୟେ;
'ସେଇ ମୁଁ ଅଧମ' ହସି ଯୁବା-ଯୋଗୀ କହେ ।
କମଳ ନିବିଡ଼ ସ୍ନେହେ ଆଶ୍ଳେଷେ ଭାଇରେ,
ଭାବାବେଗେ ଅଶ୍ରୁବିନ୍ଦୁ ଉଠେ ନେତ୍ରତୀରେ ।
କହନ୍ତି ସନ୍ନ୍ୟାସୀ ଆପେ ଯାଉଁ ଯାଉଁ ଗୃହେ,
ଭାଇନା, ପ୍ରଶଂସା ତବ ଶୁଣି ମୁହେଁ ମୁହେଁ
କରୁଣା-କଲୋନି କଥା ପଢ଼ି କାଗଜରେ
ଇଚ୍ଛା ହେଲା ସ୍ୱଚକ୍ଷୁରେ ଦେଖିଆସେଁ ଥରେ ।

ଆସିଥିଲି ପୁରୀ, ତେଣୁ ଘଟିଲା ସୁଯୋଗ,
ତୀର୍ଥଯାତ୍ରା, ଗୃହଦେଖା ଅପୂର୍ବ ସଂଯୋଗ ।
କରୁଣା ଓ ରମା ଭେଟ ଗୃହ ଅଭ୍ୟନ୍ତରେ;
ରମା କାନ୍ଦେ । ଭ୍ରାତୃ-ଜାୟା ସନ୍ନ୍ୟାସୀ-ଦେବରେ
ମୃଦୁ ମୃଦୁ ହସି ଚାହେଁ । ପରେ, ପଦତଳେ
ନମି ଜ୍ୟେଷ୍ଠା ସମ୍ମାନନ୍ତି ବରେଣ୍ୟ କ୍ଷୁଦ୍ରରେ ।
କିଛି ଦିନ ରହି, କରି ମଧୁର କୀର୍ତ୍ତନ
କଲୋନୀର ହୃଦେ ଦେଇ ଭକ୍ତି-ଜାଗରଣ,
ରମାର ଲୋତକେ ଏଡ଼ି, ଭାଉଜ-ଆଦର,
ଯୋଗୀ ପୁଣି ପଥଚାରୀ ହେଲେ ଛାଡ଼ି ଘର ।
ମୁକ୍ତ-ସଙ୍ଗ, ନିର୍ବିକାର, ଗଗନବିହାରୀ
କି ଲୋଭେ କେ ଆଗୁଳିବ ଚରଣ ତାହାରି !

କରୁଣାର ହୁଏ ଏବେ ବରାବର ଜ୍ୱର,
ଦୁର୍ବଳତା ବଢ଼ିଅଛି ତା' ସଙ୍ଗେ ହୃଦର,
କିଛି କାଳ ଧରି ବରାବର ଶଯ୍ୟାଗତ
ବାହାରିଛି କାଶ, ପୁଣି କାଶେ ପଡ଼େ ରକ୍ତ ।
ଡାକ୍ତର କହିବା ପୂର୍ବୁ ଜାଣିଲେଣି ଦୁହେଁ
କି ରୋଗ ଏ, ନାମ ନାହିଁ ଧରୁଛନ୍ତି ମୁହେଁ ।
ନଗରୁ ଡାକ୍ତର ଆସି କରେ ପରୀକ୍ଷିତ;
ଗୋପନେ କହଇ ''ଏ ଯେ ଚିକିତ୍ସା-ଅତୀତ !
ଆପଣ କି ଶୋଇଥିଲେ ଏତେ ଦିନଧରି,
ରୋଗୀ ଯେ ମରୁଛି ଏବେ ଅଳ୍ପ ଅଳ୍ପ କରି !''

କରୁଣାର କ୍ଷୟ ରୋଗ

ତୀବ୍ରୁ ତୀବ୍ରତର ହୁଏ କରୁଣା ଯନ୍ତ୍ରଣା
ସହ୍ୟ କରି ସବୁ, ଦିଏ ଓଲଟି ସାନ୍ତ୍ୱନା
କମଳରେ,—''କିପାଁ ତମେ ହେଉଛ ବ୍ୟାକୁଳ,
ପ୍ରଥମ କି ହେବି ମୁହିଁ କବଳ ମୃତ୍ୟୁର ?
ନିତ୍ୟ ମରୁଛନ୍ତି ବହୁ ସହସ୍ର ଧରାରେ,
ତମେ-ମୁଁ-ବୋଲିକି ସେହି ଚକ୍ରୁ ବର୍ତ୍ତିପାରେଁ ?
ମରିବା ତ ଦୁହେଁ ନିଶ୍ଚେ, ଆଗ ପଛ କଥା
ମୁଁ ଆଗେ ଚାଲିଲି ବୋଲି, କରିବ କି ବ୍ୟଥା ?

ତମ କୋଳେ ମଥା ରଖି, ଚାହିଁ ଚାହିଁ ମୁଖେ,
ତବ ନାମ ଡାକି ଡାକି ମରିବି ମୁଁ ସୁଖେ !
ଦେଖିଲି, ମଦନେ, ରମା-ଶାଶୁ ବା ଶଶୁରେ
ଦେଖି ନ ପାରିଲି ଦୁଃଖ ରହିଗଲା ଉରେ ।
କାହିଁ ଥିଲ ତମେ, ଆଉ ମୁହିଁ ଥିଲି କାହିଁ
ଦୁଇ ଅଜ୍ଞାତରେ ଆଣି କେ ଦେଲା ମିଶାଇ ।
ସୁଧା-ଉତ୍ସ ଏ ଜଗତେ ପ୍ରୀତିର ବନ୍ଧନ
ଛାତିରେ ଲଗାଏ ଆଣି, ଦୂର,ପର ଜନ ।
ନହେଲେ କାନ୍ଦନ୍ତି କିପାଁ ଅରବିନ୍ଦ ପାଇଁ,
ଜୀବନରେ ଯାକୁ କେବେ ନେତ୍ରେ ଦେଖିନାହିଁ ।
ରମା ତବ ତତ୍ତ୍ୱ ନେବ, ମୁହିଁ ଗଲେ ଚାଲି
କି ଦୁଃଖିନୀ ଅଭାଗିନୀ ନିରୀହା ବିଚାରୀ !
ମିତ୍ରା, ମିସ୍ ବାଟସନେ ଡକାଅ ଏଥର
ଦେଖାଯାଏ ଶେଷ ଏବେ ମୋ ଯାତ୍ରା-ପଥର ।
ସେପଟେ ବି ଅପେକ୍ଷିବି ଏ ଜୀବନେ ପରି,
ତବ ଯିବା ପଥେ ଥିବି ଜାଗ୍ରତ ପ୍ରହରୀ ।''

କମଳ ନୀରବେ ବସି ଧ୍ୟାନେ କକ୍ଷାନ୍ତରେ
ଭାବୁଁ ଭାବୁଁ ଉଠେ ସାରା ଚିତ୍ର ତା' ଭିତରେ ।
ତା ସମ୍ବନ୍ଧେ କି କଳ୍ପନା ଥିଲା ନନାଙ୍କର
କି ହେଲା ସେ ! ତା କାହାଣୀ କି ବିସ୍ମୟକର !
ଏ ସବୁର ମୂଳେ ଏକ ତନ୍ୱଙ୍ଗୀ କିଶୋରୀ ।
ଆପେ ଆସି ବାନ୍ଧିଦେଇ ଗଲା ଦିନେ ଡୋରି ।
ସେ ଡୋରି ଛିଣ୍ଡିଲା ନାହିଁ, —ଘାଟୁ ଘାଟେ ନେଇ
ଜୀବନ ନଉକା, ଶେଷେ ବାନ୍ଧିଛି ଏଠେଇଁ ।
ଜଣକର ସ୍ନେହ ପାଇଁ ସବୁ ସେ ଦେଇଛି,
ଜଣକର ସୁଖ ପାଇଁ ସବୁ ସେ ସହିଛି ।
ସର୍ବଂସହା, ସ୍ନେହମୟୀ ଜୀବନ-ସଙ୍ଗିନୀ,
ଆଉ ଘରେ ଦୁରାରୋଗ୍ୟ ରୋଗର ରୋଗିଣୀ,
ଛଟପଟ କରେ ତାକୁ ଅସହ୍ୟ ଯନ୍ତ୍ରଣା,
ତଥାପି ସେ ମଧୁଭାଷୀ, ସହାସ୍ୟବଦନା ।

ସେ ତ ଯିବ ଚାଲି ଛାଡ଼ି, ଆଉ ବଞ୍ଚିବାର
କି ଲୋଭ ଅଛି ଏ ମର୍ତ୍ତ୍ୟେ ?—ତପ୍ତ ଅଶ୍ରୁଧାର
ଅଲକ୍ଷିତେ କମଳର ଗଣ୍ଡେ ବହିଯାଏ;
ଚପାଛି ବେଗେ, କରୁଣାର ଡାକ ଶୁଣି ଧାଏଁ ।
  ଦିନେ ସବୁ ହୁଏ ଶେଷ !
          ନିର୍ବାକ କମଳ,
ନିଜ ସ୍କନ୍ଧେ ବହି ଭାର କରୁଣା ଶବର
ଅନ୍ୟ ବନ୍ଧୁଜନ ସାଥେ, ପୈତୃକ ଶ୍ମଶାନେ
ଦାହ କରେ ସତୀ, କୁଳବଧୂର ସମ୍ମାନେ ।
ମନେହୁଏ, ଆଶ୍ରମରୁ ଲକ୍ଷ୍ମୀ ଗଲା ଚାଲି

**ସତୀର ପ୍ରୟାଣ**

'ଧନ୍ୟ ସତୀ' କହୁଛନ୍ତି ଗ୍ରାମ-ନରନାରୀ ।
ଦେଖନ୍ତି ଶ୍ମଶାନୁଁ ଫେରି ଗ୍ରାମ ବନ୍ଧୁଜନ,
କମଳର ଗୃହଦ୍ୱାରେ ନାରୀ ଦୁଇଜଣ
ବିଳପନ୍ତି କାରୁଣ୍ୟରେ,—ରମା, ବାଟସନ;
କି ଅଘଟ ଘଟାଇଛି ସ୍ନେହର ବନ୍ଧନ !
କମଳ ନିର୍ବାକେ ପଶି ଗୃହ ଅଭ୍ୟନ୍ତରେ
ମିତ୍ରାକୁ ପ୍ରବୋଧି ଧରେ ସସ୍ନେହେ କୋଳରେ ।

  ଛଅ ମାସ ନଯାଉଁ ବି କମଳର ସ୍ୱାସ୍ଥ୍ୟ
ଭାଙ୍ଗିପଡ଼େ,ଖାଦ୍ୟମାତ୍ରେ ହୁଅଇ ଦୁଷ୍ପାଚ୍ୟ ।
ଜର ହୁଏ,ଶେଯ ଧରେ, ନାହିଁ ଉଠେ ଆଉ,

**ଶଯ୍ୟାଗତ କମଳ**

ଜାଣିଲା ସେ ହେଲା ଆସିଯିବ ଶେଷ-ବାୟୁ ।
ତାରରେ ଡକାଏ ତା'ର ସନ୍ନ୍ୟାସୀ ଭାଇରେ
ତା ହାତରେ ଛାଡ଼ିଦିଏ ପ୍ରିୟ କଲୋନୀରେ;
ମିତ୍ରା, ରମା-ପୁତ୍ର ଭାର ଦିଏ ବାଟସନେ
ତାହାପରେ ନିର୍ବିକାରେ ଅପେକ୍ଷେ ମରଣେ ।

  ଖବରକାଗଜେ ହୁଏ ଦେଶରେ ପ୍ରଚାର
କଲୋନୀରେ କମଳର ମୁମୂର୍ଷୁ ବିକାର ।
ନଗରର ସବୁ ଧର୍ମ, ସବୁଦଳ ଲୋକେ
ଇଚ୍ଛିଲେ ସମ୍ମାନ ଦେବେ ନୀରବ ସାଧକେ ।

ଦଳ ଦଳ ଯାଇ ଠୁଳ ହୋନ୍ତି କଲୋନୀରେ,
ଶୁଣନ୍ତି ସେ କର୍ମଯୋଗୀ ଯାଏ ଧୀରେ ଧୀରେ ।

ସବୁ ଶେଷ ହେଲାକ୍ଷଣି, ଲାଗେ ଆୟୋଜନ
ସଜ୍ଜିତ କଫିନ୍ ପଛେ ଦୀର୍ଘ ପ୍ରସେସନ ।
ଧୀରେ ଚାଲେ ଶୋଭାଯାତ୍ରା, ମରଣ-ସଙ୍ଗୀତ
ଇଉରୋପୀୟ ବ୍ୟାଣ୍ଡ ବାଇ, କରୁଣ ଇଙ୍ଗିତ
ଜାତ କରେ ଶ୍ରୋତାଙ୍କର ହୃଦୟେ ହୃଦୟେ,
ସହସ୍ର ନୟନ ଦେଇ ତପ୍ତ ଅଶ୍ରୁ ବହେ ।
ରକ୍ତ-କ୍ରୁଶେ କମଳର ବକ୍ଷ ଆଚ୍ଛାଦିତ.
ଶବ, ଶବ-ପଥ ହୁଏ ପୁଷ୍ପେ ଆସ୍ତରିତ ।
ନ ଥିଲା ସେ ନେତା, ମନ୍ତ୍ରୀ, ଅଥବା ଧନିକ
ସେ ଥିଲା ସେବାର କ୍ଷେତ୍ରେ ସାମାନ୍ୟ ସୈନିକ ।
ସାଧାରଣ ଥାଇ ହେଉଁ କର୍ମେ ଗରୀୟାନ
ସାଧାରଣ ଦିଏ ତାକୁ ପରମ ସମ୍ମାନ ।

କରୁଣା ପ୍ରସେସନ

---

## କମଳାୟନ : ଉତ୍ତର ଖଣ୍ଡ

### [ ପ୍ରଥମ ସର୍ଗ ]

ଶୀତ, ଶାନ୍ତ ହେମନ୍ତର ହେମ ଅପରାହ୍ଣେ
ହୋଇଅଛି ଚିଲିକାର ତରଳ ଚତ୍ୱର,
ପୁଣି ତା'ର କୁଟୁମ୍ବିକ ଶୈଳ, ଟଂକ, ବନ,
ଶ୍ୟାମଳ, ଶବଳ ତା'ର ଦ୍ୱୀପ ଶତ ଶତ,
ନିମ୍ନ, ଊର୍ଦ୍ଧ୍ୱ, ଚଉଦିଗ,—ବର୍ଣ୍ଣ-ମହିମାରେ
ପରିବ୍ୟାପ୍ତ ସ୍ୱର୍ଣ୍ଣାଂଶୁକେ, ଅସ୍ତ-ତପନର ।
ରବିର ଅଦୃଷ୍ଟ ହେମ-ରଥ-ଚକ୍ର-ରାଜି
ଛୁଇଁଲେଣି ଆସି ଧୀରେ ଗୁଳ୍ମିତ ଶିଖରେ
ପ୍ରଲମ୍ବିତ ଭାଲେରୀର । ଜଟିଆର ବନେ
ଆସିଲାଣି ମାଡ଼ି ତେଣେ ଧୂମ୍ର ସାଂଧ୍ୟଛାଇ;
ପ୍ରଥମ-ବିଶ୍ରାମ-ଲିପ୍ସୁ ବିହଙ୍ଗମଦଳ
ପକ୍ଷ ଝାଡ଼ି ବସିଲେଣି ଚଢ଼େଇହଗାର
ଶ୍ୱେତ, ଶାନ୍ତ, ସ୍କନ୍ଧପରେ । ପକ୍ଷୀ ଦଳ ଦଳ
ଉଡୁଛନ୍ତି ମାଳାକାରେ ଅର୍ଦ୍ଧବୃତ୍ତେ ଅବା
ତଳେ ଖସି ସୁମଧୁର କୋଳାହଳେ ପୁଣି
ସ୍ନେହ-ବିକମ୍ପିତ ମାତୃବକ୍ଷେ ଚିଲିକାର
ସନ୍ତରନ୍ତି ପରିପୂର୍ଣ୍ଣ ଜୀବନ-ଆନନ୍ଦେ
ତରଳ ସେ ନୀଳ ସ୍ତନେ,—କରେ ଚକଚକ
ରବିକରେ ନୀର-ଧୌତ ପତତ୍ର ତାଙ୍କର ।
ସ୍ୱର୍ଣ୍ଣପାଲ ଟାଣି ଧୀରେ, ଦୂରେ ଓ ନିକଟେ
ଭାସିଯାନ୍ତି ତରୀ ଦୂର ତୀର ଲକ୍ଷ୍ୟ କରି
ଅଭାଗ୍ୟର ସ୍ୱପ୍ନ ସମ । ତା'ରି ଆଶା ସମ
ତଥାପି ସେ ସ୍ୱର୍ଣ୍ଣପାଲ, ନୀଳ ନୀର ପରେ
ଯେତେ ଦୂର ଯାଏ, ତେତେ କରେ ଝକଝକ,—
ଅପ୍ରାପ୍ତିରେ ଜଳେ ଯେହ୍ନେ ପ୍ରାପ୍ତି-ଆଶା-ଶିଖା ।

ସେ ପ୍ରଦୋଷେ ଚିଲିକାରେ, ନୀଳ ନଭ ତଳେ
ଯନ୍ତ୍ରନୀତ ଶୁଭ୍ର, ନାବ ପୃଷ୍ଠେ ହୋଇ ଠିଆ
ଦେଖୁଛନ୍ତି କମନୀୟ ତରୁଣ ତରୁଣୀ
ମୁଗ୍ଧ ନେତ୍ରେ ଶୋଭା ଏହି ସୁନ୍ଦରୀ ହ୍ରଦର,—
ମଗ୍ନ-ଚିତ୍ତ, ପ୍ରକୃତିର ରୂପ ଆୟୋଜନେ
ବେଳେବେଳେ ଖାଲି ଦୁହେଁ ହୋଇ କୁତୂହଳୀ
ଚାହୁଁଛନ୍ତି ଦୂରବୀଣେ ବୁଲାଇ ବଦନ
ସିଂହେଶ୍ୱର ମୁଣ୍ଡିଆର [୧] ଉଚ୍ଚତମ ଶିଖେ,
ମନୋହର ସୌଧବାସଅଳିନ୍ଦରେ ଯହିଁ
ବସିଛନ୍ତି ଦୁଇ ବୃଦ୍ଧବୃଦ୍ଧା, ଗଳ୍ପି-ସୁଖେ,
ଦେଖିବାକୁ ସେ ଦୁହିଁଙ୍କ ଚିଲିକା-ବିହାର
ସ୍ୱହସ୍ତର ଦୂରବୀଣେ । ମଧୁ-ସ୍ମିତ ତଳେ
କରି ବିଚ୍ଛୁରିତ କୁନ୍ଦ-ପୁଷ୍ପ-ଦନ୍ତ-ଶୋଭା,
ବେଳେବେଳେ ତରୁଣୀ ସେ, ଅନାଇ ପଛରେ
ଧରି ଦୂରବୀଣେ, ସାଥୀ-ନୟନ-ପୁରତେ,
କହେ ଶାନ୍ତ କଳରବେ—

"ଦେଖ ସେପିଲକୋ,
କାକା ଓ ମାଉସୀ ନିଜେ ଧରି ଦୂରବୀଣ
ଆମ ଗତି ଏବଯାଏଁ କରୁଛନ୍ତି ଲକ୍ଷ୍ୟ !"
"ହଁଅଁ ତ" ! ସାମାନ୍ୟ କହି ସୁନ୍ଦର ତରୁଣ,
ଉତ୍ତରଇ ଦରହାସେ ରୂପସୀ ସାଥୀରେ ।
ଘନ କୃଷ୍ଣ, ସୁରଭିତ, ଉର୍ମିଳ ଚିକୁର
ସୁନ୍ଦରୀର ଉଡ଼େ ବାୟେ କ୍ଷିପ୍ତ ମୁକ୍ତତାରେ,
କରି ବିଚ୍ଛୁରିତ ଚତୁର୍ଦ୍ଦିଗେ ପୁଷ୍ପବାସ,
କରି ଚିତ୍ତ ଉଦ୍‌ବେଳିତ ପିଙ୍ଗଳ-କେଶିକ
ଉଦୀଚ୍ୟ [୨] ସେ ଶୀତଚର୍ମା [୩] ସୁନ୍ଦର ଯୁବାର ।

---

୧. ସାଧାରଣତଃ 'ମାମୁଭଣଜା' ପାହାଡ଼ ନାମରେ ପରିଚିତ । ରାଧାନାଥଙ୍କ 'ଚିଲିକା'ରେ ଏହାହିଁ 'ସିଂହେଶ୍ୱରଙ୍କର ଯାମଳ ଭୂଧର'; କାରଣ ପାହାଡ଼-ଦୁଇର ନିମ୍ନଦେଶରେ ସିଂହେଶ୍ୱର ମହାଦେବଙ୍କର ମନ୍ଦିର ।

୨- ଉଦୀଚ୍ୟ—ଉତ୍ତରଦେଶବାସୀ ।

୩- ଶୀତଚର୍ମା—ଶ୍ୱେତାଙ୍ଗ ।

ଦୁହେଁ ଯୁବା, ଦୁହେଁ ଦୁଇ ଉଚ୍ଛଳ ପ୍ରାଣର
ଅଶେଷ ନିସ୍ୟନ୍ଦ ଯେହ୍ନେ । ଦୁହେଁ ହିଁ ସୁନ୍ଦର,
ନିଜ ଦେଶ-ପ୍ରକୃତିର ସ୍ୱାଭାବିକ ଦାନେ,
ପୁଣି ଅଙ୍ଗ ଅନୁପାତେ । ବିପରୀତ ଧର୍ମେ
ବିଚିତ୍ର ସୁନ୍ଦର ତେଣୁ ଯୁଗ୍ମ-ସମାବେଶ ।
ସୁନ୍ଦର ସେ ପ୍ରକୃତିର ମନୋଜ୍ଞ ବିକାଶେ
ଦୁଇ ଏଇ ମାନବିକ ସ୍ଫୁଟ-ପୁଷ୍ପ ଯୁଗ୍ମ
ପ୍ରକୃତି-ଲକ୍ଷ୍ମୀର ପଦେ ଶ୍ରେଷ୍ଠ ଅର୍ଘ୍ୟ ଯେହ୍ନେ ।

ତରୁଣ ସେ ସେପିଲ୍‌କୋ, ଇଉକ୍ରେନ୍‌ବାସୀ [୪]
ରୁଷୀୟ, କରଇ ପ୍ରାଚ୍ୟ-ବିଦ୍ୟା ଗବେଷଣା;
ଆସିଛି ଦେଖିବାଲାଗି ନିଜ ନେତ୍ର ଭରି
ଭାରତୀୟ ଜୀବନର ଅଂଶ କିଛି କିଛି
ଗ୍ରାମେ ଓ ନଗରେ ଭ୍ରମି । ସୁନ୍ଦରୀ ତରୁଣୀ,
କମଳ ଓ କରୁଣାର ଏକହିଁ ସନ୍ତାନ,
ବିଶ୍ୱମିତ୍ରା,—ବୁଦ୍ଧିମତୀ, ବିଶ୍ୱଶୁଭଶୀଳା,
କରି ଶିକ୍ଷା ସମାପନ ଦେଶେ ଓ ବିଦେଶେ,
ଫେରିଅଛି ସଦ୍ୟ ଏବେ ଜନକଜନନୀ-
ପ୍ରତିଷ୍ଠିତ ସୁପ୍ରସିଦ୍ଧ ଆଦର୍ଶ ପଲ୍ଲୀରେ,
ଯନ୍ତ୍ର ଯହିଁ ମିଳନର ହୋଇ ସ୍ୱର୍ଣ୍ଣସୂତ୍ର
ନର ଓ ପ୍ରକୃତି ମଧ୍ୟେ, ଅଛି ସମ୍ଭବାଇ
ଶାନ୍ତି, ସୁଖ, ନିରାପଦା, ସମୂହ-ସୌଭାଗ୍ୟ,
କୁତ୍ସିତ, ଦରିଦ୍ର, ହୀନ, ହାହାକାରମୟ
ପଲ୍ଲୀ-ଭାରତର ଏକ କ୍ଷୁଦ୍ର ପରିଧିରେ ।

ଚିଲିକାର ସିଂହେଶ୍ୱର ଶୈଳକୂଳପରେ
ପ୍ରତିଷ୍ଠିତ ବିଶେ ତାଙ୍କ ସୁନ୍ଦର ଆବାସ
ସଦା ନିସେବିତ ଯାହା ଚିଲିକା ବ୍ୟଜନେ ।
ସ୍ୱାମୀ ମହାନନ୍ଦ ସେହି କମଳ-ଅନୁଜ

---

୪. ସୋଭିଏଟ୍ ରୁଷିଆର ମୁଖ୍ୟତମ ରାଜ୍ୟ । ଏହା ରୁଷିଆର ଶସ୍ୟାଗାର । ଇଉକ୍ରେନିଆନ୍‌ମାନେ ଏକ ସ୍ୱତନ୍ତ୍ର ଜାତି ଓ ଭାଷାଭାଷୀ । ଏମାନଙ୍କର ପଲ୍ଲୀଗୀତି ଓ କାହାଣୀ ପ୍ରସିଦ୍ଧ । ଏମାନେ ବାରମ୍ବାର ସ୍ୱାତନ୍ତ୍ର୍ୟ ପାଇଁ ସଂଗ୍ରାମ କରିଆସିଛନ୍ତି ।

ମିସ୍ ୱାଟସନ୍, ସେହି କରୁଣା-ବାନ୍ଧବୀ,
(ନିଉୟର୍କୁ ବିଶ୍ୱମିତ୍ରା ଦ୍ୱିତୀୟା ଜନନୀ)
ଦୁହେଁ ବସି ଜଳ୍ପୁଛନ୍ତି ସେ ବିଶ୍ୱମିତ୍ରାର
ଭବିଷ୍ୟତ୍, ଯେ ଦାୟିତ୍ୱ ନ୍ୟସ୍ତ ତାଙ୍କଠାରେ ।
ସିଂହେଶ୍ୱର ଆବାସର ଆରାମ-ପୁଳିନ୍ଦେ,
ଦୂରବୀଣ ହସ୍ତେ ଧରି ଦେଖୁଛନ୍ତି ପୁଣି,
ଜଳକ୍ରୀଡ଼ା ତା'ର., ବଂଧୁ ଘେନି ଅପରାହ୍ଣେ ।

ଚାଲେ ତରୀ କାଟି ଦ୍ରୁତେ ଚିଲିକା ଲହରୀ,
ପଛେ ତା'ର ନୀଳଗିରି-ଶ୍ରେଣୀ-ଚିତ୍ରପଟ,
ସମ୍ମୁଖରେ ଦିଶେ ଦୂର ଚକ୍ରବାଳ ପରେ
କ୍ଷୀଣ, ଧୂମ, ଅସଂଲଗ୍ନ ବନସ୍ପତି-ରେଖା,
ପାରିକୁଦ-ମାଲୁଦର ଦୀର୍ଘ ବେଳା ଧରି ।
ପଛେ ଗିରିଶ୍ରେଣୀ, ଅଗ୍ରେ ଦିଗ୍‌ବଳୟ, ମଧ୍ୟେ
ପରିବ୍ୟାପ୍ତ ଚିଲିକାର ତରଳ ମର୍କତ—
ରଞ୍ଜିତ ଏକ୍ଷଣି କୋଟି କନକ-ଚନ୍ଦ୍ରକେ,
କୋଟି କୋଟି ସ୍ୱର୍ଣ୍ଣହାରେ । ଲହରୀର ଛନ୍ଦେ,
ଢ଼ଳ ଢ଼ଳ ଦେଖାଉଛି ସୁନ୍ଦରୀ ଚିଲିକା
କେଉଁ ସେ ପ୍ରେମିକ ଯେହ୍ନେ ନୀଳଗଣ୍ଡେ ତା'ର
କୌତୁକେ ଦେଇଛି ବୋଲି ସ୍ନେହାକ୍ତ ଅବିର ।

ତପନ ବୁଡ଼ଇ ଧୀରେ ଭାଲେରୀ ଉହାଡ଼େ,
ଶାନ୍ତ, ସଂଧ୍ୟା-ଛାୟା ମାଡ଼ିଆସେ ଦ୍ରୁତପଦେ
ଗିରି-ଶ୍ରେଣୀ ଭୃଗୁ ଡେଇଁ ଚିଲିକା ଉପାନ୍ତେ ।
ଶେଷ ସ୍ୱର୍ଣ୍ଣାଲୋକ-ଶିଖା ବିଦାୟୀ ଦିନର,
ଜଳୁଛି ତଥାପି ଦୂରେ ଖଣ୍ଡାହଣା[୫] ଚୂଳେ,
ଶୋଲରୀର[୬] ପ୍ରାଚୀନ ସେ ନ୍ୟଗ୍ରୋଧ ମସ୍ତକେ ।
ଚିର ସେ ଶୟନାଶୟୀ ଦୁଇଟି ମିତଣୀ,

---

୫. ରାଧାନାଥଙ୍କ 'ଚିଲିକା'ର କରୀ-ମୁଣ୍ଡାକୃତି ଗିରି 'ଖଣ୍ଡାହଣା', ଚିଲିକାର ପଶ୍ଚିମପଟ ପର୍ବତମାଳାର ଶେଷ ପଂକ୍ତିରେ ଠିଆହେଲା ପରି ଦେଖାଯାଏ ।

୬. ଶୋଲରୀ ପର୍ବତର ଶିଖରଦେଶରେ ଥିବା ଗୋଟିଏ ଝଙ୍କା ବରଗଛ ବହୁ ଦୂରକୁ ଦେଖାଯାଏ ।

୭ ଜଟିଆ ଓ କାଳିଜାଇ, ସାଂଧ-ଛାୟା ତଳେ
କଲେଣି ବା ଆସ୍ତେ ଆସ୍ତେ ନିଦ୍ରା ଆୟୋଜନ,
କେକୀ, କୁକ୍‌କଟଙ୍କ ପରି, ତାଙ୍କ ଗୁଳ୍ମବନେ ।

ସଂଧ୍ୟା କ୍ରମେ ହୁଏ ଗାଢ଼ । କୃଷ୍ଣ ପକ୍ଷ ମେଲି
ଆସେ ନିଶା ଜଳସ୍ଥଳ କରି ଏକାକାର ।
ଲୀୟମାନ ଗିରିଶ୍ରେଣୀ । ବାରୁଣୀ ଦିଗନ୍ତେ
ଲୁଚିଲେଣି ଚିରଶ୍ୟାମ ଦ୍ୱୀପରାଜି; ପୁଣି,
ପାରିକୁଦବେଳାଲଗ୍ନି ବନସ୍ପତି-ବୀଥି ।
ଭେଦି ଓତପ୍ରୋତ ସେହି ତମ-ଆବରଣ
ଦେଲେ ଦେଖା ଏବେ ଧୀରେ ଗଗନ ଗମ୍ବୁଜେ
ନିମ୍ନେ, ଊର୍ଦ୍ଧ୍ୱେ, କୋଟିନେତ୍ର ଶାଶ୍ୱତ-ଜ୍ୟୋତିର,—
(ଧରାରେ ଦେଖିବା ପାଇଁ ରମ୍ୟ ଅଭିନୟ
ପ୍ରକୃତି ଓ ମାନବର, ଯେଉଁ ଦେବ-ଚକ୍ଷୁ
କୁତୂହଳୀ ରାତ୍ରେ ରାତ୍ରେ ଅନାଦି କାଳରୁ) ।
ଦିଗ୍‌ବଳୟୁ ଦିଗ୍‌ବଳୟେ ନଭ-ଚନ୍ଦ୍ରାତପେ
ଖଚିତ ସେ ବିସ୍ମାପକ ଜ୍ୟୋତିର ରୋଶଣି
ମାହେଶ୍ୱରୀ ମହିମାର, ଦେଖିଲେ ବିମୁଗ୍ଧ
ତରୁଣ, ତରୁଣୀ ସେହି; (ଅନାଦି କାଳରୁ
ନର ଯାହା ଦେଖି ମଧ୍ୟ ହୁଅଇ ବିସ୍ମିତ
ପ୍ରତି ସଂଧ୍ୟାଗମେ ଊର୍ଦ୍ଧ୍ୱ ଆକାଶେ ବିଲୋକି) ।
ନର ଆଉ ଦେବତାର ପରସ୍ପରମୁଖୀ
ଅନନ୍ତ ରହସ୍ୟମୟ ଏହି କୁତୂହଳ,
ନାହିଁଥିଲେ ଅନୁଭବି ଯେହ୍ନେ କେଉଁଠାରେ
ପୂର୍ବେ କେବେ ସେହି ମୁଗ୍ଧ ତରୁଣ-ତରୁଣୀ
ପରମ ବିସ୍ମୟେ ଊର୍ଦ୍ଧ୍ୱେ ଟେକି ନେତ୍ର ଚାରି
ଦେଖିଲେ ସେ ପ୍ରସାରିତ ଭୂମାର ମହିମା ।
ନଉକାର ଛାତପରେ, ବିମୁଗ୍ଧ ନୟନେ,
ଦେଖୁଁ ଦେଖୁଁ ନିର୍ବଚନେ ଦିଗନ୍ତୁ ଦିଗନ୍ତେ

---

୭. ଚିଲିକାର ପଶ୍ଚିମ ତୀରରେ ଚିଲିକା ଭିତରକୁ ଲମ୍ବ ହୋଇ ପଶିଯାଇଥିବା ଦୀର୍ଘ, ଅନୁଚ୍ଚ ପାହାଡ଼— ରାଧାନାଥଙ୍କର 'ଗୁଳ୍ମଜଟାବୃତ ଜଟିଳ ଜଟିଆ' । 'କାଳିଜାଇ' ମଧ୍ୟ ଏକ ଦୀର୍ଘ,ଅନୁଚ୍ଚ ପାହାଡ଼,—ଜଟିଆର ଅଦୂରରେ ଚିଲିକା ଭିତରେ ଦ୍ୱୀପାକାରରେ ଅବସ୍ଥିତ ।

ନଭୋଦେଶେ ମହାମେଳା ଜ୍ୟୋତିଷ୍କରାଜିର;
ତରୁଣୀ ସେ ନ ସଂଭାଳି ପାରି ହୃଦୟର
ବିସ୍ମିତ ଉଚ୍ଛ୍ୱାସ, କହି ଆରମ୍ଭିଲା ବେଗେ—

'' କି ଭାବୁଛ ସେପିଲକୋ ? ଆମେ କି କେବଳ
ଦ୍ରଷ୍ଟାମାତ୍ର ଏ ଦୃଶ୍ୟର, ସଂପର୍କ-ବିହୀନ
ଆକସ୍ମିକ ଅତିଥି ହିଁ ? ଅଥବା ହେ ଆମେ
କେବଳ ବିଜୟୀ ?—କରି କ୍ରୂର ଆଧିପତ୍ୟ,
ଦାସୀଭୂତ କରିବାହିଁ ନିଜ ପ୍ରୟୋଜନେ
ପ୍ରକୃତିରେ,—ନିର୍ଦ୍ଦେଶହିଁ ଆମ ନରତ୍ୱରେ ?
ନିରୀଶ୍ୱର କମରେଡ଼ [୮] ସେପରି ଭାବନା
ନୁହେଁ କି ଏକାନ୍ତ ଭ୍ରମ ? ଭୁଲିଯାଉଁ ଆମେ,
ଆମେ ବି ଆବର୍ତ୍ତମାନ ଶୂନ୍ୟେ ମହାବ୍ୟୋମେ,
କୋଟି କୋଟି ବ୍ରହ୍ମାଣ୍ଡର ହୋଇ ସହଯାତ୍ରୀ
ଧାଉଁଅଛୁ ଅବିରଳ , ଅକଳ୍ପିତ ବେଗେ
କ୍ଷିପ୍ତ ପରି, କେ ନ ଜାଣେ କେଉଁ ଉଦ୍ଦେଶ୍ୟରେ ।
ବିନାଶ୍ରୟେ ପ୍ରଲମ୍ବିତ, ମହାଶୂନ୍ୟ ଗର୍ଭେ
ବିଘୂର୍ଣ୍ଣିତ, ପ୍ରଧାବିତ, ବିତାଡ଼ିତ ପୁଣି
କେଉଁ ମହା-ଯାଦୁକର ନିର୍ଦ୍ଦେଶରେ ଏହି
ଅଗଣ୍ୟ ବ୍ରହ୍ମାଣ୍ଡମାଳା ଅନାଦି କାଳରୁ,
ଅବିଶ୍ରାନ୍ତ ଭ୍ରାମ୍ୟମାଣ କେଉଁ ଲକ୍ଷ୍ୟେ ଅବା
ଜାଣନ୍ତି କି କେହି ସତେ ? ସେ ମହା-ରହସ୍ୟେ
ସମର୍ପି ନିଜରେ ସୃଷ୍ଟି-ସ୍ଥିତ-ଲୟ-କ୍ରମେ
ଉଦ୍ଭବି ହୁଅନ୍ତି ପୁଣି ବିଲୀନ କାହିଁକି,
କାହାର ଖିଆଲେ ଏହି ମହାଜଗତ୍‌ର
ଗ୍ରହ,ତାରା, ଦେବ, ନର, ନଭ, ଅଗ୍ନି, ବାୟୁ—
କେହି କି ଜାଣନ୍ତି ସତେ ? ଭୁଲିଯାଉଁ ଆମେ,
ଉର୍ଦ୍ଧ୍ୱପରି ତଳେ ଆମ ସୀମାହୀନ ବ୍ୟୋମ,
ସୀମାହୀନ ପୁଣି ବ୍ୟୋମ ଆମ ଚଉଦିଗେ,
ମହାଶୂନ୍ୟେ ସମଯାତ୍ରୀ କୋଟି ରବି ସହ
ଅବିଚ୍ଛିନ୍ନ ଅଙ୍ଗ ଆମେ ବିରାଟ ସୃଷ୍ଟିର ।

---

୮. କମ୍ୟୁନିଷ୍ଟମାନେ ଧର୍ମ ଓ ଈଶ୍ୱରରେ ବିଶ୍ୱାସ କରନ୍ତି ନାହିଁ ।

ଆମେ ସୂର୍ଯ୍ୟ, ଆମେ ତାରା ଧ୍ରୁବ, ଓରିୟନ [୯]
ଆମେ ବାୟୁ, ଜଳ, ବୃକ୍ଷ, ଜୀବ, ମାଟି ପରି,–
ଭିନ୍ନତା-ପ୍ରତ୍ୟୟ ଖାଲି ଦୃଷ୍ଟି, ଭାବନାର
ମାୟା-ଅନ୍ଧତାରୁ ଜାତ ।
ତୁମ୍ଭ ଦେଶେ 'ସେପି'
ପ୍ରତିଷ୍ଠିଛ, ତମେ ଯାହା ରାଷ୍ଟ୍ର ନିରୀଶ୍ୱର,-
ଭାବିଛ କି ସେ ଆଦର୍ଶ-ପ୍ରଥମ-ପ୍ରଚାର,
ବୁଦ୍ଧବାଣୀ ରୂପେ ଲଭି ଆଦ୍ୟ ଆବିର୍ଭାବ,
ଘଟିଥିଲା ଏ ଭାରତେ, ସମଗ୍ର ଧରାରେ ?
ନର-ପ୍ରତିବିମ୍ବ-ମାତ୍ର-ଈଶ୍ୱରର ପୂଜା
ପ୍ରତ୍ୟାଖ୍ୟାନି, ଜୀବ-ପୂଜା ମୈତ୍ରୀ କରୁଣାରେ
ପ୍ରଚାରି, ସୋପାନ ରୂପେ ଆତ୍ମ-ଜାଗୃତିର,
ବୁଦ୍ଧହିଁ ଜଗତେ ଦେଲେ ପ୍ରଥମ ସମ୍ମାନ
ନରତ୍ୱରେ, ଜୀବନରେ, ଇହଜଗତ୍‌ରେ,
'ପ୍ରେମ' 'ଅହିଂସାରେ' କହି ଶ୍ରେଷ୍ଠ ଆରାଧନା ।
ଲେନା, ଭଲ୍‌ଗା, ନିପର୍‌ର କୂଳେ କୂଳେ ଆଜି
ନରତ୍ୱ-ବିକାଶ-ପୂଜା ପାଇଁ ନବାଳୟ
ତମ ଦେଶେ କରାଇଛି ଠିଆ ବଂଧୁ, ଯାହା
ଧିକ୍‌କାରି ପ୍ରାଚୀନ ମସ୍କ, ଚର୍ଚ୍ଚ, ମନ୍ଦିରରେ;
ନୁହେଁ କିନ୍ତୁ ତାହା ବଂଧୁ, ନର, ଈଶ୍ୱରର
ପରିପୂର୍ଣ୍ଣ ଜୟଗାନ । ହିଂସା-କଳୁଷିତ,
ମାନବ-ଆତ୍ମାରେ ତାହା ପୁଷ୍ପମାଲ୍ୟ ତଳେ
ଗୋପନ ଛୁରିକା ସମ ଘୃଣ୍ୟ ଅପମାନ !
ପୁରାଣ ଭାରତ, ବଂଧୁ, ନରତ୍ୱରେ କେବେ
ଦେଖିନି ବିଚ୍ଛିନ୍ନ କରି ନିଖିଳ ସୃଷ୍ଟିରୁ ।
ସଭ୍ୟତାର ଆଦିକାଳୁ ଭାରତର ଦ୍ରଷ୍ଟା
ଯାଇଛନ୍ତି ମୁକ୍ତକଣ୍ଠେ କରି ପ୍ରଚାରିତ—
ସମଗ୍ର ସୃଷ୍ଟିରେ ବ୍ୟାପ୍ତ ଏକ ପ୍ରାଣ-ଶକ୍ତି
ପ୍ରକଟ ଯା' ଅୟୁତଧା ବ୍ୟୋମୁଁ ରେଣୁ ଯାଏଁ
ସୃଷ୍ଟି-ସ୍ଥିତି-ଲୟ କ୍ରମେ । ସେହି ସେ ଶକ୍ତିରେ
ଭାରତର ଋଷି ନାହିଁ ବର୍ଣ୍ଣିଛନ୍ତି କାହିଁ,

୯. ଓରିଅନ - ଆକାଶରେ ଏକ ବିରାଟ ଉଜ୍ଜ୍ୱଳ ନକ୍ଷତ୍ରପୁଞ୍ଜ ।

କ୍ରୂର ଦଣ୍ଡଦାତା ରାଜା, ବିଚାରକରୂପେ ।
ବର୍ଣ୍ଣିଛନ୍ତି ତା'ରେ କହି ଅନ୍ଧକାର ପରେ
ଜ୍ୟୋତିର ପରମଜ୍ୟୋତି, ସ୍ଥୂଳ ତଳେ ସୂକ୍ଷ୍ମ,
ଆ-ରେଣୁନକ୍ଷତ୍ରବ୍ୟାପୀ ଅଲଂଘ୍ୟ ନିୟମ,
ନିସର୍ଗରେ ଅଗଣିତ ଚିରକ୍ଷୀୟମାଣ
ପ୍ରାଣୀ, ଉଦ୍ଭିଦର କୋଟି ନାମ ରୂପ ତଳେ
ବାକ୍ୟ-ମନ-ଅଗୋଚର ସାର୍ବଭୌମ ସତ୍ତା ।
ସେହି ସେପିଲ୍‌କୋ, ବାକ୍ୟ-ଚିତ୍ତ-ଅଗୋଚର,
ଉଦ୍ଭାସିତ ଦେଖ ଏଇ ଆମ ଚତୁର୍ଦ୍ଦିଗେ
ଊର୍ଦ୍ଧ୍ୱେ, ଅଧେ, ବାମେ, ଦକ୍ଷେ, ସମ୍ମୁଖେ, ପଶ୍ଚାତେ
କୋଟି କୋଟି ସୂର୍ଯ୍ୟ ତାରା, ଗ୍ରହମଣ୍ଡଳୀର
ଅକଳ୍ପିତ ସମାବେଶେ, ଆମ ଏ ଧରାରେ
ପୁଣି ଏହି ପ୍ରକୃତିର ମୋହନ ବିକାଶେ,
ଏ ଅଂଧାରେ, ଏ ଆଲୋକେ, ପୁଣି ଏଇ ଦେଖ
ଧୀର ଊର୍ଦ୍ଧ୍ୱଗାମୀ ଏଇ ଭଗ୍ନ ଶୀତାଂଶୁର
ଶାନ୍ତ, ସ୍ନିଗ୍ଧ ମାୟାଲୋକେ । କି ବାଧା ଏଥିରେ
ପ୍ରଣମିବା ବିସ୍ମୟରେ, ମୁଗ୍ଧ ମାନବର
ବିସ୍ମାପକ ଏ ସୃଷ୍ଟିରେ, ଅବା ତା ସ୍ରଷ୍ଟାରେ ?''

ତରୁଣ ସାଥୀରେ ନାହିଁ ଦେଇ ଅବସର
ଯୌବନ-ରଭସ-ବାବଦୂକୀ ସେ ତରୁଣୀ
ଚିତ୍କାରି କହଇ ପୁଣି, ଦେଖାଇ ଅଂଗୁଳି,
''ଦେଖ ସେପିଲ୍‌କୋ, ଦେଖ, କି ପରିବର୍ତ୍ତନ
ହଠାତ୍ ଏ ଯାଦୁମୟୀ ପ୍ରକୃତି-ନାରୀର !
ଚତୁର୍ଦ୍ଦିଗ ଜ୍ୟୋସ୍ନାପ୍ଲୁତ ତାରକା ମେଳଣ
ଊର୍ଦ୍ଧ୍ୱେ ହୋଇଆସେ ଧୀରେ କିଞ୍ଚିତ୍ ଅସ୍ପଷ୍ଟ,
ନିମ୍ନେ କିନ୍ତୁ ପ୍ରଚ୍ଛନ୍ନ ଯା ଥିଲା ଏଇମାତ୍ର,
ଆସ୍ତେ ହୋଇଆସେ ସ୍ପଷ୍ଟ । ନୀଳଗିରିଶ୍ରେଣୀ
ବିନା ହିମେ ଅନୁକରି ତୁଷାରିତ ବେଶ
ଦୂର ହିମାଦ୍ରିର, ଅବା ହସନ୍ତି କୁତୁକେ;
ଦୂର ଦ୍ୱୀପମାଳା, ତୀରବନ, ଚାରିଆଡ଼
ଆଚ୍ଛାଦିତ ଏବେ ଶୀତାଂଶୁର ମାୟାଜାଲେ;

ଦୂର ସେହି ସିଂହେଶ୍ୱର ଚୂଳେ ଆମ ବାସେ
ଜଳେ ଦେଖ ବିଦ୍ୟୁତ୍‌ର କନକ ପ୍ରଦୀପ ।
ଉତ୍‌କଣ୍ଠିତ ହୋଇବେଣି କକା ଓ ମାଉସୀ,
ଚାଲ ଏବେ ଯିବା ଫେରି,—ଫେରା ରେ ନାଉରି ।''
ଗାଅ ତମେ ଫେରାପଥେ ମଧୁ-ଗାନ ଏକ
ଗାଆନ୍ତି ଯା' କଇବର୍ତ୍ତ 'କୃଷ୍ଣ ସାଗରରେ' ।
କହୁଥିଲ ତୁମେ ପରା ଆମ ଏ ଚିଲିକା
'କୃଷ୍ଣ ସିଂଧୁ' ଦୃଶ୍ୟ ଆଣେ ସ୍ମୃତିରେ ତୁମର,
ପରିପୂର୍ଣ୍ଣ କର ସେହି ସ୍ମୃତିର ଚିତ୍ରଟି
ଗାଇ ଏକ ଗୀତ ଇଉକ୍ରେନୀ କେଉଟର ।
ତମ ଗୀତ ପରେ ଏଇ ଓଡ଼ିଆ ଧୀବରେ
ଶୁଣାଇବେ ନିଜଗଢ଼ା ନାବିକ-ସଂଗୀତ ।
ଏଇ ହ୍ରଦ, ଏଇ ଗିରି,ଏଇ ବେଳାଭୂମି,
ରୁଷିଆର କାସ୍ପିୟାନ, କୃଷ୍ଣ-ସିନ୍ଧୁପରି
ମୋ ଜାତି-ଚିତ୍ତର ଏକ ଅଂଶ ଅବିଚ୍ଛେଦ୍ୟ ।
କବିଜନ-ବନ୍ଦିତ ଏ ଇତିହାସ ଯାରେ
ଯୋଗ୍ୟ ରଙ୍ଗମଞ୍ଚ ଭାବି ଯାଇଛି ଏଠାରେ
କରି କେତେ ରସବନ୍ତ ନାଟକାଭିନୟ
ଘରେ ଗଲେ କକା ତାହା କହିବେ ବିସ୍ତାରୀ ।''

ନଉକା ଫେରାଇ ତୀରେ ହ୍ରଦଜଳେ ସୃଜି
ଅଗଣିତ ତାରାପୁଞ୍ଜ ନିଜ ବିଘୂର୍ଣ୍ଣନେ,
ସେପିଲକୋ ଊର୍ଦ୍ଧ୍ୱେ ଚାହିଁ, ପ୍ରସାରି ତା ହସ୍ତ
ଉଚ୍ଛ୍ୱସିତେ ଗାଏ ଏହି ରୁଷୀୟ ସଂଗୀତ—
କୃଷ୍ଣସାଗରର ଏକ ନାବିକର ସ୍ୱପ୍ନ ।

(ଗୀତ)

ଗହମ ଖେତରେ
ବସନ୍ତ ଲାଗି
ସୁନାର ଫସଲ ବିକାଶେ,

ସୁନାର ନାଟେଶା
ଯଉବନ-ଦ୍ୱାରେ
ଦେବ ଫୁଲମାଳା କା' ଆଶେ ?
କୂଳେ ଫେରିଗଲେ
ଚେରି କୁଞ୍ଜରେ
ସ୍ୱପ୍ନ ମୁଁ ରଚେ—
ନବ ବିଚରିତ ଦୁନିଆଁ;
ଶଙ୍କା-ମୁକ୍ତ,
ଗତ-ଦାରିଦ୍ର୍ୟ
ନିଜେଇ ନିଜର
ପ୍ରଭୁ ! ମୁଁ କାହାର
ଦାସ ନୁହେଁ, ନାହିଁ ଛାନିଆଁ ।
ମାଟିର, ପାଣିର
ଶ୍ରମିକଶ୍ରେଣୀର
ଦୀନକୁଟୀ ଆଜି,
ମଧୁ ଆରାମର ଉଟଜ,
ଜମି, ଜୀବନର
ମାଲିକ ଆମରି—
ସମୂହ,-ସର୍ବ-ଶୁଭଜ ।
ସେହି ସ୍ୱପ୍ନର—
ସଂସାରେ ଥିବ
ନାହିଁ କି, ନାଟେଶା ପାଶରେ ?
ଦେଖିବକି ସେ କି
ଆଉ କା' ନୟନେ
ଦୀପ ଜଳିବାର
ମୁଗ୍‌ଧ, ମଧୁ ତା ହସରେ ?
ବସନ୍ତ ଆଜି
ନୂତନ ଚେତନା
ଅଙ୍ଗେ ଅଙ୍ଗେ
ଆଣିଛି ପୁରୁଣା ଧରାର—

ନବ ଦୁନିଆର ସ୍ୱପ୍ନ; ମୋର ଚିତ୍ତେ,
ନାଚେଶା ଜିଆଇ, ନିଜ ସଂଗୀତେ,
କମରେଡ୍ ହୋଇ,
ନ ହେବ କି ମୋର
ଛୋଟ ତଡ଼ାଗର ମରାଳ ?

X X X

ସେପିଲ୍‌କୋ ଗାନ ପରେ ଚିଲିକା-କେଉଟ,
ବିଶ୍ୱମିତ୍ରା-ଅନୁରୋଧେ ଗାଏ ଏହି ଗାନ
ନଉକାର ଛାତ କଣେ ବସି ନେତ୍ର ବୁଜି,
ଖଞ୍ଜଣିରେ ଦେଇ ତାଳ ଭାବ ଅନୁରୂପେ ।

ବିଷୟାବିଷରେ ଘାରି ହୋଇ, ସରେ
ଦିବାନିଶି ପରମାୟୁ,
ଚିତ୍ତ-କମଳରେ ବିଜେ କର ଥରେ;
ପାପ,ପ୍ରଭୁ, କଟିଯାଉ,
ସୂର୍ଯ୍ୟେ କମଳ
ପ୍ରାୟ ଥାଉ ଧ୍ୟାନ ଅଟଳ ।

ଭାରିଯା, ବାଂଧବୀ, ପୁଅ, ସ୍ନେହ-ସେବୀ
କେ ନୁହେଁ ସଂକଟ ଘାଟରେ,
ସକଳ ସୁଆର୍ଥ, ଅର୍ଥ ସାର ମାତ୍ର,
ସର୍ବେ ଯିବେ ଯେଝା ବାଟରେ,
ଜୀବ-ଜୀବନ,
ତୁମ୍ଭେହିଁ ସଂକଟ-ତାରଣ ।

ବିପଦ, ସଂପଦ, ଧନ, ମାନ, ପଦ
ସବୁ ପ୍ରଭୁ ତୁମ୍ଭ ରଞ୍ଜନା,
ଅହମିକା-ବିଷେ ନିମିଷେ ନିମିଷେ
ଘାରି, ଯେତେ ପାଉଁ ଗଂଜଣା,
ଜଗନ୍ନାଥ ହେ,
ବୃଥା ଅହଂକାରୁ ଜୀବନ ଉଦ୍ଧାରି
ପ୍ରାଣେ ଦିଅ ପରମାର୍ଥ ହେ ।

X X X

ପରସ୍ପର ଅନୁବାଦେ ମିତ୍ରା-ସେପିଲ୍‌କୋ
ବୁଝିଲେ ତାତ୍ପର୍ଯ୍ୟ ଦୁହେଁ ଦୁଇ ସଂଗୀତର ।
ମିତ୍ରା ଭାବେ ମନେ ମନେ—'କଠିନ-ମରମ
କମ୍ୟୁନିଷ୍ଟ ମଧ୍ୟ ଖୋଜେ ଅନ୍ତରରେ ତା'ର
ମୃଦୁ, କାନ୍ତ ନାରୀ-ସ୍ପର୍ଶ । ବିରାଟ ବିପ୍ଳବ
ନାରୀତ୍ୱର ସ୍ୱାଦ ବିନା ସତେ ବା ବିଅର୍ଥ !'
ସେପିଲକୋ ଭାବେ ତେଣେ ଅବ୍ୟକ୍ତ ଅନ୍ତରେ—
'ଆଶ୍ଚର୍ଯ୍ୟ ଏ ଭାରତର ଜନତା-ସଭ୍ୟତା,
ନିରକ୍ଷର କଇବର୍ତ୍ତ ଖୋଜିପାରେ ଯହିଁ
ଦୈନନ୍ଦିନ ଶ୍ରମତଳେ ବିରାଟ ସତ୍ତାରେ !'
କେହି କା'ର ମନ-ବାଣୀ ନାହିଁ ଖୋଲି, ମୌନେ
ରହିଲେ ନଉକା ଛାତେ, ଚାହିଁ ଚତୁର୍ଦ୍ଦିଗେ,
ନାବ ଧୀରେ ଧୀରେ ଲାଗେ ସିଂହେଶ୍ୱର କୂଳେ ।

## [ ଦ୍ୱିତୀୟ ସର୍ଗ ]

''ସମରେ ଦୁର୍ଦ୍ଧର୍ଷ ଜାତି, କ୍ରୂର ବ୍ୟବସାୟେ,
ଶାସନେ ନିକିତିଧରା ନ୍ୟାୟ-ତନ୍ତ୍ର-ବାଦୀ,
ସେହି ସେ ଇଂରେଜେ, କକା, କେମ୍ବ୍ରିଜେ, ଲଣ୍ଡନେ,
ଦେଖି ଯାଇ ସଂସ୍କୃତିର, ଜ୍ଞାନ-ବିଜ୍ଞାନର
ବିନୀତ ପୂଜାରୀରୂପେ । ଦେବୀ ସରସ୍ୱତୀ
ସହି ନାହିଁ ପାରି ଅବା ବିଦ୍ୟାର ଅଶ୍ରଦ୍ଧା,
ଜନତା ବଞ୍ଚିତ ହେବା ଶାସ୍ତ୍ରର ଆନନ୍ଦୁ
ମୁଷ୍ଟିମେୟ-ସ୍ୱାର୍ଥ ଲାଗି, ଏ ଭାରତଭୂମେ,
ତେଜି କ୍ରୋଧେ, ବିରାଗରେ, ନୀରବରେ କକା
ଚାଲିଯାଇଛନ୍ତି ବହୁକାଳୁ ଏଇ ଦେଶୁ
ବରି ଆଦରରେ ସେହି ଶ୍ୱେତାଙ୍ଗର ଦେଶେ ।
ଅକ୍ସଫୋର୍ଡ୍, କେମ୍ବ୍ରିଜର କଲେଜେ କଲେଜେ
ଭ୍ରମିଲେ ଲାଗିବ ଯେହ୍ନେ ଆସିଅଛ ତମେ
କେଉଁ ଏକ ପୁରାଣ ସେ ଦେବତାଧିଷ୍ଠାନେ,
ନିଶ୍ଚିନ୍ତ, ପବିତ୍ର, ଯା'ର ସାନ୍ନିଧ-ଲିପ୍‌ସାରେ

ଇତିହାସ ଯହିଁ ମାନି ପରାଜୟ କଳା,
ବିଶ୍ରାମ ନେଇଛି ଅବା ଅଳସ ଆମୋଦେ ।
ଭାଇ ପରି ଆଲିଙ୍ଗନ ଦିଏ ପରସ୍ପରେ
ତହିଁ ଉଗ୍ର ଆଧୁନିକ, ଶୃଙ୍ଖଳ ଅତୀତେ,
ଧର୍ମ ଓ ବିଜ୍ଞାନ ତହିଁ ବିଳସନ୍ତି ଯେହ୍ନେ
ଦୁଇ ଅଭିଜାତବଂଶୀ ସୁନ୍ଦରୀ ସଙ୍ଗିନୀ ।
କାଳଜୀର୍ଣ୍ଣ, କିନ୍ତୁ ଇତିହାସ-ଗୌରବିତ,
ସରଳ ସେ ସୌଧମାଳେ ଜ୍ଞାନ-ତପସ୍ୟାର
କି ମହାନ୍ ଚିତ୍ର କଳା ! ଦର୍ଶନମାତ୍ରକେ
ଶ୍ୱେତାଙ୍ଗ ସେ ଅଧ୍ୟାପକ-ଅଧ୍ୟାପିକାଗଣେ
ମନେହେବ, ଯେପରି କି ଏ ଆର୍ଯ୍ୟାବର୍ତ୍ତର
ଅତୀତର ଯାଜ୍ଞବଲ୍କ୍ୟ-ଲୋପାମୁଦ୍ରାଦଳ
ତତ୍ତ୍ୱର ସନ୍ଧାନ ଲାଗି ପଦାର୍ଥର ମାୟା
ସମୂଳେ ଉପାଡ଼ି ଚିତ୍ତୁ, ତେଜି ଲୋକ-ସଙ୍ଗ,
ଅଶ୍ରୁତ-ବାଙ୍ମୟ ମୂକ ପ୍ରକୃତିର କୋଳେ
କରୁଥିଲେ ବାସ ଯେହ୍ନୁ, ସେହି ସତ୍ୟଧ୍ୟାନୀ
ଜ୍ଞାନତପୀବୃନ୍ଦ ଆଜି ସପ୍ତସିନ୍ଧୁପାରେ
ଆର୍ବିଭୂତ ଶ୍ୱେତଭୂମେ ନବ ଜ୍ଞାନ ଆଶେ
ନବ କାଳେ, ନବ ବେଶେ, ନବ ପ୍ରୟୋଜନେ ।
ଏ ପୁରାଣ ଭାରତର କେଉଁ ପୀଠେ ହେଲେ
ନ ଦେଖିଲି, କଳା, ସେହି ଜ୍ଞାନ-ପୂତ ହୋମ,
ସତ୍ୟ ପାଇଁ ଜୀବନର ଯଜ୍ଞ-ନିବେଦନ,
ତତ୍ତ୍ୱର ସନ୍ଧାନ ଯହିଁ ବ୍ରତ-ଜୀବନର ।
ନାହିଁ ପାରି ଅବିମିଶ୍ର ଜ୍ଞାନର ସାଧନା,
ନାହିଁ ଦେଇ ସମାଜର ସର୍ବଶ୍ରେଷ୍ଠ ମାନ
ଜ୍ଞାନୀ, ଗୁଣୀ, କଳାକାର ବୁଦ୍ଧିଜୀବୀ ବୃନ୍ଦେ
କଳା ହେ, କେଉଁ କି ଜାତି କେବେ ଇତିହାସେ
ପାଇପାରିଅଛି କାହିଁ ବିଶ୍ୱର ସମ୍ମାନ ?
ପାରିଛି ବା କରି ଧରା-ଭୋଗ ଅକୁଣ୍ଠିତେ ?''

ସେହି ସେ ରୂପସୀ ବାଳା ହ୍ରଦବିହାରରୁ
ଫେରି ସେହି ସିଂହେଶ୍ୱର ଶିଖର ସଉଧ—

ଚିଲିକା-ପବନ-ନିରାଜିତ ଅଳିନ୍ଦରେ
ଅଳସେ ଗଳ୍ପଇ ବସି କକା ସାଥେ ତା'ର,
କମଳ-ଅନୁଜ ଯେହୁ,—ସ୍ୱାମୀ ମହାନନ୍ଦ,
ପାଶେ ମଧ ସମାସୀନା ନର୍ସ ବାଟ୍‌ସନ୍
ପୁରାତନ ଆମେରିକୀ-ଧାତ୍ରୀ କୁମାରୀର,
ମସ୍ତକେ ମହିମାମୟ ବୟସ-ରଚିତ
ଶୁଦ୍ଧ-ରୌପ୍ୟ-କେଶ-ଗଢ଼ା ତାନ୍ତବ ମୁକୁଟ ।
ରୁଷୀୟ ତରୁଣ ବଂଧୁ ସେପିଲ୍‌କୋ ଫେରି
ନିମ୍ନେ, ସିଂହେଶ୍ୱର ଗ୍ରାମେ ଯାଇଛି ଅଟକି
ଦେଖିବାକୁ ତନ୍ନତନ୍ନେ କୃଷକ-ଜୀବନ ।
ଏଇ ଅବସରେ କକା ସ୍ୱାମୀ ମହାନନ୍ଦ
ବସି ଶୁଣୁଛନ୍ତି ବିଦ୍ୟାବତୀ ଝିଆରୀର
ଭ୍ରମଣର ଅଭିଜ୍ଞତା । କହେ ବିଶ୍ୱମିତ୍ରା
ପୁଣି ପୂର୍ବ ସୂତ୍ର ଧରି—
''ଶୁଣୁଛତ କକା ?''
''ଶୁଣୁଛି ମା', ଶୁଣୁଛି ମା' ଅତ୍ୟନ୍ତ ଆଗ୍ରହେ,''
କହିଲେ ସେ ମହାନନ୍ଦ, ଗେରୁ-ଉଷ୍ଣୀଷର
ପୁଚ୍ଛ ତାଙ୍କ ଉଡୁଥାଏ ଚିଲିକା-ପବନେ ।
''ଶୁଣୁଛି ମା', କହିଯାଅ, ନ ହେଲେ କିପାଇଁ
ଜିଜ୍ଞାସି ଥାଆନ୍ତି ତୋର ଭ୍ରମଣର ଜ୍ଞାନ ?
କହିଯା ମା' !''

କହେ ପୁଣି ବିଶ୍ୱମିତ୍ରା ହସି-
''ଯାଅ କକା ଥରେ ତମେ, ବୁଲିଆସ ଯାଇ
ସେ ସଭ୍ୟ, ସୁନ୍ଦର ଦେଶେ; ମନୁଷ୍ୟ, ପ୍ରକୃତି
ଦୁହିଁର ମିଳନ ଯହିଁ ମାଟିର ଧରାରେ
ପରିଣତ କରିଅଛି ପ୍ରମୋଦ-ଉଦ୍ୟାନେ.
ଦୁଃଖମୟ ଏ ଜୀବନେ, ଉପଭୋଗମୟ ।
ଏସିଆର ଜୀବନହିଁ ଦୁଃଖର କାହାଣୀ,
ୟୁରୋପେ ଜୀବନ ଅର୍ଥ ସଂଗ୍ରାମ ଓ ଭୋଗ ।
ଏ ଦେଶେ ମାନବ ଆତ୍ମା ଚିର ପଳାତକ
ଜୀବନର ଭୀଷ୍ମତାରୁ; ସେ ଦେଶେ ଜୀବନ

ଯେହ୍ନେ ପଶୁରାଜ,—ଶକ୍ତିମନ୍ତ, ଭୟହୀନ
ବରିନେଇ କେଶରିଣୀ-ପ୍ରକୃତି-ଲଳନା
ଭୋଗେ ତା'ର ବିଭୀଷିକାମୟ ରସଧାରା
ନିଜ ହସ୍ତେ ଭୀମେ କରି କାନ୍ତେ ପରିଣତ !
କିପାଇଁ ସନ୍ନ୍ୟାସୀ ହେଲ , କି ପାଇଲ କକା,
କି ଦେଇ ବା ଯିବ ତମେ ଜନନୀ ଧରାରେ ?
କିସ ଏ ଜୀବନାଦର୍ଶ ? ଆରାଧ ମୋ ପିତା,
ବରେଣ୍ୟା ଜନନୀ ମୋର, ଥାଇ ଭାରତୀୟ.
ଅନ୍ତରରେ ଥିଲେ କିନ୍ତୁ ଗାଢ଼ ୟୁରୋପୀୟ ।''

ଯୋଡ଼ି କର ନୀରବରେ, ଜଣାଇ ବିନତି,
କହନ୍ତି ସନ୍ନ୍ୟାସୀ-କକା ଧୀର, ନମ୍ର ବାଣୀ,
'' ନ ଭୁଲ ମା', ଯୁଗ୍ମ ସେହି ମାନବ, ମାନବୀ
ମୋହର ବି ଚିରପୂଜ୍ୟ । ପିତା-ମାତା ଆମ,
ଜାଣୁ ତ ମା' ଗଲେ ଚାଲି ଦୁଃଖେ, ଅବୟସେ,
ଭାଇ ସେହି ବଢ଼ାଇଲେ ମତେ, ଭଗିନୀରେ
ହୋଇ ଯୁଗ୍ମ ପିତା-ମାତା, ଉଦାର ଭ୍ରାତୃତ୍ୱେ ।
ସେହି ତ ମା', ଭାରତର ସ୍ୱର୍ଣ୍ଣମୟ ଆତ୍ମା,
ନିବିଡ଼ ଦାରିଦ୍ର୍ୟ ମଧ୍ୟେ, ଭାଇ ଭଗିନୀର
ନିର୍ମଳ ଏ ସ୍ନେହ-ବନ୍ଧା, ପ୍ରାଣର ସମ୍ବନ୍ଧ,
ପଦାର୍ଥ ଉପେକ୍ଷି, ତା'ର ତଳେ ଖୋଜିବାର
ଅଦୃଶ୍ୟ ଆନନ୍ଦ, ତେଜି ପଦାର୍ଥର ବାହ୍ୟ
ତାତ୍‌କାଳିକ ଚାଂଚଲ୍ୟରେ, ପରିଣାମେ ତା'ର
ପାଇବା ଦ୍ୱିତୀୟ ଦୃଷ୍ଟି.....ଥାଉ ମା' ସେକଥା,
ପରେ ତତେ ବୁଝାଇବି ......କହିଯା' ତ ଥରେ
ପୂରା ତୋର ଅଭିଜ୍ଞତା, ଦେଶ-ଭ୍ରମଣର ।
ଆସିଯିବ ସେପିଲ୍‌କୋ,—ଘଣ୍ଟା-ନିୟନ୍ତ୍ରିତ
ୟୁରୋପୀୟ ପ୍ରାଣ ତା'ର ଲୋଡ଼ିବ ଡିନର୍
ପୁଣି ତ ଏ ଅଳ୍ପ କ୍ଷଣେ । ଏଇ ଅବସରେ
ଶୁଣିଯାଏ ତୋ ମୁଖରୁ, ତୋର ଅଭିଜ୍ଞତା ।''

'' ହଉ କକା'' କହି ମିତ୍ରା ପୁଣି ଧରେ ସୂତ୍ର,—
''ପୂଣ୍ୟତୋୟା ଜାହ୍ନବୀର ଗର୍ବ କରୁଁ ଆମେ,

କିନ୍ତୁ କକା, ସେଇ କ୍ଷୁଦ୍ର, କାମ୍ –ଆଇସିସ୍–[୧]
ଧୌତ ସେହି ସୌଧୋଦ୍ୟାନମୟ ଜ୍ଞାନପୀଠେ,
ସେ କେମ୍ବ୍ରିଜ୍, ଅକ୍ସଫୋର୍ଡ଼େ, ଯେତେ କବି, ଜ୍ଞାନୀ
ଉଦ୍ଭବି ସମଗ୍ର ବିଶ୍ୱ କଲେ ସମୁଜ୍ଜ୍ୱଳ,
କାହିଁ ତାର ପଟାନ୍ତର ? ଏକା ସେ କେମ୍ବ୍ରିଜେ
ନିଉଟନ୍, ଡାରବିନ ମୂକ ପ୍ରକୃତିର
ନିରୁଦ୍ଧ ରହସ୍ୟଜାଳ ଗଲେ ତ ଉଦ୍‌ଘାଟି;
ୱାର୍ଡ଼ସ୍‌ୱାର୍ଥ, ବାଇରନ୍ ଛାଡ଼ିଗଲେ ଗାଥା,
(ଏକ ଦିଏ ପ୍ରାଣେ ଶାନ୍ତି, ଆନ ସୃଜେ ଝଡ଼)
ମିଲ୍‌ଟନ୍, ଟେନିସନ୍ ସେହି ସ୍ଥାନେ ପୁଣି
ମାନବର ସ୍ୱପ୍ନ, ଆଶା, ବିଶ୍ୱାସ ସକଳ,
ଥୋଇଗଲେ କାବ୍ୟେ କାବ୍ୟେ, ମାନବ ବାଣୀର
ଅତୁଲ୍ୟ ଐଶ୍ୱର୍ଯ୍ୟ ଶିରୀ କରେ ଯା' ପ୍ରକାଶ !''

ମୃଦୁ ହସି କହେ ବୃଦ୍ଧା ମିସି ବାଟ୍‌ସନ୍,
''ଧନ ମୋର, ମାଲ୍‌କମ୍ ସହ ପରିଚିତ,
ହେଲୁ ନା ସେ କେମ୍ବ୍ରିଜରେ ? ଅବା ଏଡ଼ିନ୍‌ବରେ ?–
ନା, ନା ସେହି କେମ୍ବ୍ରିଜରେ, ଟ୍ରିନିଟି କଲେଜ-
ସୁବିଖ୍ୟାତ ଉଦ୍ୟାନରେ ।''

''ହଁ ଲୋ ମାଉସୀ,
ଟ୍ରିନିଟି ଉଦ୍ୟାନେ ହେଲା ପ୍ରଥମ ସାକ୍ଷାତ''-
କହେ ବିଶ୍ୱମିତ୍ରା ହସି । କକା ଆଡ଼େ ଫେରି
କହେ ପୁଣି- ''ସ୍କଟ୍-ଇଂଗ ଧନିକ ଯୁବକ,
ସୁନ୍ଦର, ଆଦର୍ଶବନ୍ତ, ବିଶ୍ୱଜନପ୍ରେମୀ,
ଦେଖିବା ମୁହୂର୍ତ୍ତୁ, କକା, ମାଉସୀ ମୋହର.
ପୁଅ ପରି ସ୍ନେହ ତାଙ୍କୁ ଦେଇଛନ୍ତି ଢାଳି,
ହୋଇ ମୋ' ଈର୍ଷାର ବସ୍ତୁ । ଆସିବ ସେ ଏବେ,–
କିନ୍ତୁ କକା ସାରିଦିଏ ପର୍ଯ୍ୟଟନ-କଥା ।

---

୧. କାମ୍ ନଦୀ କୂଳରେ କେମ୍ବ୍ରିଜ ଓ ଆଇସିସ୍‌କୂଳରେ ଅକସ୍‌ଫୋର୍ଡ଼ ଅବସ୍ଥିତ । ଆମ ଓଡ଼ିଶାର ଦି'ଟା ଦି'ଟା କେନାଲକୁ ଯୋଡ଼ିଦେଲେ ଯାହା, ଏହି ନଦୀଗୁଡ଼ିକ ପ୍ରାୟ ସେତିକି ଓସାର ହେବେ ।

''ଦେଖ୍ ଯା' ଆସିଛି କକା, କିପରି ବର୍ଣ୍ଣିବି ?
ଲଣ୍ଡନ, ପାରିସ୍, ଆଉ ଭେନିସ୍ ବିଭବ ?
ବିରାଟ ସେ ଜନାରଣ୍ୟ,—ଯା' ନାମ ଲଣ୍ଡନ—
ସେଇଠି ଇଂରେଜ ଆଣି ସଂପାଦିଛି ଗୁପ୍ତେ
ସମଗ୍ର ବିଶ୍ୱର ଜ୍ଞାନ, କଳା, ଇତିହାସ,
ଏକ ବକ୍ଷୁଁ ଯା'ର ପିଇ ଜ୍ଞାନ-ଦୁଗ୍ଧ-ଧାରା
ଏକାଧାରେ ମାର୍କସ୍ ଆଉ ଗାନ୍ଧିର ଉଦ୍ଭବ [୨]
ହୋଇଛି ଇଦାନୀ କାଳେ । ମାନବଲୀଳାର
ପ୍ରତିଟି ଅଂଶର ତହିଁ ପରମ ବିକାଶ,
ଭାସ୍କର୍ଯ୍ୟୁଁ ତାସ୍କର୍ଯ୍ୟ ଯାଏଁ; ପରମ ତପସ୍ୟା
ବିରାଜିତ ସ୍ଥାନେ ସ୍ଥାନେ, ବ୍ୟଭିଚାର ପାଶେ ।
ଉଗ୍ର ସ୍ୱାଧୀନତାପ୍ରେମୀ ସାକ୍ସନ ସେ ଜାତି[୩]
ପ୍ରତ୍ୟେକ ଆତ୍ମାରେ ଦେଇ ନିର୍ବନ୍ଧ ସ୍ୱାତନ୍ତ୍ର୍ୟ
ସମଗ୍ର ଜାତିରେ କରିଅଛି ବର୍ଣ୍ଣମୟ
ଅୟୁତ-ଜୀବନ-ପୁଷ୍ପ-ସ୍ୱକୀୟ-ବିକାଶେ ।
ଏ ଧରାର ଯେଉଁ ପ୍ରାନ୍ତୁ ଆସୁନା ବିଦେଶୀ,
ଦେଲା ମାତ୍ରେ ପାଦ, ଶ୍ୱେତଦ୍ୱୀପ ମୃତ୍ତିକାରେ
ହୁଏ ସେ ସ୍ୱାଧୀନ ନର୍ ନିଃଶଙ୍କ ନିର୍ଭୟ
ଖାଣ୍ଟି ଇଂରେଜର ସାଥେ ସମ-ଅଧିକାର ।
ସ୍ୱଭାବ-ସଂକୀର୍ଣ୍ଣ ନର ହେବା ବିକଶିତ
ଏଭଳି ଆତିଥ୍ୟେ, ଆଉ ପୁଣ୍ୟ ଔଦାର୍ଯ୍ୟରେ
ଘଟିବାର କାହିଁ କକା, ଦେଖିଛ, ଶୁଣିଛ ?

---

୨. କମ୍ୟୁନିଜମ୍‌ର ଜନ୍ମଦାତା କାର୍ଲ ମାର୍କସ୍ ଜର୍ମାନ୍ ହେଲେହେଁ ଜୀବନର ଶ୍ରେଷ୍ଠାଂଶ ସେ ଲଣ୍ଡନରେ କଟାଇଥିଲେ ଓ ତାଙ୍କ ଜୀବନ-ଦର୍ଶନର ଉପାଦାନ ସେ ବ୍ରିଟିଶ ମ୍ୟୁଜିୟମ୍‌ର ପୁସ୍ତକାଳୟରୁହିଁ ସଂଗ୍ରହ କରିଥିଲେ । ମୋହନ ଦାସ କରମଚାନ୍ଦ ଗାନ୍ଧି ନାମକ ଏକ ଗୁଜରାଟୀ ଯୁବକ ଏଇ ଲଣ୍ଡନରେ ବାରିଷ୍ଟରୀ ପଢ଼ିଲାବେଳେଇ ତାଙ୍କ ଭିତରେ ପରବର୍ତ୍ତୀ ମହାତ୍ମାର ବୀଜ ଉପ୍ତ ହୋଇଥିଲା । ଗାନ୍ଧି ଈଶ୍ୱରଭକ୍ତ; କାର୍ଲମାର୍କସ୍ ନିରୀଶ୍ୱରବାଦୀ ।

୩. ଆଧୁନିକ ଯୁଗରେ ବ୍ୟକ୍ତି-ସ୍ୱାଧୀନତା ଓ ଗଣତନ୍ତ୍ର ଶାସନର ମହାନ୍, ସୁନ୍ଦର ଆଦର୍ଶ ହେଉଛି ଆଙ୍ଗ୍ଲୋ-ସାକ୍ସନ ଜାତି । ଇଂରେଜମାନେ ଏହି ଆଙ୍ଗ୍ଲୋ-ସାକ୍ସନ ଜାତିର ଲୋକ । ମାନବିକ ମର୍ଯ୍ୟାଦାର ପରମତମ ଆଦର୍ଶ ଇଂଲଣ୍ଡର କବି ଓ ଚିନ୍ତାନାୟକମାନଙ୍କ ଲେଖାରେହିଁ ଫୁଟିଉଠିଛି । ଇଂଲଣ୍ଡର ମାଟିରେ ପାଦ ଦେଲେଇ ମଣିଷ ସ୍ୱାଧୀନ ।

ତା' ପରେ ଦେଖିଲି ପାରୀ,—ନଗରୀ ସମାଜେ
ପ୍ରକୃତ ସୁଷମାମୟୀ, ଅନ୍ତରହାରିଣୀ,
କିନ୍ତୁ ତା'ର ମାୟାଜାଲେ ଫରାସୀ ଜାତିରେ
ରଖିଛି ସେ କ୍ଷିପ୍ତ-ଚିତ୍ତ, କ୍ଷିପ୍ରୋଷ୍ଣ-ଶୋଣିତ,
ଧୈର୍ଯ୍ୟହୀନ, ସ୍ଥୈର୍ଯ୍ୟହୀନ, ଦୃଢ଼ବୀର୍ଯ୍ୟହୀନ ।
ତା'ପରେ ଇଟାଲୀ ଗଲୁ, ୟୁରୋ-ସଭ୍ୟତାର
ପ୍ରାଚୀନ ଜନନ-ସ୍ଥଳୀ । ରୋମ୍, ନେପଲ୍‌ସ୍,
ଫ୍ଲରେନ୍‌ସ୍, ମିଲାନ୍ ଆଦି ପ୍ରାଚୀନ ନଗରୀ
ବୃତ୍ତାନ୍ତ ଯେ ସବୁ କକା, ନଗର-କଳାର । [୪]
ଇତିହାସ-ବିଭୂଷିତ ପ୍ରତି ଗୃହ ଯା'ର
ପ୍ରତି ପଥ, ପ୍ରତି ଘାଟ, ପ୍ରତି ଶୃଙ୍ଗାଟକ,
ସେହି ସେ ମହିମାମୟୀ ରୋମକ ନଗରୀ
ଅଭିଭୂତ କରେ କକା, ଦର୍ଶକମାତ୍ରକେ ।
ନୀଳ, ଶାନ୍ତ, ଅର୍ଦ୍ଧବୃତ୍ତ ସାଗର ଆବୋରି
ନେପ୍‌ଲ୍‌ସ ନଗରୀର କିବା ସେ ସୁଷମା,
ଶ୍ୱେତବସ୍ତ୍ରା ରୂପସୀ ସେ ହେଳା-ଲୀଳାୟିତା
ଯେହ୍ନେ ନୀଳ ଶଯ୍ୟାପରେ, କାନ୍ତ ଭୂଧରର ।
ବରୁଣର ରାଜଧାନୀ, ଜଳପଥମୟ,
ଭେନିସ୍ ପୁଣି ସେ, କକା,ଆରେକ ବିସ୍ମୟ,
ପ୍ରତି ଗୃହ-ବାତାୟନ ଚୁମ୍ବି ଚୁମ୍ବି ଯହିଁ
ଦୁର୍ଦ୍ଦାନ୍ତ ସମୁଦ୍ର ଯାଏ ପ୍ରିୟ, ସଖୀ ପରି ।[୫]
'ଜଳ'-ରାଜ୍ୟେ, କକା, ଦିନେ ପାରିଥିଲା କରି
ଯେ ଜାତି ବିସ୍ତାରକରି 'ସ୍ଥଳ'ର ସାମ୍ରାଜ୍ୟ,
ସମୁଦ୍ର ଊର୍ମିରେ କଲା ଗୃହ, ରାଜପଥ,
କଳ୍ପନା କର ତ କକା, ନର-ସଭ୍ୟତାର
କି ଉଚ୍ଚକୋଟିରେ ଯାଇ ଉଠିଥିଲା ଦିନେ
ୟୁରୋପର ସେ ଶ୍ୱେତାଙ୍ଗ !
ସେଠୁ ଫେରି ଏଇ

---

୪. ନଗର-ନିର୍ମାଣ, ବିଜ୍ଞାନ ଓ କଳା ମଧ୍ୟଯୁଗୀୟ ଇଟାଲୀରୁହିଁ ବାହାରି ସମଗ୍ର ପୃଥିବୀରେ ପ୍ରସାରିତ ହୋଇଛି ।

୫. ଭେନିସ ନଗରୀ ସମୁଦ୍ର ଜଳରୁ ଉଦ୍ଭୂତା । ତା'ର ଘରମାନଙ୍କର ଦ୍ୱାର ଓ ବାତାୟନର ଠିକ୍ ନିମ୍ନରେ ଆଡ୍ରିୟାଟିକ ସମୁଦ୍ରର ଶାନ୍ତ ଲହରୀ ଭାସି ଭାସି ଯାଏ ।

ପ୍ରାଚୀନ ଭାରତବର୍ଷେ ଭ୍ରମି ପ୍ରାନ୍ତୁ ପ୍ରାନ୍ତେ,
ଦେଖିଲି ଯା ବିଭୀଷିକା, ଘୃଣ୍ୟ ଆଦିମତା,
ଯେ ଦାରିଦ୍ର୍ୟ, ଅସଭ୍ୟତା, କୁତ୍ସିତ-ସନ୍ତୋଷ,
ତୁମକୁ କହୁଛି, କକା, ମର୍ମବାଣୀ ମୋର,
ୟୁରୋପର ତୁଳନାରେ ଆମର ଏ ଦେଶେ
କହିବାକୁ କୁଣ୍ଠିତ ମୁଁ ସଭ୍ୟ ଭବ୍ୟ ବୋଲି ।
ଭାରତୀୟ ସଂସ୍କୃତିର ଖାଣ୍ଟି ଉତ୍ସ ସବୁ,
ଦେଖାଇବି ବୋଲି ଏଇ ମାଉସୀଙ୍କୁ ମୋର;
ଗଲୁଁ ପୁରୀ, ବୃନ୍ଦାବନ, ଗୟା, ଋଷିକେଶେ,
ବନାରସେ, ମଥୁରାରେ, ତ୍ରିବେଣୀ-ସଂଗମେ ।
କି ଦେଖିଲୁ କିନ୍ତୁ କକା ? କି ଧର୍ମ ତମର ?
କି ସଭ୍ୟତା, କି ସଂସ୍କୃତି, କିସ ଲୋକାଚାର ?
ଲଜ୍ଜିତ ନ ହୋଇ ଆମେ ଗର୍ବିତ ହେ ପୁଣି
ଏସବୁ ବର୍ବରତାରେ ? ଗୟା, ମଥୁରାରେ
ଧର୍ମ ତ ଦେଖିଲୁ ନାହିଁ, ଦେଖିଲୁଁ କେବଳ
ମୂର୍ଖ, ହୀନ, ଗୁଣ୍ଡାଦଳ ଈଶ୍ୱରେ, ଧର୍ମରେ
ପଣ୍ୟ କରି ବଂଚୁଛନ୍ତି ଠକାଇ ଜନତା ।
ନିର୍ମଳ ଜାହ୍ନବୀ-ଜଳେ ମୃତ ଦେହରାଜି
ଧାଡ଼ି ଧାଡ଼ି ପଡ଼ିଥିବା ବନାରସ-ଘାଟେ
ବିଦ୍ରୋହୀ ଉଠିଲା ଚିତ୍ତ ଦେଖି ସେ ଜଘନ୍ୟ
ବିଭୀଷିକାମୟ ଦୃଶ୍ୟ । ଧୂଳିମୟ ପଥ
ଦୁଇ ପାର୍ଶ୍ୱେ ଦେଖି ଦେଖି ଚିତ୍କାରି ଭିକ୍ଷୁକ,
କୁଷ୍ଠରୋଗୀ ଦଳେ ଦଳେ, ଋଷିକେଶେ ପୁଣି
ଘୃଣାରେ ଭରିଲା ଚିତ୍ତ, କକା, ସେହିପରି ।

କିନ୍ତୁ ଋଷିକେଶ ତେଜି ଚଳିଲୁଁ ମସୌରି,—
କି ଭିନ୍ନତା ! ପ୍ରକୃତିରେ ଅଣାଇ ଆୟତ୍ତେ,
ହିମାଳୟ କଟିତଟେ ରୁକ୍ଷ ଶୈଳମାଳେ,
କି ସୁନ୍ଦର ପୁରୀ ଗଢ଼ିଯାଇଛି ଇଂରେଜ !
ଗଲୁଁ ତହିଁ ଗିରି-ଶୃଙ୍ଗ-ଶୀର୍ଷ-ଅବସ୍ଥିତ
ଖ୍ରୀଷ୍ଟୀୟ ବିଦ୍ୟାନୁଷ୍ଠାନେ, ଅଳିନ୍ଦରୁ ଯା'ର
ସ୍ପଷ୍ଟ ଦିଶେ ହିମାଦ୍ରିର ବରଫ-ମୁକୁଟ

ଭେଦି ଊର୍ଦ୍ଧ୍ୱେ ମେଘଲୋକ । କି ପରିଚ୍ଛନ୍ନତା,
କିବା ଶୁଚି, କିବା ଭାବ, କିବା ସମାବେଶ,
କି ଶୁଦ୍ଧ, ପବିତ୍ର ବେଶ, ସେବା ସମର୍ପିତା
ଭଗିନୀ[୬] ଦଳର ତହିଁ ସ୍ୱାସ୍ଥ୍ୟ, ସୁଷମାରେ
ସମଗ୍ର ପୀଠଟି ଯେହ୍ନେ ହେଲା ଅନୁଭବ
ସୁଲିଖିତ, ସୁପଠିତ,ପୁଣ୍ୟ ମନ୍ତ୍ର ଏକ ।
ସେହି ଶୁଚି, ସେହି ଭାବ, ସେ ପରିଚ୍ଛନ୍ନତା,
ଦେଖି ମୁଁ ହୋଇଛି ମୁଗ୍‌ଧ ପୁଣି ହେ ସର୍ବତ୍ର
ଇସ୍‌ଲାମର ମସ୍‌ଜିଦେ । ତମ ଧର୍ମ କକା,
କୁତ୍ସିତ ଏପରି କିପାଁ, ଆଦିମ, ବର୍ବର ?
ଶିବ-ସୁନ୍ଦରର ପୂଜା ହୋଇବ କିପାଇଁ
ଏସନେ ସୁଷମାହୀନ, କଦର୍ଯ୍ୟ, ଅଜ୍ଞାନ ?
ଯେ ଜାତି ବା ଜାଣିନାହିଁ ସୌନ୍ଦର୍ଯ୍ୟର ପୂଜା
ପ୍ରତିଟି କର୍ମରେ ତାର, ପ୍ରତି ପରିବେଶେ,
ସେ ଜାତି କି କରିପାରେ ସଭ୍ୟତାର ଗର୍ବ ?
ରାମକୃଷ୍ଣ ମିଶନରେ, ଅରବିନ୍ଦାଶ୍ରମେ
କରିବାକୁ ପରିବେଶ ଈଶ୍ୱରପୂଜାର
ଶୁଚିମନ୍ତ, ଶ୍ରୀମଣ୍ଡିତ, ବିଜ୍ଞାନ-ଚାଳିତ,
ହୋଇଛି ଆରମ୍ଭ କିଛି । ଗାଂଧି-ଅରବିନ୍ଦ—
ବିବେକାନନ୍ଦର ବାହ୍ୟ ଶୁଦ୍ଧ ଶୁଚିତାର
ବାଣୀ ଯେ ପର୍ଯ୍ୟନ୍ତ ନାହିଁ କରିଛି ଗ୍ରହଣ
ଏ ଭାରତ, କକା, ଥାଉ ଯେତେ ନା ଦର୍ଶନ
ତମର ପୁସ୍ତକାଳୟେ, ସଭ୍ୟଜାତି ବୋଲି
ତମରେ କହିବ କିଏ ?

ସାମାନ୍ୟ ଜାପାନ
ତମ ଧର୍ମ ନେଇ କକା, ସୌନ୍ଦର୍ଯ୍ୟପୂଜାରେ
ତୁମକୁ ଲଜ୍ଜିତ କରେ । ସମଗ୍ର ଜଗତେ,
ଛୋଟ ସେହି ଦ୍ୱୀପମାଳା ଉଦୟ-ସୂର୍ଯ୍ୟର[୭]

---

୬. ଚିରକୁମାରୀ ବ୍ରତଧାରିଣୀ, ସେବାନ୍ୟସ୍ତପ୍ରାଣା କାଥଲିକ୍ ସନ୍ନ୍ୟାସିନୀମାନଙ୍କୁ ସିଷ୍ଟର ବା ଭଗିନୀ କୁହାଯାଏ ।

୭. ଜାପାନର ଜାପାନୀ ନାମ ନିପ୍‌ପନ, ଯାହାର ଅର୍ଥ ହେଉଛି 'ଉଦୟ-ସୂର୍ଯ୍ୟର ଦେଶ' ।

ରୂପ-ତୀର୍ଥ ଆଜି କକା,—ଶୟନ, ଭୋଜନ,
ପରିଧାନ, ପରିବେଶ, ସବୁହିଁ ସେଠାରେ
ରୂପମୟ । ରୂପମୟ ଏ ବିଶ୍ୱରେ, କକା,
ସାମାନ୍ୟ-ସଂସ୍କୃତିବନ୍ତ, ବୁଦ୍ଧିମନ୍ତ ଯେହୁ,
କୁତ୍ସିତ, ବୀଭତ୍ସ ନେଇ କିପରି ସେ ପୂଜା
କରିବ ସୌନ୍ଦର୍ଯ୍ୟ-ଉତ୍ସ ମଧୁର ଈଶ୍ୱରେ
ନାହିଁ ଭାବିପାରେ ମୁହିଁ; ଲାଗେ ଯେ ଅଦ୍ଭୁତ ।''

ଏକାଳେ ପଶିଲା ଗୃହେ ଧୀରେ ସେପିଲ୍‌କୋ,
ମୃଦୁ ସ୍ମିତ ଧରି ମୁଖେ । କକା ଓ ଝିଆରୀ,
ଉନ୍ମୁଖେ ରହିଲେ ଚାହିଁ । ତାକୁ ମହାନନ୍ଦ
ଜିଜ୍ଞାସିଲେ ସ-କୌତୁକେ,—''ରୁଷୀୟ ତରୁଣ,
କି ଦେଖିଲ ନିମ୍ନ ଗ୍ରାମେ, ଆମ ଜୀବନର
କି ତତ୍ତ୍ୱ ପାଇଲ ତହିଁ ? କିବା ଅବା
ଅପସନ୍ଦ ହେଲା ତବ,—କହ, ଶୁଣୁକିନା ।''

ଧୀରଭାଷୀ ସେପିଲକୋ କହେ ମୃଦୁ ବାକ୍ୟେ,
ରଖି ମୁଖ ସ୍ମିତମୟ—''ଆଶା କରେ କକା,
ସତ୍ୟ ଯଦି କହେ, ତମେ ନ ଭାବି ଅନ୍ୟଥା,
ନିଜ ଲୋକ ବୋଲି ମୋର ବାଣୀରେ ଘେନିବ ।
ନିଜେ ମୁହିଁ ହୋଇଥାନ୍ତି ଯଦି ଭାରତୀୟ
ତେବେ ମଧ ଏହି ବାଣୀ ଦୃଢ଼େ ପ୍ରଚାରନ୍ତି
ନାହିଁ ଡରି ଉପହାସେ । ଏହି ଅତ୍ୟାଚାର
ଆମେ ମଧ ରୁଷିଆରେ ସହୁଥିଲୁ ଦିନେ,—
ସ୍ୱାର୍ଥପର ପୁରୋହିତ ସଂପ୍ରଦାୟ ହାତେ
ସମଗ୍ର ମାନବଜାତି ଯୁଗ-ଯୁଗଧରି
ସହିଆସିଅଛି ଏହି ଘୋର ଅଜ୍ଞତାର
ଅମାନୁଷ ଅତ୍ୟାଚାର । ନାନା ମିଥ୍ୟା ଆଶା
ପୂରାଇ ଜନତା ମନେ, ନାନା ଉପଚାରେ
ଭୁଲାଇ ଜନତା ଚିତ୍ତ, ତା-ବୁଦ୍ଧି-ବିଚାର
ସମଗ୍ରେ ତା'ଠାରୁ ନେଇ, ରଖି ନିଜ ହାତେ,
ମୃତ୍ୟୁ-ପର ନାନା ଭୟେ ଭରି ତା ମସ୍ତିଷ୍କ,
କକା, ଏ ଭାରତ ପରି, ଦେଖିବ ସର୍ବତ୍ର,

ପୁରୋହିତେ ଜନତାରେ ପଶୁପଲ ପରି
ରଖିଥିଲେ ଇତିହାସେ । ଏଇ ଭାରତର
ବୁଦ୍ଧହିଁ କରିଲେ ଆଦ୍ୟେ ଦୃଢ଼ ପ୍ରତିବାଦ
ଏଇ ଘୋର ପ୍ରବଞ୍ଚନାମୟ ମିଥ୍ୟା ଧର୍ମେ,
ସେହି ହିଁ ସମଗ୍ର ଧରିତ୍ରୀର ଇତିହାସେ
ଶାସ୍ତ୍ର, ପୁରୋହିତ, ଅବା ବାହ୍ୟ ବସ୍ତୁ କିଛି—
କାହାରିଠି ନାହିଁ ରଖି କିଞ୍ଚିତ୍ ନିର୍ଭର,
ଶିଖାଇଲେ ମନୁଷ୍ୟରେ ନିଜେହିଁ ନିଜର
ହେବାକୁ ଆଲୋକ-ଶିଖା; ଆପଣା ଭାଗ୍ୟର
ନିଜେଇ ହେବାର ସ୍ରଷ୍ଟା । ଠିକ୍ ସେଇ କଥା
ପଞ୍ଚବିଂଶ ଶତାବ୍ଦୀର ବ୍ୟବଧାନ ପରେ,
ଲେନିନ୍ କହିଲା ଉଚ୍ଚେ, ଧର୍ମ-ମୂଢ଼ ଜନେ
ରୁଷିଆର । ପୁଞ୍ଜିପତି-ପୁରୋହିତ-ଶ୍ରେଣୀ-
-ନିଷ୍ପେଷିତ, ରୁଷିଆର ସେକାଳ ଜନତା,
ଠିକ୍ ଏଇପରି ଥିଲେ, ଦେଖି ମୁଁ ଆସିଲି
ଏଇ ନିମ୍ନ ଗ୍ରାମେ ଯାଁକୁ,—ପଶୁ-ଜୀବନରୁ
ଯାଙ୍କ ସ୍ତର ସାମାନ୍ୟହିଁ ମାତ୍ର ଉଚ୍ଚତର ।
ବିମୁକ୍ତ ଭାରତ ସତ୍ୟ ଇଂରେଜ ଶାସନୁ,
କିନ୍ତୁ ନିଜ କୁସଂସ୍କାର, ଅଂଧବିଚାରର
ସହସ୍ର କୁତ୍ସିତ ଆତ୍ମଘାତୀ ସାମାଜିକ
ଅଭ୍ୟାସର ଦାସତ୍ୱରୁ ଯେ ଯାଏଁ ଏ ଜାତି
ନ କରିଛି ମୁକ୍ତ ଆପେ, ଏହି ଦେଶ, କକା,
ସ୍ୱାଧୀନ ଜାତିର ସ୍ଫୂର୍ତ୍ତି ନ ପାରିବ ଭୋଗି ।
ନିର୍ବିଚାରେ ପୂଜୁଥିବା କାଷ୍ଠେ, ପାଷାଣରେ,
ଭାବୁଥିବା ପୁରୋହିତ-ହାତେ ମୁକ୍ତି ତା'ର,
ଅବା ତୀର୍ଥ-ପର୍ଯ୍ୟଟନେ ହେବାର ମଙ୍ଗଳ;
ଆତ୍ମ-ଶକ୍ତିହୀନ, ବାହ୍ୟ-ଆଚାର-ସର୍ବସ୍ୱ
ଏପରି ମନୁଷ୍ୟ-ଗୋଷ୍ଠୀ ନୋହିପାରେ, କକା,
କେବେହେଁ ନିପୁଣ ଜାତି । କାଷ୍ଠ-ପାଷାଣର
ଅଗଣିତ ଦେବଦେବୀ, ଅଗଣିତ ପୁଣି
ପୁରୋହିତ, ସନ୍ନ୍ୟାସୀର ଦଳ ଏ ଜାତିକୁ
ରଖିଛନ୍ତି ଦୀନ,ହୀନ, ଦରିଦ୍ର, କୁତ୍ସିତ,

ଅଜ୍ଞ, ରୁଗ୍ଣ, ଅସହାୟ, ଦୈବ-ପ୍ରପୀଡ଼ିତ ।
କିନ୍ତୁ ଯାଅ ଲେନିନ୍‌ର ନିରୀଶ୍ୱର ରାଜ୍ୟେ,
ଦେଖ ତହିଁ ନିଜ ମଥା ଗର୍ବଭରେ ଟେକି,
ମନୁଷ୍ୟ ଯେଦିନୁ ତହିଁ ଉଠିଲା ସଳଖି
ମେରୁଦଣ୍ଡ, ଥିଲା ଯାହା ଦରିଦ୍ର, ବର୍ବର—
ହୋଇଛି କିପରି ଆଜି ଭୋଗ-ଭାଗ୍ୟଭରା ।"

## [ ତୃତୀୟ ସର୍ଗ ]

ସିଂହରାଜ ଶୈଳାବାସେ ଦୀପ ନିର୍ବାପିତ;
ଶାନ୍ତ, ସମାହିତ ରାଜେ ସମଗ୍ର ଧରିତ୍ରୀ,
ଜ୍ୟୋତ୍ସ୍ନାପ୍ଲୁତା ନିଶୀଥର ନିବିଡ଼ ଆଶ୍ଳେଷେ ।
ପାଖେ ନାରୀକେଳକୁଂଜଘେରା କ୍ଷେତ୍ର ଡେଇଁ
ଗମ୍ଭୀର ଧୂସର ଗିରିମାଳା ଧ୍ୟାନ-ମୌନ,
ପାଖେ ପ୍ରସାରିତ ସ୍ଥିର-ଊର୍ମି ଚିଲିକାର,
ଉଦାର, ବିମୁକ୍ତ ଅଙ୍ଗ, ଶୀତାଂଶୁ କିରଣେ
ଶୟାନା ରୂପସୀ ଅବା ଶୁଭ୍ରଶଯ୍ୟାପରେ
ଦିବସର କ୍ଳାନ୍ତି ଅନ୍ତେ, ବିଶ୍ରାମ-ବିନୋଦେ ।

ସେହିପରି ଶଯ୍ୟାଲଗ୍ନା , କରି ବିଚ୍ଛୁରିତ
ସୁତନୁ ତନିମା ତାର ଅଯତ୍ନ ସୌଷ୍ଠବେ,
ଶୋଇଥିଲା ବିଶ୍ୱମିତ୍ରା ନିଜ କକ୍ଷେ । କିନ୍ତୁ
ନାହିଁ ଥିଲା ନୟନେ ତା' ନିଦ୍ରାର ପରଶ ।
ଯୌବନର ବାୟୁହୀନ ଝଡ଼େ ଚିତ୍ତ-ନୌକା
ହେଉଥିଲା ବକ୍ଷେ ତା'ର ଘୋର ଟଳମଳ ।
ସେ ରୂପସୀ, ସପ୍ତଦଶୀ ସେ ବିଶ୍ୱମିତ୍ରାର
ରସୋଚ୍ଛଳ ଅନ୍ତରରେ, ବାହ୍ୟ ପ୍ରକୃତିର
ପରିବ୍ୟାପ୍ତ ଜ୍ୟୋତ୍ସ୍ନାସ୍ନାତ ସେ ମଧୁର ଶାନ୍ତି,
ଜଡ଼ଜୀବବୃକ୍ଷବ୍ୟାପୀ ସୁପ୍ତି ସେ ଗଭୀର,
ନାହିଁ କରିଥିଲା କିଛିତ୍‌ରେ ପ୍ରଭାବିତ ।
ବିଶ୍ୱମୟ ମୋହାଚ୍ଛନ୍ନ ଶାନ୍ତି, ସୁପ୍ତି ତଳେ
ଅଶାନ୍ତ ତା' ସ୍ୱାଭାବିକ-କ୍ଷିପ୍ର ଦୁଇ ନେତ୍ର

ତନ୍ଦ୍ରା-ହୀନତାରେ ନିଜ କୃଷ୍ଣ ମଧୁରିମା
ଅକାରଣେ ବୁଣୁଥିଲେ କକ୍ଷ-ଶୂନ୍ୟତାରେ ।
ବେଳେବେଳେ ତା'ର ନେତ୍ର-ତାରା-ଲୋକୁଁ ଖସି
ଆସୁଥିଲା ବିଗଳିତ ଜ୍ୟୋତି-ଧାରା ବହି
ସ୍ୱର୍ଣ୍ଣ-ଗଣ୍ଡ-ବେଳା କରି ଉତ୍ପ୍ଲାବିତ, ପୁଣି
ଧୁତୁରା-କୁସୁମ-କମନୀୟ-ଗ୍ରୀବା ଦେଇ
ସିକ୍ତ କରୁଥିଲା ବିଚ୍ଛୁରିତ କେଶଜାଳ
ଶିଶିରିତ-ସଜ-ପଦ୍ମ-ମୁଖୀ ସେ ବାଳାର ।
ଏକଡ଼ ସେକଡ଼ ହୋଇ କୋମଳ ଶୟନେ
ବିଁଛି ମନୋଜ୍ଞତା ବାଳା, ତା-ତନୁ-ମାଳାର,
ପ୍ରଲମ୍ବିତ ନିଃଶ୍ୱାସରେ ହୃଦଭାରା ତା'ର
ଲଘୁ କରିବାର ଚେଷ୍ଟା କରେ ବାରମ୍ବାର ।
ଊର୍ଦ୍ଧ୍ୱେ ଉଡ଼ି ଉଡ଼ି ଯାଏ, ରବେ ଓ ଶରୀରେ
ବିଦାରି ସେ ଶାନ୍ତ ନିଶା, ଟେଣ୍ଟୋଇ ଆନନ୍ଦେ,
ଶୁଣି ତାହା, ନାହିଁ ଶୁଣିପାରେ ବିଶ୍ୱମିତ୍ରା,
ଅନାଏ ସେ ଦୂର ନଭେ, ବାତାୟନ ଦେଇ
ଛଡ଼ା ଛଡ଼ା ନିଜ-ନିଜ-ଯାତ୍ରା-ରତ ତାରା
କେତୋଟି, ଅଲକ୍ଷ୍ୟ-ଦୃଷ୍ଟେ ।

ଭାବେ ମନେ ମନେ
''କିଇବା ଏହାର ଅର୍ଥ ? ଏ ଜନ୍ମ, ମରଣ,
ଏଇ ଯେ ବଞ୍ଚିବା କିଛି କାଳ ଜଗତ୍‌ରେ
ଅନ୍ୟ କା'ର ନିର୍ଦ୍ଦେଶରେ, ପୁଣି ଯିବା ଚାଲି
ସେହି ସେ-ଅଲକ୍ଷ୍ୟ-ହସ୍ତ-ରଶ୍ମି ହେଉଁ ଟଣା ।
ରଙ୍ଗମଞ୍ଚେ ଏହି ପରନିର୍ଦ୍ଦେଶଚାଳିତ
ଅଭିନୟେ, କିବା ପୁଣି ଅର୍ଥ ବା ସଂଗତି—
ଏଇ ପ୍ରେମ, ସ୍ନେହ, ଅଶ୍ରୁ, ମାୟା, ମମତାର ?
କିପାଇଁ ମନୁଷ ପ୍ରାଣ ଖୋଜଇ ଅନ୍ତରେ
ବ୍ୟାକୁଳେ ଅନ୍ୟର ସଖ୍ୟ ? କିବା ଆକର୍ଷଣ
ମାଂସେ ମାଂସେ, ମନେ ମନେ, ନୟନେ ନୟନେ !
ଅଛି କିବା ସେହି ଟାଣ ନକ୍ଷତ୍ରେ ନକ୍ଷତ୍ରେ
ବୃକ୍ଷେ ବୃକ୍ଷେ, ଜଡ଼େ ଜଡ଼େ, ମୃତ ଜୀବିତରେ ?

ଜନକ ଜନନୀ ମୋର ବିଖ୍ୟାତ ଏ ଦେଶେ
ପ୍ରେମିକ-ପ୍ରେମିକାରୂପେ, ଯଶୋମୟ ପୁଣି
ପୁଣ୍ୟକର୍ମା, ପୁଣ୍ୟଧର୍ମା, ଲୋକବନ୍ଧୁ ବୋଲି ।
ତାଙ୍କରି ଦାୟାଦ ମୁଁ ଯେ ! କାହିଁ ଗଲେ ସେହି
ବରେଣ୍ୟ ମାନବ-ଯୁଗ୍ମ ! ତାଙ୍କ ସହ ମୋର
କି ସଂପର୍କ, କି ସମ୍ବନ୍ଧ ? ଅରକ୍ଷିତା କନ୍ୟା
ଛାଡ଼ିଦେଇ ଏ ବିପୁଳ ଗହନ ସଂସାରେ,
କେମନ୍ତେ ସେ ପୁଣ୍ୟବାନ ମହାପ୍ରାଣ ଦୁଇ
ନିଶ୍ଚିନ୍ତେ ରହିଲେ କାହିଁ ! କେତେ ଥର ସତେ
ବିକଳେ ଲୋତକ ଢେଳି ନ ଡାକିଛି ତାଙ୍କୁ
"ଦେଖାଦିଅ ବାପା-ବୋଉ, କହ ଥରେ ମତେ,
କହ ତବ ସ୍ନେହର ସେ ଏକଇ କନ୍ୟାରେ,
କିବା ତା' ଜୀବନ-ଲକ୍ଷ୍ୟ !—କହ ଖାଲି ହେଲେ,
ତମେ ମୋର ପାଶେ ପାଶେ ଅଛ ଅଲକ୍ଷିତେ ।"

ଭାବି ଭାବି ତା'ର ସେହି ସିକ୍ତ କୃଷ୍ଣ ନେତ୍ରୁ
ପୁଣି ଖସେ ଦରଦର ଉଷ୍ଣ ଅଶ୍ରୁଧାର;
ବିଳପେ ସେ ସୁକୁମାରୀ, ନପାରି ସମ୍ଭାଳି
ହୃଦୟର ଭାବାବେଗ ।

ନିଜ ଲୁହଧାର
ନିଜ ହସ୍ତେ, ନିଜାଞ୍ଚଳେ ପୋଛି ସେ କିଶୋରୀ
ଶୟନୁ ଉଠିଲା ଧୀରେ, ଛାଡ଼ି ଶଯ୍ୟାପରେ
ଉନ୍ମାଦକ ତନୁ-ସ୍ପର୍ଶ, ମଞ୍ଜୁଳ-ସୁରଭି ।
ଭିତ୍ତିରେ ଲମ୍ବିତ ଯେଉଁ ତୈଳଚିତ୍ର ଦୁଇ
ସେହି କକ୍ଷେ, ସ୍ୱର୍ଗତ ତା' ପିତା-ମାତାଙ୍କର—
ତାହାରି ସମ୍ମୁଖେ ଆସି, ପ୍ରାୟାନ୍ଧକାରରେ
ପାତି ଜାନୁ, ଯୁକ୍ତହସ୍ତେ, ଦରଦର ଭାଷି,
ପୁଣି ସେ ବର୍ଣ୍ଣଇ ବ୍ୟଥା

"ବାପା, ବୋଉ ମୋର,
କହ କଥା, ପାଏଁ ତବ ବଚନ-ଅମିୟ
ମୋର ଏହି ଚିର-କ୍ଷୁଧାମୟ ଶୂନ୍ୟ-ପ୍ରାଣେ—

କାହିଁକି ଜଗତେ ତମେ ଆଣିଥିଲ ମତେ ?
କାହିଁକି ବା ଗଲ ଛାଡ଼ି, କେଉଁ ଅପରାଧେ ?
କିଏ ମୋର ଅଛି ଏହି ବିପୁଳ ଧରାରେ
ନିଜର, ଯେ ଜୀବନର ସଂକଟ ମୁହୂର୍ତ୍ତେ
ଦେବ ବିଜ୍ଞ ଉପଦେଶ, କରିବ ନିର୍ଦ୍ଦେଶ
ସମୁଚିତ ଯାତ୍ରା-ପଥ ? ମୋ କ୍ଷୁଦ୍ର ଜୀବନେ
ଆଜି ଉପସ୍ଥିତ ଯେଉଁ କଠିନ ସଂକଟ,
ତମେ କି ଜାଣନି ତାହା ଜନକ-ଜନନୀ ?
ଜାଣେ ମୁଁ ଏତିକି ମାତ୍ର, ଏକ ପଦକ୍ଷେପେ
ଆଜି ଏ ମୁହୂର୍ତ୍ତେ, ମୋର ସାରା ଜୀବନର
ଭାଗ୍ୟ ହେବ ଲିପିକୃତ, ଏକ ବର୍ଣ୍ଣ ଯା'ର
ପୋଛିବାର ଶକ୍ତି ଆଉ ନାହିଁ ଥିବ ମୋର ।
ପ୍ରାଣପ୍ରିୟ ବୋଉ ମୋର, କେଉଁ ପଥେ ତେଣୁ
ଚାଳିବି ମୋ ପଦକ୍ଷେପ, ଦିଅ ମା' ବତାଇ ।
କିଏ ମୋର ଅଛି ଆଉ ? କାହାକୁ କହିବି ?
ତମେ ନାହଁ; ଏପର୍ଯ୍ୟନ୍ତ ନ ଅଛି ବା ଭେଟି
ଈଶ୍ୱର ନାମକ ସେହି ଅଦୃଶ୍ୟ ଶକତି;
ବିପୁଳ ଏ ସଂଗହୀନ ଧରାର ଗହନେ ।
କାହା ପାଶେ ଜଣାଇ ମୋ କ୍ଷୁଦ୍ର, ଦୁଃଖ, ସୁଖ
ପାଇବି ଉଚିତ ଶିକ୍ଷା ?''

ପୁଣି ଦରଦର
ଅଶ୍ରୁ ଖସି ଗଣ୍ଡ ତାର କରି ଅଭିଷିକ୍ତ,
ରଚେ ବିନ୍ଦୁ ବିନ୍ଦୁ ମଉକ୍ତିକ, ବକ୍ଷସ୍ଥଳେ ।
ଭାବାବେଗେ ବକ୍ଷଲଗ୍ନ ଅଂଜଳିପୁଟରେ
ମୁଖ ରଖି ବିଳପଇ ଦୁଃଖୀ ବିଶ୍ୱମିତ୍ରା ।

ଭାବାବେଗ ହେଉ ଶାନ୍ତ, ସେହି ଅନ୍ଧକାରେ,
ଉଠି ଧୀରେ ପ୍ରଣମିତ ହୋଇ ତୈଳଚିତ୍ରେ
ଜନକ-ଜନନୀଙ୍କର, ପୁଣି ଶଯ୍ୟା-ଦିଗେ
ଫେରିଆସୁଁ ମୁକ୍ତ ତାର କକ୍ଷ ବାତାୟନେ,
ଦେଖିଲା ସେ ଅଦୂରେ କେ ଗିରିଶୀର୍ଷେ ଏକ

ପ୍ରଶସ୍ତ ଉପଳଖଣ୍ଡେ, ଅବସାନ-ପର
ଚନ୍ଦ୍ରର ଅସ୍ପଷ୍ଟ, ମ୍ଳାନ ଶୀତଳ ଜ୍ୟୋତ୍ସ୍ନାରେ
ବସିଅଛି ସ୍ଥାଣୁବତ ଅନାଇ ଆକାଶେ ।
ସାରା ବକ୍ଷେ ହେଲା ତାର ବିଦ୍ୟୁତ୍ ଚମକ,
ତରୁଣୀ ସେ ବୁଝୁଁ ଦ୍ୱରା ଆନ କେହି ନୁହେଁ
ସେପିଲକୋ ବିନା ସେହି । ହୁଏତ ତା' ପରି
ସେ ମଧ ଉନ୍ନିଦ୍ର ଆଜି, ସେପରି ବିଭ୍ରାନ୍ତ;
ଅଣ୍ଡାଳିହେଉଛି ନିଶ୍ଚେ ଅନିଶ୍ଚୟ-ଜାଲେ ।
ସ୍ତମ୍ଭୀଭୂତ ହୋଇ କ୍ଷଣେ ହୋଇଲା ସେ ଛିଡ଼ା,
ପ୍ରବଳ ଝଞ୍ଜାରେ ପଡ଼ି ମହା ବିହାୟସେ
ଉଡ୍ଡୀନ ବିହଙ୍ଗ ଯେହ୍ନେ ରହିଯାଏ ବେଳେ
ଏକାନ୍ତରେ ଗତିହୀନ । ହଠାତ୍ ତା' ମୁଖେ
ଆନନ୍ଦର କ୍ଷୀଣ ଊର୍ମି ଭାସିଗଲା ଯେହ୍ନେ,
ପାଇଲା ଯେପରି ହୃଦେ ସ୍ଥିର ବାର୍ତ୍ତା କିଛି
ତା' ବିକଳ ଜିଜ୍ଞାସାର । ରହିଲା ଅନାଇ
ବହୁକ୍ଷଣ ଉଦ୍‌ଭ୍ରାନ୍ତ ସେ ସୁନ୍ଦର ତରୁଣେ
—ଉଦ୍‌ଭ୍ରାନ୍ତ ସେ ତା'ରି ପାଇଁ, ବୁଲୁଛି ଉନ୍ନିଦ୍ର
ତାହାରି କରର ସ୍ପର୍ଶ ଅଧିକାର ପାଇଁ,
ଭାବି ଏହା, ସାରା ଦେହେ ମୁଗ୍ଧା ତରୁଣୀର
ଦେହେ ଗଲା ବ୍ୟାପୀ ଯେହ୍ନେ ଲଳିତ ବେପଥୁ ।
ସେପିଲକୋ ଏହି କାଳେ, ଉଠି ତା ଆସନୁ,
ଏଣେତେଣେ ଚାହିଁ ଧୀରେ କର୍ମହୀନ ଯେହ୍ନେ,
ଅତି କ୍ଳାନ୍ତ ପରି ମନ୍ଦ ମନ୍ଦ ପଦକ୍ଷେପେ,
ଚାଲିଗଲା ଗିରିଶୀର୍ଷେ ଅନ୍ୟ କେଉଁ ପାଶେ ।

ଆହୁରି ବଳିଛି ନିଶା, ନୈଶବାୟୁ କ୍ରମେ
ହୋଇଲାଣି ତୀକ୍ଷ୍ଣ ହିମ । ଚିନ୍ତାକ୍ଳାନ୍ତ ମିଦ୍ରା,
ଶୀତ ଆଉ ଶ୍ରାନ୍ତି ଯୋଗୁଁ ବୁଜି ବାତାୟନ,
ଧୀରେ ପୁଣି ଶୟନରେ ହେଲା ଲମ୍ବମାନ,
ପ୍ରଭାତେ ବିକୀର୍ଣ୍ଣ ଯେହ୍ନେ ତରୁତଳ ଘାସେ
ବୃନ୍ତଚ୍ୟୁତ ମୌନ ଗଙ୍ଗଶିଉଳିର ମାଳା ।
ଧୀରେ କ୍ରମେ ନିଦ୍ରା ଆସି ତା' ନେତ୍ର-କପାଟ

ଆସ୍ତେ ଆସ୍ତେ ଦେଲା ବୁଜି । ଅଚ୍ଛକ୍ଷଣେ ମାତ୍ର
ହୋଇଲା ସେ ଉପନୀତ ସୁପ୍ତିର ପ୍ରାସାଦେ ।

ସେହି ସୁପ୍ତି-ସ୍ୱପ୍ନ-ରାଜ୍ୟେ ଦେଖିଲା ବାଳିକା,
ଜନନୀ ଯେପରି ତାର ଆସିଛନ୍ତି ଗୃହେ,
ବୁଲୁଛନ୍ତି କକ୍ଷେ କକ୍ଷେ, ବୁଝୁଛନ୍ତି କଥା,
ଲାଗିଛି ସେ ଗୃହେ ଯେହ୍ନେ ମଂଗଳ ଉତ୍ସବ
କେଉଁ ଲକ୍ଷ୍ୟେ, କାହା ଲାଗି । ବାଜୁଛି ବାଜଣା,
ଲାଗିଅଛି ଦଳ ଦଳ ଲୋକ ଯାଆ-ଆସ,
ଉତ୍ସାହର, ଆନନ୍ଦର, ଆଶା, ପ୍ରତ୍ୟାଶାର
ଊର୍ମି ଖେଳେ ଚତୁର୍ଦ୍ଦିଗେ । ବିଶ୍ୱମିତ୍ରା ତହିଁ,
ନିଶ୍ଚିତରେ କେଉଁ କକ୍ଷେ ପଢୁଥିଲା ବସି
ଆଧ୍ୟାତ୍ମିକ ଗ୍ରନ୍ଥ ଏକ, ଶୁଣୁଥିଲା ପୁଣି
ରେଡ଼ିଓରେ ପଶ୍ଚିମର କେଉଁ ଏକ କେନ୍ଦ୍ରୁ
ମଧୁର ଯନ୍ତ୍ର-ସଂଗୀତ । ଏକାଳେ କରୁଣା,
ତା' ଜନନୀ, କକ୍ଷେ ଆସି ଆଦରେ ସାଉଁଳି,
କହିଲେ, ''ମାଆ ଲୋ ମୋର, କେଶରାଜି ତୋର
ସଜାଇଦିଏ ମୁଁ ଟିକେ ।'' କହି ସେ ଆଣିଲେ,
ଗନ୍ଧତୈଳ, କଂକତିକା । ଅତି ଯତନରେ
କୁଣ୍ଡାଇଲେ ଦୀର୍ଘ, ଘନ, କୃଷ୍ଣ ଊର୍ମିଶୀଳ
କେଶ, ବର ରୂପସୀ ସେ ନିଜ ତନୁଜାର ।
କୁଣ୍ଡାଉ କୁଣ୍ଡାଉ କିନ୍ତୁ ହଠାତ୍ କଂକତି
ଗଲା ଭାଙ୍ଗି । ବିଶ୍ୱମିତ୍ରା ଉଠିଲା ଚମକି
ସେ ଚମକେ ସ୍ୱପ୍ନ ସେହି ହେଲା ଅବସାନ
ନିଦ୍ରା ସହ ।

ସେତେବେଳେ ହୋଇଥିଲା ଆସି
ରଜନୀର ଶେଷ ଧାପ । ପ୍ରାଚୀ ଦିଗ୍‌ବଳୟେ
ଚିରନବବୟା ଉଷା ଆବିର୍ଭାବ ଲାଗି,
ରଜତର ରଙ୍ଗମଞ୍ଚ ହେଲାଣି ସଜ୍ଜିତ ।
ନାରିକେଳ କୁଂଜେ କୁଂଜେ ଚିଲିକା ବେଳାର
ଆକାଶର ସାଂଗୀତିକ ପକ୍ଷୀ ଦଳେ ଦଳେ

ଉଷା ବନ୍ଦାପନା ପାଇଁ ଆଦ୍ୟ ଆଗମନୀ
ଦେଲେଣି ଆରମ୍ଭ କରି !

ରୁଦ୍ଧ କକ୍ଷେ ତାର,
ନିଶା-ଶେଷ-ପ୍ରାୟାନ୍ଧାରେ, ନିଃସଙ୍ଗ ଶୟନେ
ସ୍ୱପ୍ନଭଙ୍ଗେ ଚେତି ବିଶ୍ୱମିତ୍ରା ସେ ଦୁଃଖିନୀ
ହଠାତ୍ ବିହ୍ୱଳ ଯେହ୍ନେ, କିଛି ନାହିଁ ବୁଝି,
ରହିଲା ଅଚେତ ପରି । ଧୀରେ ଧୀରେ ତା'ର
ସ୍ୱପ୍ନ ହେଉ ମନ-ନେତ୍ରେ ପୁନରଭିନୀତ,
କଂପିଲା ହୃଦୟ ତା'ର ମୃଦୁ ଆଶଂକାରେ ।
''ଏ କିସ ଅଶୁଭ ଅବା ? କିବା ଯାର ଅର୍ଥ ?
ଜନନୀଙ୍କି ଦେଖି ପୁଣି ହରାଇଲି କ୍ଷଣେ,
ନାହିଁ ପଚାରୁଣୁ ଅନ୍ତରର ଗୂଢ଼ ପ୍ରଶ୍ନ;
ଉତ୍ସବ ସେ ଗଲା ଭାଙ୍ଗି ନ ହେଉ ଆରମ୍ଭ !

ଥାଉ, ଥାଉ,—ରାତ୍ରି ଏବେ ହେଲାଣି ପ୍ରଭାତ,
ଜାଗିବାକୁ ହେବ ତ୍ୱରା, ଲାଗିବାକୁ କର୍ମେ,
ଭାଙ୍ଗିବାର ନୁହେ ମନ ବୃଥା ସଂଦେହରେ ।
ଜୀବନ ମୋ ଉତ୍ସର୍ଗିତ ମାନବ-ସେବାରେ,
କି ଶୁଭ, ଅଶୁଭ, ଥାଇପାରେ ଏ ଜୀବନେ ?
ବୃଥା ତେଣୁ ସ୍ୱପ୍ନ-ମର୍ମ, ମନର ଆଶଙ୍କା ।
ତେବେ ଏଇ ସେପିଲକୋ......ଅବା ମାଲକମ୍.... ?
ସେହି ! ସେହି ! ପୁରାତନ ପ୍ରଶ୍ନ ପୁଣି ଉଠେ !
ମୋ ଜୀବନ-ଯାତ୍ରାପଥେ ପ୍ରୟୋଜନ ଅବା
ଅଛି କି କାହାର ସଖ୍ୟ ? ସାନ୍ନିଧ କାହାର ?
ମୁଁ କି ମୋର ଏକା ଏକା ଯାତ୍ରା ସମାପନ
କରି ନିଜ ଲକ୍ଷ୍ୟସ୍ଥଳେ ନାହିଁ ପହଁଚିବି ?
କି ଅବା ସେ ଲକ୍ଷ୍ୟ ପୁଣି ? ସକଳ ଯୁକ୍ତିର
ନିମ୍ନେ; କିନ୍ତୁ ଅନ୍ତରର ଆଶା, ଅଯୌକ୍ତିକ,
ଅବୋଧ ଆହ୍ୱାନ, ସେହି ଅନ୍ଧ ଆକର୍ଷଣ—
ଏକ ପ୍ରାଣ ଅନ୍ୟ ପ୍ରାଣେ ମିଶିବା ଆନନ୍ଦ
ପାଇଁକି କେବଳ ଯେଉଁ ଦୁର୍ବାର ଲାଳସା !

ତାହାହିଁ, ତାହାହିଁ ଘଟେ ଦୂର ଦେଶାଗତ
ଅଜ୍ଞାତ ଏ ରୁଷ-ଯୁବା ନେତ୍ରପଥେ ତା'ର
ପଡ଼ିଲା ଯେ ମୁହୂର୍ତ୍ତରେ ଦିଲ୍ଲୀ-ନୃତ୍ୟୋତ୍ସବେ ।
ପରମ ଇଂରେଜ ବଂଧୁ ମାଲକମ୍ ତେଣେ
ରହିଛି ଅପେକ୍ଷା କରି ତା କର-ପଲ୍ଲବେ
ପୂର୍ଣ୍ଣ ଅଧିକାର ପାଇଁ । କାହାକୁ ବାଛିବ ?

କିପାଇଁ ବା ବାଛିବାକୁ ଯିବ ସେ କାହାରେ ?
ଏ ଯାଏଁ ସେ ସ୍ୱୟଂପୂର୍ଣ୍ଣ, ଅଭାବ ତ କିଛି
ନାହିଁ ତା'ର । ନୃତ୍ୟେ, ଗୀତେ, ସାହିତ୍ୟେ, ସଂଳାପେ
ଦେଶେ ଦେଶେ ପର୍ଯ୍ୟଟନେ, କଟୁଅଛି କାଳ
ଅନୁକୂଳ ନଦୀସ୍ରୋତେ ନୌକାଗତି ପରି ।
କିପାଇଁ କାହାରେ ଆଣି ତା ଶାନ୍ତ ସଂସାରେ
ଜଞ୍ଜାଳର ଝଡ଼-ବର୍ଷା-ଜ୍ୱାଲେ ପଶିବ ?
କାହିଁକି ?

ତଥାପି ସେହି ସ୍ପୃହା ଅଯୌକ୍ତିକ !
...ସେପିଲେକେ ଚାହେ ଆମ୍ଭ ! ଅବା , ମାଲ୍‌କମେ !
କେମନ୍ତେ ସେ ପ୍ରାଣ ଥାଉ କରିବ ନିରାଶ
କାହାରେ ? ପ୍ରତ୍ୟେକ ଭାଗ୍ୟ କରୁଛି ଅପେକ୍ଷା
ତାହାରି,—ମିତ୍ରାର ମୁଖୁ ହଁଅ-ନାହିଁ ପାଇଁ !
ହାୟ ରେ ଏ କ୍ରୂର ଦ୍ୱନ୍ଦ୍ୱ ! ଯାରି ସମାଧାନ
ପାଇଁକି,ସେ ଧାୟି ଧାୟି ଜନକଜନନୀ
ଯାଇଥିଲା ଖୋଇବାକୁ । କିବା ସମାଧାନ,
କି ଉତ୍ତର ପାଇଲା ସେ ? କିବା ସେ ସ୍ୱପ୍ନର
ଯଥାର୍ଥତା ?

ଏହିକାଳେ ନିର୍ମଳ ପବନେ
ପ୍ରଭାତର, ହ୍ରଦ, ବଣ, କେଦାର, କେଦାର
ଭେଦି ପ୍ରକମ୍ପିତ ହେଲା ସିଂହେଶ୍ୱର ଶୈଳ
କାହାର ଉଦାର ଗାନେ, ନିମ୍ନେ ପଥ-ଯାତ୍ରୀ
ସ୍ତବ୍ଧ ହୋଇ ଉର୍ଦ୍ଧ୍ୱେ ଅନାଇଲେ ବୁଝିବାକୁ ।

ବାତାୟନ ଖୋଲି ଦେଇ ବିଶ୍ୱମିତ୍ରା ନିଜେ
ବୁଝିବାକୁ ଚାହିଲା ସେ ଉଦାର ଗାୟନ

ବିଦେଶୀ ବାଣୀରେ, ଅନ୍ୟ-ଦେଶ ଛନ୍ଦେ, ତାଳେ ।
ଦୂରେ ନୁହେ କିନ୍ତୁ ଏ ଯେ, ଅତି ନିକଟରେ,
ସେହି ସେ ଉପଲଖଣ୍ଡେ ପୂର୍ବ ରଜନୀରେ
ବସିବାର ଦେଖାଥିଲା ସେପିଲକୋ ଯହିଁ,
ସେହିଠାରେ ସେପିଲକୋ ଠିଆରହି ଏବେ
ତାରି କକ୍ଷ ବାତାୟନେ ମୁଖ କରି, ଗାଏ
ପ୍ରାଣଭରି, କଣ୍ଠଭରି, ଏକ ରୁଷ୍-ଗାନ ।

ବୁଦ୍ଧିମତୀ ବିଶ୍ୱମିତ୍ରା ବୁଝିଲା ସହସା
ଗାଏ ଉଷ୍ଣ ସେରିନେଡ଼୍[୧] 'ଏ ଯେ ତା'ରି ପାଇଁ
ପ୍ରେମାର୍ଥୀ ସେ ରୁଷ୍-ଯୁବା ବିକ୍ଷୁବ୍ଧ ଆତ୍ମାର
ଜଣାଇଦେବାକୁ କ୍ରୂର ବିକଳ କ୍ରନ୍ଦନ ।
ଯାଇ ନ ପାରିଲା ଫେରି । ବାମ କରେ ଧରି
ବାତାୟନ ଏକ ପାର୍ଶ୍ୱ, ଦକ୍ଷିଣ କରରେ
କମନୀୟ ସ୍ୱର୍ଣ୍ଣାଂଗୁଳିଜାଳ ଦେଇ ମେଲି
ଧଇଲା ସେ ବାତାୟନ-ଏରୁଣ୍ଡିରେ ଧୀରେ,
ଭାବାବିଷ୍ଟ ଦୁଇ ଚକ୍ଷୁ ନତ କରି ତନ୍ୱୀ
ସେହିଠାରେ ସ୍ଥିର ହୋଇ ରହିଗଲା ଠିଆ ।
ଝଞ୍ଜା-ବନ୍ଧା ପୁଷ୍ପାନ୍ୱିତା ଲତିକା ସେ କିବା,
ଅବା ଅନ୍ତରର କେଉଁ ନିବିଡ଼ ଗହନେ
ଅପହୃତ ପ୍ରିୟଜନ ଅପୋଛା ସେ ସ୍ମୃତି ।
ପ୍ରାଣ-ନିଃସ୍ୟନ୍ଦିତ ସେପିଲକୋ-ସେରିନେଡ୍
ଅବାଧେ ପ୍ରବେଶ କଲା କୁମାରୀ-ଅନ୍ତରେ ।

### ସେରିନେଡ୍

ହେ ସୁନ୍ଦରୀ,
ଯେଉଁ ପଥେ ଯାଅ, ସୁଧାର ପ୍ରବାହ
ପଡ଼ଇ ଝରି
ହେ ସୁନ୍ଦରୀ !

---

୧. ପ୍ରଣୟିନୀ ଉଦ୍ଦେଶ୍ୟରେ ତାହାର ଗୃହ-ଗବାକ୍ଷ ନିମ୍ନରେ ରହି ଗାନ ବା ଯନ୍ତ୍ର-ସଂଗୀତରେ ପ୍ରଣୟ ନିବେଦନ, ପାଶ୍ଚାତ୍ୟ ସଂସ୍କୃତିରେ ଏକ ରୋମାଣ୍ଟିକ୍ ପରଂପରା । ଏହାରି ନାମ ସେରିନେଡ୍ ।

କାହିଁ ଚଲ ତମେ ? ରୁକ୍ଷ ଏ ଭୂମେ ?
ନରମ-ମରମ-ତଳ୍ପ ପରା,
ଦେଇଛି ବିଛାଇ ଅଭିସାର ପାଇଁ
ପୀରତି-କୁସୁମ-ଗଂଧଭରା ?
କରୁଣା କର ରେ,
ପ୍ରାଣେଶ୍ୱରୀ,
ହେ ସୁନ୍ଦରୀ ।

ଜୀବନେଶ୍ୱରୀ ଭୁବନେଶ୍ୱରୀ
ନିଖିଳ ଜଗତ, ଚଲନେ ତବ
ସୁଷମା-ମୁଗ୍ଧ, ପରଶ-ଲୁବ୍ଧ,
ତୃପ୍ତି, ପାଉଛି ଜୀବନ ନବ ।
ଦଗ୍ଧ ଧରାରେ ରୂପ ବୁଣି ଯାଅ
ରୂପେଶ୍ୱରୀ,
ହେ ସୁନ୍ଦରୀ ।

ଯହିଁ ଯାଅ ଧରା- ପ୍ରାନ୍ତରେ, ଧରା
ଦିଅ ଶେଷେ ଯଦି କାହାରି ବକ୍ଷେ,
ସନ୍ତାପିତ ଏ ଜନର ହୃଦୟେ
ଯେ ପୂଜା, ତା'କି ଗୋ ପାଇବ ସତ୍ୟେ ?
କିଂକର ହୋଇ ସେବିବି ଚରଣ
ପ୍ରାଣେଶ୍ୱରୀ,
ହେ ସୁନ୍ଦରୀ ।

ତମ ବିନା ମତେ ଏ ଧରା, ଆକାଶ
ତୁଚ୍ଛ, ଶୂନ୍ୟ. ଅର୍ଥହୀନ,
ତବ ହାସ ବିନା ଏ-ଜୀବନ ବୀଣା
ବୁକେ ବାଜିବାର ଆଶାହିଁ କ୍ଷୀଣ ।
ଅକରୁଣା ତବ ମରଣ ସରି,
ହେ ସୁନ୍ଦରୀ ।

ସେରିନେଡ୍ ଗାଇସାରି ବିହ୍ୱଳ ଉନ୍ମତ୍ତ
ସେପିଲକୋ ଦେଖେ ଯେବେ ସମ୍ମୁଖରେ ତାର

ସ୍ୱପନର ରାଣୀ ଉଭା, ଖୋଲି ବାତାୟନ,—
ଧୀରେ ଧୀରେ ପଦ ଚାଳି ଆସିଲା ସଂକୋଚେ,
ସେହି ବାତାୟନ ନିମ୍ନେ, କମ୍ପିତ କରରେ
ଧରିଲା ସହସା ମିତ୍ରା-ଦକ୍ଷ କରାଙ୍ଗୁଳି
—ଚମ୍ପକ କଳିକାପୁଞ୍ଜ ସମ କମ୍ର, ଗୌର—
ନୋଇଁ ଜାନୁ, ପ୍ରାଣଭରି ମୁଦ୍ରିଲା ତହିଁରେ
ପ୍ରଥମ ଚୁମ୍ବନ ତାର । ମିତ୍ରା-ତନୁଲତା
ଥରିଗଲା କ୍ଷୀଣ, ଘନ, ମଧୁ ବେପଥୁରେ ।
ନିବାରି ପାରିଲା ନାହିଁ, ମୁଦ୍ରିତ ନୟନେ
ରହିଲା ସେ ଅଭିଭୂତ ହୋଇ କେତେ ଦଣ୍ଡ,
ତା'ପରେ ଚୈତନ୍ୟ ଫେରୁ, ଚିତ୍କାରିଲା ଧୀରେ
''ଛାଡ଼, ଛାଡ଼ ପ୍ରିୟ ସେପି, ଚାଲିଯାଅ ଏଠୁ;
ଲଜ୍ଜା ଦିଅ ନାହିଁ ମତେ ।''

ସେ ମୁଗ୍‌ଧ ପ୍ରଣୟୀ,
ମେଘ ଯେହ୍ନେ ଚୁମ୍ବେ ଧରା, ଭୃଙ୍ଗ କୁସୁମରେ,
ନାହିଁ ଛାଡ଼ିଥାନ୍ତା ଅବା ନାହିଁ ଥାନ୍ତା ଯାଇ,
ଯେ ଯାଏଁ ସେ ଶେଷ ସ୍ୱାଦେ ନ ଭୋଗିଛି ତାର
ପ୍ରେମିକାର ସର୍ବ ସୁଧା—

କିନ୍ତୁ ଏହି କାଳେ,
ଶୈଳାବାସ ଅନ୍ୟ ପ୍ରାନ୍ତୁ ଉଦାତ୍ତ କଣ୍ଠରେ,
ଶୁଭିଲା ପ୍ରଣବଧ୍ୱନି-ସହିତ ଝଙ୍କାରି
ଗମ୍ଭୀର ମହିମ୍ନ-ସ୍ତବ, ପରମ ବାଣୀରେ ।
ଉଭୟ ପ୍ରଣୟୀ ହୋଇଗଲେ ଭିନ୍ନ ଭିନ୍ନ,
ଶୁଣିଲେ ଚକିତେ କବି-ସନ୍ନ୍ୟାସୀଙ୍କ କଣ୍ଠୁ,
ଗୁହା ତେଜି ବାଣୀ-ଗଙ୍ଗା ହେବା ନିସ୍ୟନ୍ଦିତ
ସଂସ୍କୃତର ଛନ୍ଦୋମୟ ଶୁଦ୍ଧ ପଦଜାଳେ ।

## ସ୍ତୋତ୍ର

''ହେ ମହାନ୍, ଶାଶ୍ୱତ ହେ, ହେ କବି, ହେ ସ୍ରଷ୍ଟା,
ସକଳର ଆଦ୍ୟ, ପୁଣି ଅନ୍ତ ସକଳର,

ତୁମକୁହିଁ ପ୍ରାଣ ମୋର, ଖୋଜେ ହେ ସବିତା
ମେଲି ଅଗଣିତ ଦଳ ବାସନା-ପଦ୍ମର ।

ପରାତ୍ପର, ହେ ବିରାଟ, ନିଖିଳ ସମ୍ରାଟ୍,
ତମେ ଯେ କେବଳ ଲଭ୍ୟ ପ୍ରଣୟ-ଲୋତକେ,
କାହିଁ ସେ ପ୍ରଣୟ ପ୍ରଭୁଁ ? କାହିଁ ସେ ଲୋତକ ?
ନୟନେ ସେ ଲୁହ ଦିଅ, ପ୍ରାଣେ ସେ ପିପାସା ।

ବିଶ୍ୱମୟ, ହେ ପ୍ରଣୟୀ, ପ୍ରତି ପଦ ରେଣୁ
ଧରେ ଯା'ର କୋଟି କୋଟି ବ୍ରହ୍ମାଣ୍ଡର ମାଳା,
ସେହି ତୁମେ ହେ ଅସୀମ, ସାମାନ୍ୟ ଜନର
ଲୋତକ-ବିନ୍ଦୁରେ ଆସି ବିରାଜ ଆନନ୍ଦେ !

ହେ ଆଲୋକ, ବାୟୁ, ଅଗ୍ନି, ହେ ନିଶା, ପ୍ରଭାତ,
ହେ ଖାଦ୍ୟ, ଖାଦକ, ସ୍ରଷ୍ଟା, ପାଳକ, ଧ୍ୱଂସକ,
ହେ ସର୍ବ-ସଂସାର -ଲୀଳା ପଛେ ଯାଦୁକର,
ଯାଦୁତଳେ, ପୁଣି ସତ୍ୟ;— କେବେ ହେବ ଭେଟ ?

ତମର ମନ୍ଦିର କି ବା ? ବିଶ୍ୱବ୍ୟାପ୍ତ ଯେହୁ,
ଆଗେ, ପଛେ, ଅଧେଃ, ଉର୍ଦ୍ଧେ, ବାମେ ଓ ଦକ୍ଷିଣେ,—
ତୁମର-ମନ୍ଦିର ମମ, ମୋ ନିଖିଳ-ପ୍ରାଣ,
ହେ ନିକଟତମ, କରେ ପୂର୍ଣ୍ଣ ସମର୍ପଣ ।

## [ ଚତୁର୍ଥ ସର୍ଗ ]

ସନ୍ନ୍ୟାସୀର ଯୋଗ-ସ୍ପର୍ଶେ ଶ୍ୱେତାଙ୍ଗ ତରୁଣ,
ନିରୀଶ୍ୱର ସେପିଲକୋ ହରାଇ ଚୈତନ୍ୟ,
କ୍ଷଣେ ହୋଇ ଧରାଶାୟୀ, ଉଠିଲା ଚିତ୍କାରି-
''ମଲି, ମଲି, ମିତ୍ରା ମିତ୍ରା''—ନୀରବ ତାପରେ ।

ଧାଇଁଆସି ବିଶ୍ୱମିତ୍ରା, ମିସ୍ ବାଟସନ୍,
ଦେଖନ୍ତି, ସ୍ୱକକ୍ଷେ ଉଭା ସ୍ୱାମୀ ମହାନନ୍ଦ,

ସଦ୍ୟସ୍ନାତ, ପରିଶୁଦ୍ଧ, ଉପାସନା-ବୃଦ୍ଧ,
ଅପୂର୍ବ ଜ୍ୟୋତିରେ ଧୌତ ବଦନମଣ୍ଡଳ,
ଅପଘନ ନିମ୍ନେ, ଊର୍ଦ୍ଧ୍ୱେ, ଗୈରିକ ବସନ
ଗୌର ବର୍ଣ୍ଣେ ଆଣିଦିଏ ଦ୍ୱିଗୁଣିତ ଝଳି ।
ସମ୍ମୁଖରେ ଲମ୍ୱ ହୋଇ ଶୟାନ ଧରାରେ
ସେପିଲକୋ ଅଚଞ୍ଚଳ, ମୁଦ୍ରିତ ନୟନ ।
ସ୍ୱାମିଜୀ ଆଙ୍ଗୁଳି ଟୋଳି ସଂକେତିଲେ ତ୍ୱରା,
ମିତ୍ରା, ବାଟସନେ କକ୍ଷୁ ହେବାକୁ ନିଷ୍କ୍ରାନ୍ତ,
ବାକ୍ୟ ମାନି ଗଲେ ଚାଲି ସେମାନେ ସ୍ୱକର୍ମେ;
ଯୋଗୀ ଆଉ ନାସ୍ତିକରେ ଦେଇଣ ସାନ୍ନିଧ ।

ଜାନୁ ପାତି ମହାନନ୍ଦ ଶୟାନ ତରୁଣେ
ସ୍ପର୍ଶ ଧୀରେ ସଂଚାଳିଲେ ଆଙ୍ଗୁଳି ତାଙ୍କର
ସେପିଲକୋ ଅପଘନେ । କମ୍ୟୁନିଷ୍ଟ ଯୁବା
ଧୀରେ ଧୀରେ ଚକ୍ଷୁ ମେଲି ହୋଇଲା ଜାଗ୍ରତ,
ନିରେଖିଲା ଚାରିଆଡ଼େ । ସ୍ୱାମିଜୀଙ୍କୁ ଦେଖି
ସସ୍ମିତେ ସେ ଜିଜ୍ଞାସିଲା—''କେଉଁ ସ୍ଥାନେ ମୁହିଁ ?''
ଉତ୍ତରିଲେ ମହାନନ୍ଦ,-''ସେହି ପୂର୍ବ-ସ୍ଥାନ,
ଚିଲିକା ହ୍ରଦର ତୀରେ ସିଂହେଶ୍ୱର ଶୈଳେ,
ସେହି ସୌଧାବାସେ ବିଶ୍ୱମିତ୍ରା କୁମାରୀର ।
ଉପାସନା ଅନ୍ତେ ମୋର, କକ୍ଷେ ମୋର ଆସି
କୌତୂହଳେ ହେଲ ଉଭା । ଗତ ରଜନୀରେ
ହୋଇଥିଲା, ମନେଅଛି, ତମ-ଆମ ମଧ୍ୟେ
ଯୁକ୍ତି-ତର୍କ ଭାରତର ଆତ୍ମଜ୍ଞାନ ନେଇ ?
ଉଠ, ସେପିଲକୋ, କହ ତବ ଅଭିଜ୍ଞତା,
କହ ତ ସ୍ୱଚ୍ଛନ୍ଦେ, ତେଣୁ, ଜୀବନକୁ ତମେ
କି ନୂତନ ଦୃଷ୍ଟିକୋଣୁ ଦେଖିଲ ଏକ୍ଷଣି,—
ପୃଥିବୀର ମାଟିନେଇ କେବଳ ସଂଗ୍ରାମ
ବ୍ୟତୀତ, ଆଉ କି ଥାଇପାରେ ଯୋଗ୍ୟ ଲକ୍ଷ୍ୟ
ମାନବର ?—କହ ତମ ନିଜ ଅବବୋଧୁଁ ।''

ଉଠିବସି ସେପିଲକୋ, ଆଦ୍ୟ ଭାବାବେଶେ
ଚୁମ୍ବିଲା ସେ ସନ୍ନ୍ୟାସୀର ଏକଇ ଚରଣ ।

ଭାବିଲା ସେ ମନେ ମନେ, କେତେ କ୍ଷଣ ଆଗେ
ସେ ଯେ ଚୁମ୍ବିଥିଲା ଏକ ଯୁବା-ରୂପସୀର
ସ୍ୱର୍ଣ୍ଣାଂଗୁଳିଙ୍କାଳ ପ୍ରେମ-ବ୍ୟାକୁଳ-ଉନ୍ମାଦେ;
ସେହି ସେ ପ୍ରେମିକ ଚୁମ୍ବେ ଏଇ ବର୍ତ୍ତମାନ
ବୃଦ୍ଧ ଏକ ଭାରତୀୟ ସନ୍ନ୍ୟାସୀର ପଦ !
ଦୁଇ ମଧ୍ୟୁଁ ମନେହେଲା ସତେ ବା ଯେପରି
ଦ୍ୱିତୀୟହିଁ ସତ୍ୟତର, ଅନାବିଳତର ।
ଚୁମ୍ବି, ଉଠି, ପୁଣି ବସି ପାର୍ଶ୍ୱସ୍ଥ ଆସନେ,
ସନ୍ନ୍ୟାସୀଙ୍କି ଅନ୍ୟ ଏକ ଆସନେ ବସାଇ,
କହେ ସେପିଲକୋ,

''ମତେ ଜାଗ୍ରତ କିପାଇଁ,
କଲ ପୁନଃ ? କି ଶାନ୍ତି ସେ, ଅନିର୍ବଚନୀୟ
ଅଭିଜ୍ଞତା କିବା ସେହି ! କଳ୍ପନା-ଅତୀତ
ସେ ପରମ ଅନୁଭବୁ, କିପାଇଁ ଆଣିଲ
ଫେରାଇ ଏ ଜାଗତିକ ରୁକ୍ଷ ପରିବେଶେ ?
କିବା ସ୍ଥୂଳ ଏ ଜଗତ୍, ଏ ପ୍ରତ୍ୟକ୍ଷ ଧରା !
କି ସୂକ୍ଷ୍ମ-ସୁନ୍ଦର ସେହି ଅଦୃଷ୍ଟ ସଂସାର,
କିବା ପ୍ରାଣସ୍ପର୍ଶୀ ତାର ଅଶ୍ରୁତ ସଂଗୀତ !
ଦୃଷ୍ଟ ଯେତେ, ଅଦୃଷ୍ଟର ରୁକ୍ଷ ପ୍ରତିବିମ୍ବ,
ବିଶ୍ୱାସ କେ ଯିବ ଭବେ, ନ ଭୋଗିଲା ଯାଏଁ ?
—ସେହି ସୂକ୍ଷ୍ମ ମନୋଲୋକ ଭାରତର ଋଷି
ଆତ୍ମ-ଧ୍ୟାନେ ଆବିଷ୍କାର କରିଥିଲେ ଦିନେ ।
ଏ ଦେହ ବାସ୍ତବ ନୁହେଁ, ଏ ଗୃହ, ଏ ଶୈଳ,
ଏ ପ୍ରକୃତି, ଏଇ ହ୍ରଦ, ଏଇ ଆସବାବ—
ଏ ସମସ୍ତ ଦୃଶ୍ୟମାନ ପଦାର୍ଥର ପଛେ
ଲୁକ୍କାୟିତ ସୂକ୍ଷ୍ମସତ୍ତା, କେବଳ ଯା ସତ୍ୟ;
ଆମେ ସବୁ ବାସ୍ତବରେ ଅଟୁ ଏକେ ଏକେ
କେବଳହିଁ କ୍ଷୁଦ୍ର କ୍ଷୁଦ୍ର ଆନନ୍ଦ-ଚିକୁଣା,
ସେହିହିଁ ପ୍ରକୃତ ତତ୍ତ୍ୱ ଆମ ସକଳର ।
କୃତଜ୍ଞ ସ୍ୱାମିଜୀ, ତବ ପଦପାଶେ ମୁହିଁ

ସ୍ପର୍ଶ ମାତ୍ରେ ମୁହୂର୍ତ୍ତରେ ଦେଲ ଆଜି ଯାହା
ଅନନ୍ୟ ଏ ଅଭିଜ୍ଞତା ବହୁ-ଜନ୍ମ-ସାଧ୍ୟ ।''

ଦରଦର ହସୁଥାନ୍ତି ସ୍ୱାମୀ ମହାନନ୍ଦ
ସେପିଲକୋ ଭାଷଣରେ । ସରୁଁ ତାର ବାକ୍ୟ,
ଦେଲେ ସେ ଇଂଗିତ ତା'ରେ ଅଂଗୁଳି ନିର୍ଦ୍ଦେଶେ;
ଦୁହେଁ ଆସି କକ୍ଷାନ୍ତରୁ ବସିଲେ ଅଳିନ୍ଦେ
ସୁଖାସନେ; ପ୍ରାତଃ-ସ୍ଥିର ହ୍ରଦରେ ସମ୍ମୁଖି,
ହୋଇଆସୁଥିଲା ଯହିଁ ତପନ ଉଦୟ ।
ମେଘ-ମୁକ୍ତ ଥିଲା ପ୍ରାଚୀ;—ଜ୍ୱଳନ୍ତ ଲୋହିତ
ସୂର୍ଯ୍ୟଦେବ ଉଠି ଧୀରେ ହ୍ରଦବୀଚି ଭେଦି
ଅଂଶେ ଅଂଶେ ଦେଇ ଦେଖା ସହସା ଡେଇଁଲେ
ନଭେ ପୂର୍ଣ୍ଣ ପରିଧିରେ, କ୍ରୀଡ଼ାରତ ଅବା
ପାତାଳ-ରୂପସୀ-ହସ୍ତୁ ଅନାୟତ୍ତେ ଖସି
ଆସିଗଲା ସୁନ୍ଦର ଏ ବୈଦୂର୍ଯ୍ୟ କନ୍ଦୁକ;
ଅଥବା ନିଶାର ଗର୍ଭୁ ଜୀବନ-ଦ୍ୟୋତକ
ମହାବୀର୍ଯ୍ୟ ଶିଶୁ ଏ ଆକାଶ-ଧାତ୍ରୀର
କୋଳେ ହେଲେ ସମାଗତ; ଅବା ପ୍ରକୃତିର
ଦୈନନ୍ଦିନ ମହାଦୀପ ଉଠିଲା ପ୍ରଜ୍ୱଳି
ନିଶାର ଜଡ଼ତା କାଟି ଧରା ଜୀବଗ୍ରାମେ
କରିବାକୁ ବାସନାର ଆସ୍ୱାଦେ ଚଞ୍ଚଳ ।

ଆସନସ୍ଥ ମହାନନ୍ଦ ତରୁଣ ତପନେ
ଅନାଇ ଆରମ୍ଭ କଲେ ମହିମ୍ନ ସେ ସ୍ତବ
ସହସ୍ର ସହସ୍ର ଯୁଗୁଁ ଭାରତୀୟ ଆର୍ଯ୍ୟ
ଯେ ବାଣୀରେ କରିଅଛି ସୁନ୍ଦରର ପୂଜା,
ବିସ୍ମୟର ଆରାଧନା, ଏ ଧରଣୀ ପରେ ।
'' ହେ ଜବାକୁସୁମବର୍ଣ୍ଣ ସୁନ୍ଦର ସବିତା,
ହେ ସୃଷ୍ଟିର ମହାଜ୍ୟୋତି, ଉତ୍ସ ଜୀବନର,
ହେ ପିତା ଏ ପ୍ରକୃତିର, ଜୀବ ଉଦ୍ଭିଦର,
ହେ ପାଳକ ଏ ଧରାର, ମେଘର ଜନକ,
ହେ ଜଡ଼ତା-ବିନାଶକ, ସ୍ୱାସ୍ଥ୍ୟର ନିଧାନ,

ମହା ପ୍ରଜନକ ଆହେ ସକଳ ଅନ୍ତର,
ଭୂମାର ପ୍ରତୀକ, ସୂର୍ଯ୍ୟ, ବନ୍ଦଇ ତୁମରେ ।''

ଭାବ-ଆନମିତ ନେତ୍ରେ ଅନାଇ ସନ୍ନ୍ୟାସୀ
ସେପିଲକୋ କହିଲେ ସେ, ପୁଣି, ବନ୍ଦକରି
ସୂର୍ଯ୍ୟସ୍ତବ, ''କହିଲ ତ ତୁମେ ସେପିଲକୋ,
ପୌତ୍ତଳିକ ବୋଲି ହେଉଁ ବିଦ୍ରୂପ-ଶରବ୍ୟ
ଆମେ ହିନ୍ଦୁ, କହ ଦେଖି, ଏହି ସୂର୍ଯ୍ୟସ୍ତବେ
କିବା' ଅଛି ସଂକୀର୍ଣ୍ଣତା ପୌତ୍ତଳିକତାର ?
ଏ କି ନୁହେଁ କେବଳହିଁ ବିଶୁଦ୍ଧ କବିତା,
ମହିମା ଓ ସୌନ୍ଦର୍ଯ୍ୟର ମୁଗ୍ଧ ବନ୍ଦାପନା,
ବିଶ୍ୱମାନବର ପ୍ରାଣୁଁ ଉତ୍‌ଥିତ ଉଚ୍ଛ୍ୱାସ,
ଅବଲୋକି ଏ ପ୍ରକୃତି ବିଚିତ୍ର, ଉଦାର,
ଅଜ୍ଞେୟ, ଦୁର୍ଜ୍ଞେୟ ଏହି ନିଖିଳ ନିସର୍ଗ ?
ତୁମର ଲେନିନ୍ କରିଅଛନ୍ତି ପ୍ରଚାର
'ଧର୍ମ, ମୂର୍ଖ ଜନତାର ଆତ୍ମିକ-ଅଫିମ' ।
ପ୍ରଶ୍ନ ମୋର ତା ଉତ୍ତରେ—''ଜୀବନ ଯା' କୁହ,
ସେହି କି ନୁହଇ ଘୋର ଅଫିମ ସବୁଠୁଁ ?
ଦେଖ ଆତ୍ମ-ନେତ୍ର ଫେଡ଼ି ସମଗ୍ର ସଂସାରେ,
ଦେଖ କେହ୍ନେ ଏ ଧରଣୀ, ରକ୍ତାକ୍ତ ସଂଗ୍ରାମେ
ଅବିଚ୍ଛିନ୍ନ,—ଅବାରିତ-ବିଭୀଷିକାମୟ !
କି ଲାଗି ଏ ବିଶ୍ୱ-ବ୍ୟାପ୍ତ ବୀଭତ୍ସ ସମର,
କି ଲାଗି ବା ସଦା-ଲିପ୍ତ ଚିର-ଆତ୍ମ-କ୍ଷୟୀ
ଆହବେ, ନିଖିଳ ସୃଷ୍ଟି ? କିପାଇଁ ସଂଗ୍ରାମ ?
ଶାନ୍ତି ନାହିଁ କାହିଁ କିପାଁ ସମଗ୍ର ସଂସାରେ ?
ୟୁରୋପର ସୁଧୀଜନେ କହିଥାନ୍ତି ଯାକୁ
'ଜୀବନ-ସଂଗ୍ରାମ' ବୋଲି, ଆତ୍ମ-ସଂରକ୍ଷଣେ,
ଯେ ସଂଗ୍ରାମେ ଅହରହ ନିମଜ୍ଜିତ ଆମେ
ଉଦ୍ଭିଦ, ଜୀବ ଓ ନର ଗୂଢ଼ ପ୍ରେରଣାରେ ।
କି ବା ଅର୍ଥ ଏ ଯୁଦ୍ଧର ? ଜୀବନର ଶସ୍ୟ
ଅଦୃଶ୍ୟ ମରଣ-କୃଷୀ କାଟେ ଅହରହ,
ଜେତା ଓ ବିଜେତା ଦୁହେଁ ଜୀବନ-ସଂଗ୍ରାମେ,
ହୁଅନ୍ତି ସେ କୃଷୀ-ଦାତ୍ରେ କର୍ତ୍ତିତ-ଚେତନ !

ଜୀବରେ ଜୀବରେ ତେଣୁ ଏ ଘୋର ସଂଗ୍ରାମ
ଯୁଧମାନ ଯାହା ଅହରହ ପ୍ରତି କଣେ
ଧରାର, ନୁହେ କି ଭ୍ରମ ? ବିଶ୍ୱକ୍ଷୟକାରୀ
ଦୁଇ ମହାଯୁଦ୍ଧେ ପଶି, କହ ତ ୟୁରୋପ
ଜୀବନର, ଜଗତ୍‌ର କିବା ଉପକାର
ସାଧିଛି ଏ ଧରଣୀରେ ? ଧରା-ଧ୍ୱଂସକାରୀ
ମାରଣାସ୍ତ୍ର କରି ଜମା ଆଉ ବିଶ୍ୱଯୁଦ୍ଧେ
ହେଉଅଛି ପୁଣି ସାଜ । ଜାଣ ତମେ ସର୍ବେ
ସେ ସଂଗ୍ରାମେ ଜେତା ଆଉ ବିଜିତ ଉଭୟେ,
ହୋଇବେ ସମୂଳେ ଧ୍ୱଂସ, ଅବା ଚିର ଲାଗି
ହେବେ ଭଗ୍ନ-ମେରୁଦଣ୍ଡ, ବିକଳ, ବିକୃତ ।
କହ ସେପିଲକୋ, ତେଣୁ ସିଧା ତର୍କେ ଯାଇ,
ଜୀବନହିଁ ନୁହଇ କି ପରମ ଅଫିମ,
ନୁହେ ମାୟା, ନୁହେ ଭ୍ରମ, ଚରମ ପ୍ରମାଦ ?
ତମେ ସବୁ ଆଧୁନିକ ସଭ୍ୟ ୟୁରୋପୀୟ
ଭ୍ରମୁଥିଲ ବଣେ ବଣେ ଉଲଗ୍ନ, ଆଦିମ
ଭଲ୍ଲୁକ, ସିଂପାଞ୍ଜୀ ପରି ସଦା ଭୀତ, ତ୍ରସ୍ତ
ଅନ୍ୟ ଜୀବ ଆଶଂକାରେ, ଯେ କାଳରେ, ଏଥି
ଏହି ହେୟ ଭାରତରେ, ଆମ ସୁଧୀବୃନ୍ଦ
ଆଲୋଚିତ, ପରୀକ୍ଷିତ, ଆତ୍ମ-ଅଭିଜ୍ଞାତ
ଦେଇଥିଲେ ମାନବରେ ଏ ପରମ ସତ୍ୟ—
ଜୀବନର ଜୟ ଯାହା , ତାହା ଯେ ମୃତ୍ୟୁର !
ଜୀବ ଅନ୍ୟ ଜୀବେ ହିଂସି ଜୀବନରେ ଶାନ୍ତି
ଅସମ୍ଭବ ପାଇବାର । ଜୀବନ ଓ ମୃତ୍ୟୁ
ଉଭୟ ହୋଇବେ ଭୋଗ୍ୟ, ହିଂସାର ଉତ୍ତରେ
ଯେବେ ନର ଦେଇପାରେ ମୈତ୍ରୀ ଓ କରୁଣା ।
ଜୀବନ ଓ ମୃତ୍ୟୁ ଏକ,—ଏ ବିଚିତ୍ର ସୃଷ୍ଟି-
ତଳେ ଏକ ସତ୍ତା, ଭିନ୍ନ କେବଳ ବାହାରେ ।
ବିଭକ୍ତର ତଳେ ଯେହୁ ମହା ଅବିଭକ୍ତେ
ଦେଖିପାରେ, ସ୍ୱ-ଚେତନେ ସମଗ୍ର ବିଶ୍ୱରେ,
ବିଶ୍ୱ ସହ ଏକୀଭୂତ, ପୁଣି କୁଟୁମ୍ବିତ,
ସେହିହିଁ ମହାତ୍ମା, ସେହି ବରେଣ୍ୟ ମାନବ ।

ୟୁରୋପର ଭ୍ରମ, ନିଜ ଛୋଟ ଜୀବନକୁ
ଧରିନେବା ଜୀବନର ବର କାମ୍ୟ ବୋଲି,
ସେ ଜୀବନ ପାଇଁ ପୁଣି ଅନ୍ୟ ଜୀବନର
ଧ୍ୱଂସେ ଭାବି ଜୀବନର ପରମ-ସାଧନା ।
ସେପିଲକୋ, ବୁଝ ତମେ, ନିଜେ ହୋଇ ଘାରି,
ଘାରୁନା କି ଆଜି ତମେ ସମଗ୍ର ଧରାରେ ?
ଜୀବନର ଭ୍ରାନ୍ତ-ଜୟ-ଛଳନାରେ ଭୁଲି
ଧରାରେ ଆଣୁଛ ନିକି ଧ୍ୱଂସ ଜୀବନର ?
ଏହି ତବ ଅହଂକୃତ ଆପାତ-ଉଜ୍ଜ୍ୱଳ
ସଭ୍ୟତାର ସତ୍ୟ ରୂପ; —ଯାହା ତମେ ସବୁ
ଦେଖି ମଧ ଦେଖି ନାହିଁ ପାର, ଯେହେତୁରୁ
ଜୀବନ-ଅଫିମ-ନିଶା ଘାରୁଛି ତୁମରେ ।
ଏ ଜୀବନ-ପ୍ରେମ, ବଂଧୁ, ଉନ୍ନତ ମାନବେ
ନୋହିପାରେ ବର କାମ୍ୟ । ବୃକ୍ଷ, ଲତା, ଜୀବେ
ସର୍ବତ୍ର ଏ ପ୍ରକୃତିରେ ବିରାଜିତ ଯାହା,
ସେ ଜୀବନ-ମୋହେ ପଡ଼ି ପରସ୍ପର-ଧ୍ୱଂସେ
ମନୁଷ୍ୟ ମାତିବ କି ହେ ପରମ ଗୌରବେ
ଜଙ୍ଗଲର ଜନ୍ତୁ ସମ ? ସେହି ଧ୍ୱଂସ ନେଇ
ତମର ସେ ସଭ୍ୟତାର ଯେତେ ଅହଂକାର !
ଭାରତର ବାଣୀ କିନ୍ତୁ, ମୈତ୍ରୀ, କରୁଣାର,
ହିଂସାର ଉତ୍ତର ଏଥି ବ୍ୟାପକ ଅହିଂସା,
ଜୀବନର ଜୟ ଏଥି ଜୀବନର ପୂଜା,
ନୁହେ ଜୀବନର ଧ୍ୱଂସ । ଧର୍ମ ଏଥି, ବଂଧୁ,
ନୁହେ ଅହିଫେନ,—ତାହା ତତ୍ତ୍ୱ, ଜ୍ଞାନ ପାଇଁ
ମାନବର ଉନ୍ମୋଚିତ ତୃତୀୟ ନୟନ ।
ଧର୍ମ ଏଥି ଅନ୍ଧେ କରେ ଦିବ୍ୟ-ଚକ୍ଷୁବନ୍ତ,
ଭ୍ରାନ୍ତିର ଅନ୍ଧାର ନାଶେ ସତ୍ୟର ଆଲୋକେ,
ଅଂଶକୁ ମିଳାଏ ନେଇ ସମଗ୍ରର ସାଥେ,
ଅପୂର୍ଣ୍ଣକୁ କରେ ପୂର୍ଣ୍ଣ, ବନ୍ଦୀ କରେ ମୁକ୍ତ ।''

ହସି ଧୀରେ ଜିଜ୍ଞାସଇ ଯୁବା ସେପିଲକୋ—
''ତମେ ମୁକ୍ତ ହେ ସ୍ୱାମିଜୀ, ତମେ ଭାରତୀୟେ,

ତୁମେ ଏଇ ଭାଗ୍ୟବାଦୀ, ରୁଗ୍ଣ, ଦୀନ, ଭୀତ
ନିରକ୍ଷର,ଆଶାହୀନ, ଅଜ୍ଞ, ନରପୁଂଙ୍ଗ ?
କି ସତ୍ୟର କର ଗର୍ବ, ଯା' ରଖିଛ ଏହି
ଦେଶେ ତବ ଯୁଗଯୁଗଧରି ଇତିହାସେ
ପରାଧୀନ, ପରାଜିତ, ଶାସ୍ତ୍ର-ନିପୀଡ଼ିତ,
ସହସ୍ର ଗୋଷ୍ଠୀରେ ଛିନ୍ନ, ପରସ୍ପର-ଦ୍ୱେଷୀ,
ଦାରିଦ୍ର୍ୟର ଘୃଣ୍ୟତମ ପଙ୍କେ ବିଲୋଳିତ ?
ଏଇ ତବ ଧର୍ମ ସ୍ୱାମୀ ? କାଷ୍ଠ, ପାଷାଣରେ
ମାଗିବାର ବରାଭୟ ? ଅନ୍ଧ ବିଶ୍ୱାସରେ
ଜଡ଼ି ହୋଇ ଭୁଲିଯିବା ସକଳ ପୌରୁଷ,
ସକଳ ଜିଜ୍ଞାସା, ସର୍ବ ନରୋଚିତ ଚେଷ୍ଟା ?
ୟୁରୋପ ପାରିଥେ' କରି ନାନା ପ୍ରତ୍ୟବାୟ,
କିନ୍ତୁ ସେ ବାସ୍ତବଧର୍ମୀ, କରିନି ଅଯତ୍ନ
ଇହ ତାର ଜୀବନରେ; ସେହି ଜୀବନକୁ
ଜାଣି ମଧ୍ୟ କ୍ଷଣସ୍ଥାୟୀ, କରିଛି ତାହାରେ
ଭୋଗ୍ୟ, ରମ୍ୟ, ମାନନୀୟ, ଉଜ୍ଜ୍ୱଳ, ସୁନ୍ଦର ।
ଜୀବନର ନାହିଁ ଥାଇପାରେ କିଛି ଅର୍ଥ;—
ନାହିଁ ଯଦି ତହିଁ, ସ୍ୱାମୀ, ମୁଗ୍ଧ ଆରାଧନା
ସୌନ୍ଦର୍ଯ୍ୟ ଓ ପୌରୁଷର, ଯୁକ୍ତି-ବିଚାରର ।
ଏହି ତିନି ବିନା, ସତ କହ ତ ସ୍ୱାମିଜୀ,
ଯାହା ସବୁ କହ ଏଇ ଧର୍ମ, ଆତ୍ମ-ଜ୍ଞାନ
ନୁହେ କି ତା ମୂଢ଼-ତତ୍ତ୍ୱ ମନୁଷ୍ୟ ଜୀବନେ ?''

ଉଠିପଡ଼ି ମହାନନ୍ଦ, ଯୁବା ସେପିଲକୋ—
ଦୁଇ ସ୍କନ୍ଧେ ଦେଇ ହାତ, ଅନାଇ ତା' ମୁଖେ,
କହିଲେ ପ୍ରସନ୍ନ ହାସ୍ୟେ—

''ୟୁରୋପୀୟ ଯୁବା,
ପୃଥିବୀସ୍ଥ ଜୀବନର ଶେଷ ସତ୍ୟ ଏଇ—
ଆଲୋକ-ଅନ୍ଧାର ପରି ବିଜଡ଼ିତ ଏହା
'ଦୁଃଖ', 'ଦୋଷ'—ଏହି ଦୁଇ ଓତପ୍ରୋତ ଗୁଣେ ।
ଯେତେ କର ଜୀବନକୁ ଭୋଗ୍ୟ, ମନୋରମ

ନ ପାରିବ ପୋଛି ଦୁଃଖେ । ଯେତେ ଯା' କୃତିତ୍ୱ
ମାନବର ଏ ଜଗତେ, ପ୍ରତ୍ୟେକରେ ଅଛି
ଦୋଷ-ବିଜଡ଼ିତ ସଦା । ଆନନ୍ଦ, ପୂର୍ଣ୍ଣତା,-
ଖୋଜିବାହିଁ ଜଗତ୍‌କୁ କରେ ଗତିଶୀଳ ।
ଉନ୍ନତ ବ୍ୟକ୍ତିତ୍ୱ ମଧ୍ୟ ଅପୂର୍ଣ୍ଣ, ସଦୋଷ
ରହେ, କରିବାକୁ ତାକୁ ପୂନଶ୍ଚ ସନ୍ଧାନୀ ।
ଜୀବନର କିଛି କିଛି ସତ୍ୟ, ତତ୍ତ୍ୱ, ବଂଧୁ,
ଏସିଆ, ୟୁରୋପ ଦୁହେଁ ପାରିଛନ୍ତି ଧରି,
କିନ୍ତୁ ଉଭେ ଏପର୍ଯ୍ୟନ୍ତ ଅପୂର୍ଣ୍ଣ ନିଶ୍ଚିତେ,
ଉଭ ସଭ୍ୟତାହିଁ ନାନା ଦୋଷ-ବିଦୂଷିତ,
ଉଭୟହିଁ ଜଳିମରେ ଦୁଃଖ ଅଶାନ୍ତିରେ
ଅହରହ, ସେପିଲକୋ ! ସମୃଦ୍ଧ ୟୁରୋପେ
ତମେ ଯାଇ ନେବ ଯେବେ ଖୋଜ ଏକ, ତେବେ
କେତେ ଜଣ ସୁଖୀ ଆତ୍ମା ପାଇବ, ଯୁବକ ?
ସୌନ୍ଦର୍ଯ୍ୟର, ପୌରୁଷର ମହାଯଜ୍ଞକୁଣ୍ଡେ
ଦୁଃଖ ଅଶାନ୍ତିର ଅଗ୍ନି ଜଳି ରହେ କିପାଁ ?

କିନ୍ତୁ ତମେ ଯିବ କାଲି ମିତ୍ରାର ସଂଗତେ,
ମିତ୍ରାଗ୍ରାମେ । କହ ଆସି, ଦେଖି ମତେ ବଂଧୁ,
ଛୋଟ ସେହି ଗ୍ରାମେ ତମେ ଦେଖିଲ କି ନାହିଁ
ଅଧିକ ଆନନ୍ଦ, ବେଶି ସଂଖ୍ୟ ସୁଖୀ-ପ୍ରାଣ
ନ ଦେଖିଛ ଯାହା ତମେ ମସ୍କୋ-ଲେନିନ୍‌ଗ୍ରାଡେ—
ଅଗଣିତ ଜନସଂଘେ । ସ୍ୱାଚ୍ଛନ୍ଦ୍ୟ, ଦାରିଦ୍ର୍ୟ,
ପଦାର୍ଥର ପ୍ରାଚୁର୍ଯ୍ୟ ବା ପଦାର୍ଥ-ଅଭାବ,—
ଏସବୁର ବହୁ ତଳେ, ୟୁରୋପୀ ତରୁଣ,
ବହେ ଶୁଦ୍ଧ ଆନନ୍ଦର ମନ୍ଦାକିନୀଧାରା ।''

## [ ପଞ୍ଚମ ସର୍ଗ ]

ତିନୋଟି ନକ୍ଷତ୍ର, ଅବା ତିନି ବିହଙ୍ଗମ,
ଅବା ତିନି ନବ ନରଦେହ ପରିଗ୍ରହି
ଅବା ତିନି ବାଣୀ ଘେନି ସୁନ୍ଦର ବିଗ୍ରହ

ଧାଇଁଛନ୍ତି ବେଳାଭୂମେ କ୍ଷିପ୍ର ଅଶ୍ୱପୃଷ୍ଠେ ।
ମିତ୍ରାର ଇଂରେଜ ବଂଧୁ ଯୁବା ମାଲ୍‌କମ୍
ଆସିଯାନ୍ତେ, ପତ୍ର-ଦତ୍ତ-ବାର୍ତ୍ତା ଅନୁଯାୟୀ,
ସେପିଲକୋ, ମାଲ୍‌କମ୍, ମିତ୍ରା, ରଖି ଘରେ
ବୃଦ୍ଧ, ବୃଦ୍ଧା, କକା-କାକୀ; ଚାଲିଛନ୍ତି ଏଇ
କରୁଣା-କଲୋନୀ ଆଡ଼େ ବେଳାଭୂମି ଧରି ।
ତିନି ଅଶ୍ୱେ ବସିଛନ୍ତି ତିନି ସେ ତରୁଣ,
ମଧ୍ୟେ ମିତ୍ରା, ଦୁଇ ପାଶେ ଶ୍ୱେତାଙ୍ଗ ସୁହୃଦ
ଦୁଇ ତାର, ପଲ୍ଲବ ସେ ଦୁଇ ଅବା, ଘେରି
ରହିଛନ୍ତି ସୁକୁମାର କୁସୁମରେ ଜଗି,
ଅଥବା ସେ ରସମୟୀ ମନୋଜ୍ଞ କବିତା,
ଶବ୍ଦ, ଅର୍ଥ ଛନ୍ଦି ଯା'ରେ ସନ୍ନଦ୍ଧ ଆଶ୍ଳେଷେ
ରହିଛନ୍ତି ଅନ୍ୟୋନ୍ୟର ନିଗୂଢ଼ ସମ୍ବନ୍ଧେ ।
ଯୌବନର ସ୍ୱର୍ଣ୍ଣ ବିଭା ମଣ୍ଡିଛି ତିନିରେ
ଅପୂର୍ବ ଲାବଣ୍ୟ-ରସେ, ତିନି ଭାଲପଟ—
ଚିକ୍‌କଣ, ଚଟୁଳ, ରେଖା-ହୀନ, ସମତଳ,—
ହୀରକ ଫଳକ ସମ କରେ ବିଚ୍ଛୁରିତ
ଦିବାଲୋକେ । ତିନିଙ୍କର ସ୍ୱର୍ଣ୍ଣାଂଗୁଳିପୁଂଜ
ବଲ୍‌ଗା ପରେ ରହି ସୃଜେ ବିନା ମାଳାକାରେ
ଚମ୍ପକର ମାଳା ଯେହ୍ନେ; ତିନି ଭାଲପଟେ
ସ୍ୱେଦବିନ୍ଦୁ ଉଦ୍‌ଭାସିତ, ସୁବର୍ଣ୍ଣ ଫଳକେ
ସ୍ଫଟିକର ରେଣୁଜାଳ, ଅଥବା ପ୍ରଥମ
ପ୍ରଦୋଷେ, ଦିନାନ୍ତରଙ୍ଗେ, କ୍ଷୀଣ ବିଭାସିତ
ଆକାଶେ ଉଦ୍‌ଭିନ୍ନ ଯେହ୍ନେ ଆଦ୍ୟ ତାରାବଳି ।

ମିତ୍ରା ଚାଲେ,ଶ୍ୱେତ ଅଶ୍ୱେ, ପିନ୍ଧି ରକ୍ତାମ୍ବର,—
ଚିକ୍‌କଣ ରେଶମ ପରେ ଛାୟା ଓ ଆଲୋକ
ଦୁଇ ଦୁଷ୍ଟ ଶିଶୁପରି କରୁଥାନ୍ତି କ୍ରୀଡ଼ା ।
ସୁଗୋଲ, ସୁଢ଼ଳ ତା'ର ସ୍ୱର୍ଣ୍ଣ-ଦୁଇ ବାହୁ,
ମୃଦୁ-କ୍ଷିପ୍ର, ଗତିଶୀଳ ଅଶ୍ୱ-ପଦ-ଛନ୍ଦେ,
ସୁଗ୍ରଥିତ ଦୁଇ ପୁଷ୍ପମାଳା ଯେହ୍ନେ କେହି
ନଚାଉଛି ତାଳେ ତାଳେ ରହି ଅଦୃଶ୍ୟରେ ।
ଦୀର୍ଘ କୃଷ୍ଣ କେଶ ତା'ର ନିଟୋଳ ଜୁଡ଼ାରେ

ଢଳି ଅଛି ଦୀର୍ଘ, ନିମ୍ନ-ମୁଖ କାକ ସମ
ଗୌର ପୃଷ୍ଠେ । ତେଜୋମୟ ବାମ କପୋଳରେ
ନ ମାନି ଯେତେକ ଶାସ୍ତି, ଚୂର୍ଣ୍ଣ କେଶଗୁଚ୍ଛ
ନାହିଁ ଛାଡ଼େ, କରେ କ୍ରୀଡ଼ା ପ୍ରିୟ ସେ ଅଙ୍ଗନେ ।
ମୃଦୁ ମୃଦୁ ସ୍ମିତ ଦେଇ ଦୁହେଁ ଉପହାର
ଦୁଇ ଦିଗେ, ଚାଲେ ମିତ୍ରା ମୁହୁର୍ମୁହୁଃ ଦୋଳି
ନିପୁଣ-ଖୋଦିତ ତା'ର ବଦନ-ସୁଷମା,—
ମଳୟ-ଦୋଳିତ ଫୁଲ୍ଲ ପଙ୍କଜ ସେ କିବା ।

ଶ୍ମଶ୍ରୁହୀନ, ଶୁଭ୍ର, ସୁଚିକ୍କଣ ଗଣ୍ଡବାନ
ସେପିଲକୋ, ସେଦିନର ପ୍ରଣୟ ସାଫଲ୍ୟେ,—
ମିତ୍ରାର ପରମ ରମ୍ୟ କରପଲ୍ଲବରେ
ଚୁମ୍ବନର ଅଧିକାରେ,—ଉପପ୍ଲୁତଚିତ୍ତ,
ମଥା ଟେକି ଊର୍ଦ୍ଧ୍ୱାକାଶେ ଅଦମ୍ୟ ଉତ୍ସାହେ
ଚାଲେ ଧୀରେ ଗାମ୍ଭୀର୍ଯ୍ୟରେ, ଯେପରି କି ଆଜି
ପାଇଛି ସେ ଜୀବନର ପ୍ରାପ୍ୟ ଯାହା କିଛି,
ଜଗତ୍‌ର ସିଦ୍ଧି ଯାହା ସବୁ ଯେହ୍ନେ ତା'ର
କରାୟତ୍ତ । ଅଶ୍ୱ ତା'ର ଅଟକୁଛି ଖାଲି
ଭଦ୍ରତାର ଅନୁରୋଧେ, ସାଥେ ଜୁଟିବାରୁ
ଇଂରେଜ ସେ ମାଲ୍‌କମ୍—ଘୃଣିତ ବୁର୍ଜୁଆ,
ମନୁଷ୍ୟ-ଶୋଷକ, କ୍ରୁର ସାମ୍ରାଜ୍ୟମଦ୍ୟପ,—
କିପରି ଯେ ମିତ୍ରା ପରି ଶିକ୍ଷିତା ବାଳିକା
ବଂଧୁରୂପେ ବରିପାରେ ପ୍ରାଚୀନ ଏ ସବୁ
ଯାଦୁଘର ଦ୍ରବ୍ୟାବଳୀ, ବୁଝି ସେ ନ ପାରେ ।
ତଥାପି ସେ ସଂଯମୀ ତା ଅନ୍ତର ଉଦ୍‌ବେଳ
ଦେଖାଏ ସକଳ ସାମାଜିକ ସମ୍ଭାବନା[୧]
ମିତ୍ରାର କୋମଳ ଚିତ୍ତେ ନ ଦେବାକୁ ତିଳେ
ସାମାନ୍ୟ ଆଘାତ କାହିଁ । ମିତ୍ରା-ମାଲକମ୍
ଆଳାପେ ନ ଶୁଣି, କିନ୍ତୁ ଦେଖାଇ ଛଳନା
ଶୁଣିବାର; ଧୀରେ ଚାଲେ ଯୁବା ସେପିଲକୋ
ନବ ପ୍ରଣୟର ମଧୁସ୍ୱାଦେ ଆତ୍ମହରା ।

---

୧. ସମ୍ଭାବନା—ସମ୍ମାନ, ଭଦ୍ରତା ।

ମଧୁହାସୀ ମାଲ୍‌କମ୍ ତରୁଣ ବାରନ୍[୨]
ଦୁର୍ଗାଧିପ, ଜମିଦାର ଉତ୍ତର ଇଂଲଣ୍ଡେ,
କେମ୍ବ୍ରିଜ-ସ୍ନାତକ, କରେ ସେଚ୍ଛା-ଅଧ୍ୟୟନ
ଧରଣୀର ସର୍ବପ୍ରାନ୍ତ ମାନବ-ଗୋଷ୍ଠୀର
ସଂସ୍କୃତି ଓ ଇତିହାସ, ଧର୍ମ ଓ ଦର୍ଶନ ।
ପଶ୍ଚିମର ସଭ୍ୟତାର ଦ୍ରବ୍ୟ-କେନ୍ଦ୍ରିକତା[୩]
ଆତ୍ମାହୀନ, ଏକାନ୍ତରେ ପାର୍ଥିବ ଜୀବନ
ଦେବାରୁ ଚିତ୍ତରେ ତା'ର ପ୍ରତିକ୍ରିୟା କିଛି,
ଆସିଛି ସେ ଭାରତର ପୁରାଣ ହୃଦୟେ
ଖୋଜିବାକୁ ଜୀବନର ପରମ ରହସ୍ୟ ।
ମିତ୍ରା ସାଥେ କେମ୍ବ୍ରିଜରେ ହେଉଁ ପରିଚୟ,
ନିବିଡ଼ ମାତୃତ୍ୱ-ସ୍ନେହ ଲଭି ଅଯାଚିତେ
ମିସ୍ ବାଟସନ୍‌ଠାରୁ, ମାତୃହୀନ ସେହି
ତରୁଣ ଇଂରେଜ-ଧନୀ, ତୁଙ୍ଗ-ବଂଶ-ଜାତ—
ସେହି କାଲୁ ହୋଇଅଛି ବିଶ୍ୱ-କୁଟୁମ୍ବିକ,
ମିତ୍ରା-ପରିବାରେ ଏକ ଅନ୍ତରଙ୍ଗ ସଭ୍ୟ ।
କ୍ଷୀଣାଙ୍ଗ ସେ, ଦୀର୍ଘ ଦେହ, ସରଳନାସିକ,
କ୍ଷୀଣ ଆରକ୍ତିମ ଦୁଇ ପେଲବ ଅଧର,
କ୍ଷୁଦ୍ର, ସୁସଂସ୍କୃତ, ଗାଢ଼ ସ୍ୱର୍ଣ୍ଣାଭ ଶ୍ମଶ୍ରୁରେ
ଆବରିତ ଦୁଇ ଗଣ୍ଡ, ଆର୍ଯ୍ୟ ସୌନ୍ଦର୍ଯ୍ୟର,
ପୁଣି ଚିନ୍ତାଶୀଳତାର କରାଇ ପ୍ରଚାର ।
[୪]ଇଙ୍ଗ-ସ୍କଚ୍ ସ୍ୱାଭାବିକେ ଅଳ୍ପଭାଷୀ ପ୍ରାଣୀ,
କହି ନୁହେ ସହଜରେ କି କାମନା ତା'ର
ଅନ୍ତରେ ଜାଗ୍ରତ କରେ, ସୁନ୍ଦରୀ ମିତ୍ରାର
ସହଜ, ଘନିଷ୍ଠ ସଖ୍ୟ । କିନ୍ତୁ ସେହି ଜାଣେ
ଯେ ଦିନ ସେ କାମ୍ ନଦୀ-କୂଳ ଉପବନେ

---

୨. ବାରନ୍—ଇଂଲଣ୍ଡରେ ଅଭିଜାତ ଗୋଷ୍ଠୀର ନିମ୍ନସ୍ତରର ଉପାଧି ।

୩. ଦ୍ରବ୍ୟ-କେନ୍ଦ୍ରିକତା—ମେଟେରିୟାଲିଜିମ୍; ଯେଉଁ ଜୀବନତତ୍ତ୍ୱରେ ଇହଜଗତର ଦ୍ରବ୍ୟମୂଳକ ସୁଖହିଁ ଚରମ ସିଦ୍ଧି । ୟୁରୋପୀୟ ସଭ୍ୟତା ବିଶେଷରେ ମେଟେରିୟାଲିଷ୍ଟିକ ।

୪. ଇଙ୍ଗ-ସ୍କଚ୍— ଇଂରେଜ ଓ ସ୍କଚ୍ ମିଶ୍ରଣ ଜାତ । ଉଭୟେ ସ୍ୱଳ୍ପଭାଷୀ; କିନ୍ତୁ କର୍ମଠତା ପାଇଁ ବିଶ୍ୱବିଖ୍ୟାତ ।

ଇଂଲଣ୍ଡୀୟ ବସନ୍ତର ମଧୁ ଅପରାହ୍‌ଣେ
ପ୍ରଥମେ ଚାହିଁଲା ମିତ୍ରା ଗୂଢ଼-ଗାଢ଼କୃଷ୍ଣ
ଦୁଇ ନେତ୍ରେ, ପୁଣି ତା'ର ସ୍ନିଗ୍‌ଧ, ଘନ, କୃଷ୍ଣ
କୁଞ୍ଚିତ କୁନ୍ତଳ ଶୋଭା (ବିରଳ ତା ଦେଶେ)
ମାଲ୍‌କମ୍-ହୃଦୟର ଅନିର୍ଦ୍ଦିଷ୍ଟ ତଳେ
କେ ଯେହ୍ନେ ଚେତାଇଦେଲା ମୃଦୁଳ ଗୁଞ୍ଜିତେ,
''ଏଇ ସେ ଜୀବନ୍ତ ପ୍ରାଚ୍ୟ, ରହସ୍ୟ-ପିହିତ,
ପ୍ରକୃତିର, ଜୀବନର ନିଗୂଢ଼ ରହସ୍ୟ
ଏହାରି ଅନ୍ତର ତଳେ ଅଛି ଲୁକ୍‌କାୟିତ !''

ଧାବମାନ ମାଲ୍‌କମ୍ ସେ ରହସ୍ୟ ସଂଧାନେ,
ଏବେ ବି ଦେଖୁଛି ମିତ୍ରା-କୃଷ୍ଣନେତ୍ର-ଯୁଗ୍ମେ,
ଘନକୃଷ୍ଣ କେଶେ, ତାର ବାସନ୍ତିକ ଗଣ୍ଡେ,
ପ୍ରାଚ୍ୟର ରହସ୍ୟମୟ ପୁରାଣ ବ୍ୟକ୍ତିତ୍ୱ ।
ମାଲ୍‌କମ୍ ଚଳେ ଧୀରେ, ମୃଦୁଛନ୍ଦେ ଚାଲି
ପାଣ୍ଡୁବର୍ଣ୍ଣ ଅଶ୍ୱ ତା'ର । କଥୋପକଥନ-
ସୁଖେ, ମିତ୍ରା-ସାନ୍ନିଧରେ ମଜ୍ଜାଇ ନିଜରେ,
ଈଗଲ ସେ ଯେହ୍ନେ ପକ୍ଷ ମେଲି ମହାବ୍ୟୋମେ
ଧୀରେ ଖାଲି ଭାସୁଥାଏ, ବ୍ୟୋମେ ଭାସିବାର
ମହାସୁଖ ଅନୁଭବ ।

ଈର୍ଷା-ଉଚ୍ଚାଟନେ
ଡାକିଉଠେ ସେପିଲକୋ ଏକାଳେ ସେ ପାର୍ଶ୍ୱୁଁ—
''ମଧୁର ଆଳାପ ପାଇଁ ଶ୍ରେଷ୍ଠ ସ୍ଥାନ ନିକି
ଅସ୍ଥିର ଏ ଅଶ୍ୱପୃଷ୍ଠ, ମୁକ୍ତ ନଭ ତଳେ ?''
'ନାନା' 'ନାନା' 'କ୍ଷମାକର' କହି ଦୁଇ ବଂଧୁ
ଦେଲେ ଟାଣି ନିଜ ନିଜ ବଲ୍‌ଗା ଅଶ୍ୱ-ମୁଖେ ।
ଟେଙ୍ଗା ହୋଇ, କାନ କରି ସିଧା ପଛଆଡ଼େ,
ନାସିକା ବିସ୍ତାରି, କରି ମୃଦୁ ହ୍ରେଷା ଧ୍ୱନି,
କ୍ଷେପି କ୍ଷେପି ଦଉଡ଼ିଲେ ଅଶ୍ୱ ତିନିଙ୍କର ।
ଜନହୀନ ଦୀର୍ଘବେଳା, ଗତିମୟ ଏହି
ଛଅଟି ପ୍ରାଣୀରେ ହେଲା ସହସା ଯେପରି

ପ୍ରାଣମୟ, ଧ୍ୱନିମୟ, ସହସ୍ର ଜୀବରେ ।
ରେଣୁ-ମେଘ ସୃଷ୍ଟି କରି ପଶ୍ଚାତେ ପଶ୍ଚାତେ
ବାନ୍ଧବୀ-କେନ୍ଦ୍ରିକ ସେହି ଶ୍ୱେତାଙ୍ଗ ଯୁଗଳ
ଧାଇଁଲେ ବିପୁଳ ବେଗେ; ଅଶ୍ୱ ଖୁରାଘାତ
ନାହିଁ ଶୁଭେ ବାଲୁକାର କୋମଳ ତଳ୍ପରେ,
କ୍ଷିପ୍ରତାରେ ଅଶ୍ୱଖୁରା ଲାଗୁଛି କି ନାହିଁ
ଭୂତଳେ ନ ପଡ଼େ ଜଣା । ଉଠନ୍ତି, ପଡ଼ନ୍ତି
ଅଶ୍ୱପୃଷ୍ଠେ ପଲାଣରେ ତରୁଣ ସାଥୀଏ;
ଲଗାମରେ ଦେଇ ଟାଣ, ଦୃଢ଼େ ରଖି ପାଦ
ସ୍ଥିରପା'ରେ [୫] , ଜଘନରେ ସଂକେତି ଅଶ୍ୱରେ
ଧାଇଁଛନ୍ତି ବଂଧ-ଭଂଗା ବନ୍ୟା-ନଦୀ ପରି ।
ଦୁର୍ବାର ଯୌବନ-ଯୋଗ୍ୟ ସ୍ୱପ୍ନ, ଆକାଂକ୍ଷାର
ପ୍ରତୀକ ପରି ସେ ଗତି, ଦ୍ରୁତ, ଅନର୍ଗଳ,
ଅବନ୍ଧନ, ଲକ୍ଷ୍ୟହୀନ, ଗତି-ସୁଖ ମାତ୍ର
ଲକ୍ଷ୍ୟ ଯେଉଁ ଗମନର, ଅଶେଷ ଯାତ୍ରାର ।

ବାଲିବନ୍ତେ ଉଚ୍ଚାବଚ କାହିଁ ବେଳାଭୂମି,
କାହିଁ ଶୂନ୍ୟ ସମତଳ, କାହିଁ କୃଷିକ୍ଷେତ୍ରେ
କ୍ଷତବିକ୍ଷତ ସେ ପୁଣି, କାହିଁ ତୋଟାମାନେ
ଶ୍ୟାମଳ, ଶୀତଳ ଭୂମି, କାହିଁ ରୁକ୍ଷ ମରୁ,—
ଶୂନ୍ୟ କୂଳ ଧରି ପିଟେ ଫଣା କୋଟି କୋଟି
ନୀଳ-ସିନ୍ଧୁ ସର୍ପ-ରାଜ ବିପୁଳ ଗର୍ଜନେ ।
ସେହି ତୋଟା, ସେହି କ୍ଷେତ୍ର, ସେହି ବନ୍ତ, ମରୁ
ଡେଇଁ ଡେଇଁ ଅକଳ୍ପିତ ବେଗେ ଧାଇଁଛନ୍ତି
ତିନିବଂଧୁ, କେ କାହାରେ ପ୍ରଶ୍ନ କରିବାର
ନାହିଁ କିଛି, ନାହିଁ ଅବା ସୁଯୋଗ ସେଲାଗି ।
ଗତି-ସୁଖ, ଶ୍ରମୋନ୍ମାଦ କେବଳହିଁ ଲକ୍ଷ୍ୟ,
ପ୍ରଥମ ସେ ଯୌବନର ସରସ ପ୍ରକାଶେ ।

ଉଚ୍ଚ ଏକ ବାଲିବନ୍ତେ ଉଠି ବିଶ୍ୱମିତ୍ରା
ଡାକଦେଲା କିନ୍ତୁ ବେଳେ, ଦୁଇ ସେ ମିତ୍ରରେ—

---

୫. ସ୍ଥିରପା—ଇଂରାଜୀ ଶବ୍ଦ stirrupର ଓଡ଼ିଆ ରୂପ 'ସ୍ଥିରପା' କରାଯାଇଛି, ଅର୍ଥ ଯେଉଁଠି ପାଦ ସ୍ଥିର ରହେ ।

''ଆସ, ଆସ ଦେଖିଯାଅ, ପରମ ସୁଷମା
ଜନନୀ ଓ କନ୍ୟାକାର, ସିନ୍ଧୁ-ଚିଲିକାର,
ଏକାବେଳେ, ଏକସ୍ଥାନେ ।''

ଅଗ୍ରଗାମୀ ବଂଧୁ
ଇଉକ୍ରେନୀ ସେପିଲକୋ , ଅନିଚ୍ଛାରେ ତା'ର
ଦୁର୍ମଦ ଅଶ୍ୱରେ ଚକ୍ରେ ଟାଣି ପଶ୍ଚାତକୁ,
ଚଢ଼ିଲା ସେ ବନ୍ତପରେ । ମିତ୍ର-ପଛଗାମୀ
ଭଦ୍ର ସେ ଇଂରେଜ-ବନ୍ଧୁ ଯୁବା ମାଲ୍‌କମ୍
ହସି ହସି ପଛୁ ଆସେ ଧୀରେ ବନ୍ତପରେ ।
ବନ୍ତର ସର୍ବୋଚ୍ଚ ପୀଠେ ଠିଆ ହେଉଁ ତିନି,
ଦେଖିଲେ ସେ ଦୁଇପଟ ଦିଗ୍‌ବଳୟବ୍ୟାପୀ
ଅପୂର୍ବ, ଦୁର୍ଲ୍ଲଭ ଦୃଶ୍ୟ, ଅବର୍ଣ୍ଣ୍ୟ ସୌନ୍ଦର୍ଯ୍ୟ,
ଉଦାର, ଗମ୍ଭୀର, ପୁଣି ଲଳିତ, ମୋହନ ।
ଏକପାଶେ ସୁବିସ୍ତୃତ ଦେଖିଲେ ସେମାନେ
ଦୂର ଦିଗ୍‌ବଳୟ ଲମ୍ବି ବିପୁଳ ବାରିଧି,
ବିକ୍ଷୋଭିତ, ଦୋଳାୟିତ, ନୀଳ ମହିମାରେ,
ଭାସ୍ୱର ରବିର କର ମାର୍କତ ତା' ଦେହେ
ଚିକି ଚିକି କରେ କୋଟି-ହୀରକର-ଦ୍ୟୁତି ।
ଅନ୍ୟ ଦିଗେ ସେହି କାଳେ ଦେଖନ୍ତି ସେ ପୁଣି
ଶ୍ୟାମ-କୁଞ୍ଜମୟ-ଦ୍ୱୀପ-ମାଳିନୀ ଚିଲିକା
ମୁକ୍ତ ନଭ ତଳେ, ଦୂର ନୀଳଗିରିମାଳ
ପ୍ରାଚୀର ନିମ୍ନରେ, ମୃଦୁ ଅଳସ ଭଙ୍ଗିରେ
ମେଲି ଦେଇ ସମଗ୍ର ତା' ଦେହର ସୁଷମା,
ଶାୟିତା ସୁନ୍ଦରୀ ଯେହ୍ନେ ନୀଳାମ୍ବୁ ଶୟନେ ।
ଚାହାନ୍ତି ଏପାଖେ ଥରେ, ଥରେକ ସେପାଖେ,
ଏକାବେଳେ ଦେଖିବାକୁ ଦୁଇ ସେ ସୌନ୍ଦର୍ଯ୍ୟେ
ଦ୍ରୁତ କରି ଗ୍ରୀବା ଆଉ ମସ୍ତକ ଚାଳନା,
ବାକ୍ୟହୀନ ବିସ୍ମୟରେ ତିନିହେଁ ସେ ବଂଧୁ
ଲାଗିଗଲେ ପ୍ରକୃତିର ଚିତ୍ର ଦେଖିବାରେ ।
ଅପୂର୍ବ ସେ ଛବି ଦେଖି ଦେଖି ବହୁ କ୍ଷଣ,

ତିନିହେଁ ଅତୃପ୍ତ-ତୃପ୍ତି ଭୋଗି, ହେଲେ ପୁଣି
ସଜ, ଯିବେ ଅଗ୍ର ଦେଶେ । କହେ ମାଲ୍‌କମ୍—
"କେଉଁ ସେ ସୁଷମା ବିଶ୍ୱେ ଭୋଗ୍ୟ ଏକାଥରେ ?
ବାରମ୍ବାର ଆକର୍ଷଣ ସ୍ୱଭାବ ରୂପର !
ଧନ୍ୟବାଦ ମିତ୍ରା, ତମେ ଅପୂର୍ବ ଏ ଶୋଭା
ସାଥିରେ ଯା ପରିଚୟ ଘଟାଇଲ ପଥେ;
ସୁନ୍ଦର ଯେ ସୁନ୍ଦରକୁ କରିବ ସମ୍ମାନ
ସ୍ୱାଭାବିକ ବିଧି ସିନା ? ଚାଲ ଯିବା ଏବେ,—
ବାରମ୍ବାର ଏଇ ସ୍ଥାନେ ଆସିବାଟି ପୁଣି,
ଅନୁପମ ଏ ଶୋଭାରେ ଦେବାକୁ ସମ୍ମାନ ।"

ବନ୍ଧୁ ସେ ଓହ୍ଲାଇ ଧୀରେ ଦେଲେ ଅଶ୍ୱ ଚାଳି
ପୁଣି କ୍ଷିପ୍ର ବେଗେ ତିନି । କୃଷକ ଲଳନା
ବିସ୍ମୟେ ଭ୍ରୂଲତା ଟେକି ଦେଖନ୍ତି ସେମାନେ,
ଦେଖନ୍ତି ଗୋପାଳ ବାଳେ ପୋତି ଦେଇ ଯଷ୍ଟି
ବାଲିରେ, ଶୀର୍ଷରେ ତାର ରଖି ହାତ-ଭରା,
ଦେଖନ୍ତି ଚକିତ ନେତ୍ରେ ସମୁଦ୍ର-ଧୀବରେ
ମେଲୁ ମେଲୁ ଜାଲ ତାଙ୍କ ବେଳା ବାଲୁକାରେ ।

ଏକାଳେ ଦୂରରେ ଦେଖି ବେଳାମୃଗପଲ
ଦଳପତି ଦୀର୍ଘଶୃଙ୍ଗ ବାହୁଟିଆ ସହ,
ତିନିହେଁ ଧାଇଁଲେ, ସେହି ଦିଗେ କୌତୁକରେ ।
ଧାଇଁଲେ ପବନ ବେଗେ ମୃଗ-ମୃଗୀଦଳ
ରବରର ପିଣ୍ଡ ଅବା ପଡୁଛି ଉଠୁଛି
ବିରାଟ ଅଦୃଶ୍ୟ କେଉଁ ଖେଳାଳି କରର
କ୍ଷିପ୍ର, ଗୁରୁ ଆଘାତରେ । ଦ୍ୱିଗୁଣ କୌତୁକେ
ବିସ୍ମିତ ନେତ୍ରରେ ଚାହିଁ ଧାବନ-ସୌନ୍ଦର୍ଯ୍ୟ
ତ୍ରସ୍ତ ମୃଗ-ମୃଗୀଙ୍କର, ଧାଇଁଲେ ସେ ତିନି
ଦ୍ୱିଗୁଣ ବେଗରେ । ଚୂଡ଼ା ଫିଟି ପଛେ ଉଡ଼େ
ମିତ୍ରାର; ବିଜୟ ନେତ ଅବା ସୌନ୍ଦର୍ଯ୍ୟର,
ଯୌବନର ମହାହ୍ୱାନ । ଘର୍ମାକ୍ତ ସକଳେ,
ପୀଡ଼ିତ-ନିତମ୍ବ-କଟି-ଜଘନ ସଭିର

ତଥାପି ଯୌବନୋନ୍ମାଦେ ଧାଇଁଛନ୍ତି ତିନି,
ପ୍ରତ୍ୟେକହିଁ ପରାଙ୍ମୁଖ ଅନ୍ୟେ କରିବାକୁ
ନିଜର ଦୁର୍ବଳ ଦେହ-ଶ୍ରାନ୍ତିର ସ୍ୱୀକାର ।

## [ ଷଷ୍ଠ ସର୍ଗ ]

କରୁଣା-କଲୋନି ଆଜି ଉତ୍ସବ-ଚଞ୍ଚଳ,
ଏବେ, ପୂର୍ବୁ-ସ୍ଥିର ଏକ ବିଭାଘର ଲାଗି.
ଦ୍ୱିତୀୟେ ଏ ସଂସ୍ଥାନର ଦୁଇ ଦେବ ଦେବୀ
କରୁଣା ଓ କମଳର ରକ୍ତ-ପ୍ରତିନିଧି
ସାଙ୍ଗକରି ବିଦ୍ୟା ତା'ର ଦେଶେ ଓ ବିଦେଶେ,
ବିଶ୍ୱମିତ୍ରା ସମାଗତ, ଶ୍ୱେତାଙ୍ଗ ବଂଧୁରେ
ଘେନି, ଆଦ୍ୟ ଥର ପାଇଁ, ପିତୃ କର୍ମକ୍ଷେତ୍ରେ ।
ଅଶ୍ୱ ରଖି ଉପବନେ, ଆମ୍ର-ନାରୀକେଳ-
-ଛାୟା-ସ୍ନିଗଧ ଗ୍ରାମ୍ୟପଥେ ଚଳି ଅଲକ୍ଷିତେ,
ହଠାତ୍ ସେ ତିନି ଯେବେ ହେଲେ ପ୍ରକାଶିତ
ଗ୍ରାମ ଦାଣ୍ଡେ, ପ୍ରକାଶିତ କରଇ ଯେସନେ
ଆପଣାକୁ ଗିରିନଦୀ ହଠାତ୍ ନିମ୍ନରେ,—
ପୁଞ୍ଜୀଭୂତ ହୋଇଗଲେ ସମଗ୍ର ଜନତା
ନବାଗତ ଚାରିପାଶେ ।

ନିରବିଲା ବାଦ୍ୟ,
ନିରବିଲା ଶଙ୍ଖଧ୍ୱନି, ହୁଳହୁଳି ପୁଣି,
ନାରୀନର, ବୃଦ୍ଧ-ବୃଦ୍ଧା, ବାଳକବାଳିକା
ସର୍ବେ ମହା କୁତୂହଳେ ପଡ଼ିଲେ ଅଙ୍କାଡ଼ି ।
ସର୍ବେ ସେହି ଗ୍ରାମ୍ୟଜନେ ଦେଖିଲେ ପ୍ରଥମେ
ଦୂରଦେଶାଗତ ସେହି ଶ୍ୱେତାଙ୍ଗ ଯୁଗଳେ,—
ଶ୍ୱେତଚର୍ମ, ସ୍ୱର୍ଣ୍ଣକେଶ, ଆରକ୍ତ ଅଧର,
ତାଙ୍କ ପାଶେ ଉଭା ପୁଣି ଅନିନ୍ଦ୍ୟ ସୁନ୍ଦରୀ
ମିତ୍ରା, ଯେହୁ କନ୍ୟା ଏକ ତାଙ୍କରି ଘରର,—
ତାଙ୍କ ପରିଚିତ ମାଟି, ଶିକ୍ଷା, ସଂସ୍କୃତିରେ

ରସାଣିତ ହୋଇ, ଉଭା ସ୍ୱର୍ଣ୍ଣମୂର୍ତ୍ତିରୂପେ ।
ପ୍ରଥମେ ନିର୍ବାକ ରହି ଗ୍ରାମୀଣ ଜନତା
ଦେଖିଲେ କେବଳ ସେହି ଅଦ୍ଭୁତ ଜୀବଙ୍କୁ
ବହୁକ୍ଷଣ, ଅପ୍ରତ୍ୟୟ-ପ୍ରତ୍ୟକ୍ଷ-ଦ୍ୱନ୍ଦ୍ୱରେ
ବୁଡ଼ିରହି ବିସ୍ମୟରେ । ସକଳଙ୍କ ବକ୍ଷେ
ଏକ ପ୍ରଶ୍ନ ଯୁଗପତ୍ ଉଠେ—ସତେ ଏ କି
ସମ୍ଭବ ଏ ଜଗତ୍‌ରେ ? ମନୁଷ୍ୟ କି ସତେ
ହୋଇପାରେ ଏତେ ଶ୍ୱେତ, ନାରୀ କି ସତରେ
ହୋଇପାରେ ଏସନେକ ସୁନ୍ଦରୀ ଜଗତେ
ରକ୍ତ-ମାଂସ-ହାଡ଼ ଦେହେ ?

ଜନତା ଅନ୍ତରେ
କିଛି କାଳ ଚାଲୁଁ ଏହି ବିସ୍ମିତ ଜିଜ୍ଞାସା,
ଗ୍ରାମବୃଦ୍ଧ କେତେ ଜଣ, ଦଳାଇ, ବିଶୋଇ,
ନାୟକ, ବିଶ୍ୱାଳ, ପୁଣି ଗ୍ରାମ୍ୟ ପୁରୋହିତେ
ଡାକଦେଲେ ସମବେତ ଜନତାରେ ଉଚ୍ଚେ
"ଉଠ ରେ, ଛାଡ଼ ରେ ପିଲେ, ସାହେବମାନଙ୍କୁ
ବାଟ ଦିଅ, ଚର୍ଚ୍ଚା କର, ଦିଅ ବସିବାକୁ,—
ଘେନିଯାଅ ଇସ୍କୁଲରେ, ଡାକ ମାଷ୍ଟରଙ୍କୁ
ଘେନିଯାଇ ରଖାଇବେ, କରିବେ ବ୍ୟବସ୍ଥା ।
ଗ୍ରାମର କି ଭାଗ୍ୟ ଆଜି ! ବାବୁଙ୍କର କନ୍ୟା
ଲକ୍ଷ୍ମୀ ସ୍ୱରୂପିଣୀ ମାଆ ଉପଗତା ଆଜି,
ଆମ ଦ୍ୱାରେ । ଗଉରୀର ବଡ଼ ଭାଗ୍ୟ ସତେ
ତା' ମଙ୍ଗଳକୃତ୍ୟ ଦିନେ ଏମନ୍ତ କୁଣିଆ !"

କିନ୍ତୁ ଉତ୍ତରିଲା ମିତ୍ରା—" ଶୁଣନ୍ତୁ ସଜ୍ଜନେ,
ମୋର ଏହି ପରଦେଶୀ ବନ୍ଧୁ ଦୁଇଜଣ,
ଆସିଛନ୍ତି ଦେଖିବାକୁ ଆମ ଦେଶ,ଗ୍ରାମ,
ଆମ ଗ୍ରାମେ ନରନାରୀ ରହନ୍ତି କିପରି,
କିପରି ଉତ୍ସବ ତାଙ୍କ, ପରସ୍ପର ମଧ୍ୟେ
କିପରି ବା ସହଯୋଗ, କି ତାଙ୍କ ଅଭାବ ।
ଦେଖୁଛି ମୁଁ ଆୟୋଜନୁଁ ଗ୍ରାମରେ କାହାର

ହେଉଛି ମଙ୍ଗଳକୃତ୍ୟ । ଦିଅ ନାହିଁ ବାଧା,
ଆମେ ସବୁ ଆନନ୍ଦରେ ଯୋଗଦେବୁ ତହିଁ,
ତମ ସାଥେ ଏକ ହୋଇ କରିବୁ ଯୋଗାଡ଼,
ଆମକୁ ଅତିଥି ବୋଲି ଭାବୁଛ କାହିଁକି ?
ମୁଁ ତ ତମ ଗାଆଁ ଝିଅ, ଏମାନେ ମୋହର
ବିଦେଶୀ ବାନ୍ଧବ, ତେଣୁ ତମରି ବାନ୍ଧବ ।
ଚାଲ ଯିବା ସେହି ଘରେ ଯେଉଁ ପରିବାରେ
ଘଟୁଛି ମଙ୍ଗଳ କର୍ମ ।''

''ନାହିଁ ମା' ! ଏ ନୁହେଁ
ଜଣକର କର୍ମ ଆଉ । ତମ ବାପା-ବୋଉ
ଏ ଗ୍ରାମ, ଏ ଅଞ୍ଚଳରୁ ସେ ବ୍ୟକ୍ତି-କେନ୍ଦ୍ରିକ
ଭାବ ନେଇଛନ୍ତି ପୋଛି ବହୁ କାଳୁ ମାଆ ।
ଆଜି ଗ୍ରାମେ ପ୍ରତ୍ୟେକର ସୁଖ ଦୁଃଖ ଯାହା
ସମଗ୍ର ଗ୍ରାମର ତାହା, ନାହିଁ ଭେଦାଭେଦ,
ଗ୍ରାମ ଆଉ ଗ୍ରାମବାସୀ ଅଭିନ୍ନ ଇଦାନୀଂ ।
ଆଜି ଏ ଉତ୍ସବ ଘଟେ ମାଳତୀ ନାନୀର;
—ସେହି ସେ ମାଳତୀ, ଯିଏ ବାପାଙ୍କୁ ତମର
ଟାଣିଆଣିଥିଲା ଏହି ଜନ୍ମ-ମୃତ୍ତିକାରେ,—
ତାହାରି ନାତୁଣୀ ଗୌରୀ ବିଭା ହୁଏ ଆଜି
ଗ୍ରାମ-ସେବା-ବିନିଯୁକ୍ତ ଟୋକା ବାବୁ ସାଥେ ।
ସରକାରୀ କର୍ମଚାରୀ,- ଏଇ ଅଞ୍ଚଳରେ
କାମ କରୁଁ, ଦେଖି ଚାହିଁ ବାଛିଲେ ଗୌରୀରେ
ନିଜେ ସେହି; ସମର୍ଥିତ ଗ୍ରାମ-ପଞ୍ଚାୟତେ
ହୋଇଯାଇ ସେ ପ୍ରସ୍ତାବ, ସମଗ୍ର ଏ ଗ୍ରାମ
କରୁଛି ଏ ଆୟୋଜନ, ସେ ଶୁଭ କର୍ମର ।''

ଏହା କହି ଶ୍ୱେତକେଶ ଗ୍ରାମୀଣ, ଲହସେ
ହଠାତ୍ ସ୍ମରିଲେ ଭାବାବେଗେ ଏ ଗ୍ରାମର
ସ୍ୱର୍ଗତ ଦେବତା-ଯୁଗ୍ମେ, ଭାଷିଲେ ଗଦ୍‌ଗଦେ—

''ଆହା ମା' ଥାଆନ୍ତେ ଆଜି ତମ ବାପା-ବୋଉ
କି ସୁଖ ସେ ନାହିଁ ପାଇଥାନ୍ତେ ମନେ ମନେ !

ଆମେ ସବୁ ଅପଦାର୍ଥ ଅଛୁ ଦେହ ଧରି,
ନ ସହି ଚଣ୍ଡାଳ ଯମ ସେ ଦେବଦେବୀରେ
ଘେନିଗଲା ଏଡ଼େ ବେଗି ! କି ବିଚାର ସତେ !"

ଗ୍ରାମୀଣର ସ୍ୱଗତୋକ୍ତି ସମଗ୍ର ଲୋକରେ
ବିଷାଦର ଛାୟା ଏକ ଦେଲାକ ଖେଳାଇ,
ମୁଖ ପୋତି ଦଣ୍ଡେ ସର୍ବେ ରହିଲେ ସ୍ତବଧ ।
ମିତ୍ରାର କିଶୋର-ବକ୍ଷ ନ ପାରିଣ କିନ୍ତୁ
ସମ୍ଭାଳି ସେ ଭାବାବେଗ, ବସି ସେ ପଡ଼ିଲା
ଠିଆହେବା ସ୍ଥାନେ, ଜାନୁପାତି ମୃତ୍ତିକାରେ;
ପିତୃମାତୃ-ପଦସ୍ପର୍ଶ-ପୂତ ସେହି ମାଟି
ଲଗାଇ ମସ୍ତକେ ପୁଣି ଡାକେ 'ବାପା' ! 'ବୋଉ' !
ଭାବବିହ୍ୱଳିତ, ନାତିଉଚ୍ଚ କଣ୍ଠରବେ;
ଗଣ୍ଡ ବାହି ଦରଦର ଉଷ୍ଣ ଅଶ୍ରୁଧାର
ବୋହିଯାଇ କରେ ଓଦା ପଟ୍ଟବସ୍ତ୍ର ତା'ର ।

ଏ ଦୃଶ୍ୟେ ବିମୂଢ଼ ହୋଇ ବୟସ୍କ ଗ୍ରାମୀଣ,
କିଛି କାଳ ରହି ସ୍ତବ୍‌ଧ ଭାବି ସେ ନିଜରେ
ଅପରାଧୀ,—କି କଲା ସେ, କି ହେଲା ବା ଭାବି—
ହଠାତ୍ ବାହାରିଆସି ଜନତାର ମେଣ୍ଟୁ,
ଭୂକର୍ଷଣ-କଠିନୀତ ନିଜ ଦୁଇ କରେ
ଧରି ମିତ୍ରା ସୁକୋମଳ ସୁକୁମାର କର-
ପଲ୍ଲବ, ଉଠାଇ ତାକୁ ଓଟାରି ଭୂମିରୁ
କହେ ତା'ରେ—"ଉଠ ମାଆ, ଗାଆଁରେ ପ୍ରବେଶି,
ପ୍ରଥମରେ, ତମ ନେତ୍ରେ ଲୁହ ଦେଖିବା କି
ଆମ ପକ୍ଷେ ଖୁସି କଥା ? ତମେ ଆମ ଲକ୍ଷ୍ମୀ,
ଗାଆଁ ଆଜି କି ସୁନ୍ଦର, କି ଭାଗ୍ୟ ଆମର
ତମ ଆଗମନେ ! ଉଠ, ଉତ୍ସବରେ ମିଶି
ଆସ ମା, ତମରି ଲୋକେ ଚାଲାଅ ହକାରି ।
ଯେପରି ଆଦେଶ ଦେବ, କରିବୁ ସେପରି,
ତମ ଲାଗି ଦେବୁ ପ୍ରାଣ, ହେଲେ ପ୍ରୟୋଜନ ।
ଉଠ, ଆସ, ଯିବା ଏଥୁଁ ସିଧା ଗୌରୀ-ଘରେ ।

ଆସନ୍ତୁ ତମର ଦୁଇ ବିଦେଶୀ ବାନ୍ଧବେ,
କିଛି ବାଧା ନାହିଁ ସେଥି । ବାପା,ବୋଉ ତବ
କରିଯାଇଛନ୍ତି ଆମ ଚିତ୍ତ ରୂପାନ୍ତର,
ସକଳ-ସଂସ୍କାରମୁକ୍ତ, ବାଛ-ଘୃଣା-ହୀନ,
ସକଳ ମାନବ ଏଥି ସାଦରେ ସ୍ୱାଗତ ।
ଜାଣିନ ତମେ ଗୋ ମାଆ, ଗୌରୀ ତ ବ୍ରାହ୍ମଣୀ,
ବର ତା'ର ଚଷାପିଲା---ଏ ଗ୍ରାମ-ସେବକ,
ଯେ କି ପୂର୍ବେ ଥିଲା ରହି ଘୃଣ୍ୟ ଅପାଂକ୍ତେୟ ।''

ଶୁଣି ଶୁଣି ଗ୍ରାମକଥା ବାପା ବୋଉଙ୍କର
କୀର୍ତ୍ତିଗାଥା, ମିତ୍ରା ଚାଲେ ଧୀରେ ଗ୍ରାମଦାଣ୍ଡେ,
ସାଥେ, ତାର ଦୁଇ ବଂଧୁ, ପଶ୍ଚାତ୍‌ରେ ତାଙ୍କ
କୁତୂହଳୀ ଗ୍ରାମ୍ୟ ଲୋକେ, ହୋନ୍ତି ଠେଲାପେଲା ।
ଗ୍ରାମ ଶେଷେ ଗୌରୀଘର, ଶୁଭକର୍ମ ଲାଗି
ଲିପା-ପୋଛା-ଚିତାଚିହ୍ନେ, ଶୁଦ୍ଧ, ମନୋରମ;
ଦାଣ୍ଡେ ପ୍ରଲମ୍ବିତ ତାଳପତ୍ରର ଚାନ୍ଦୁଆ
ନିମ୍ନେ ଦେଇ ସୁଶୀତଳ ଆଶ୍ରୟ ଲୋକରେ ।
ବିଦେଶୀ ବଂଧୁଙ୍କୁ ନେଇ ଛାମୁଣ୍ଡିଆ ତଳେ
ବସାଇ ସଯତ୍ନେ, ଜନେ ମିତ୍ରାକୁ ଭିତରେ
ଘେନିଗଲେ ମହୋଲ୍ଲାସେ ।

ଗୃହାଙ୍ଗନେ ପଶୁଁ
ଉଚ୍ଛୁଳିପଡ଼ିଲେ ଯେହ୍ନେ ଗ୍ରାମ ନାରୀଦଳ
ଜଳଧାରା ସମ ସ୍ଥାନଚ୍ୟୁତ ଜଳଭାଣ୍ଡୁ,
ମାଡ଼ିଗଲେ ମିତ୍ରା ପାଶେ ପାଶେ ଚଉଦିଗେ ।
ଆସିଲା ମାଳତୀ ନାନୀ ଭିତ୍ରରୁ ବାହାରି,
ବାତଗ୍ରସ୍ତ, ଯଷ୍ଟିହସ୍ତ, ଛୋଟାଇ ଛୋଟାଇ;
ଶିରାଳ ତା ଜରାଜୀର୍ଣ୍ଣ କର ମିତ୍ରା-ଗଣ୍ଡେ
ନିବିଡ଼େ ଆଉଁସି, ଏଣେ ମୁଞ୍ଚି ଅଶ୍ରୁଧାରା,
କହେ ଗଦ୍‌ଗଦ ବାଣୀ—''ଆହା ମୋ ସଞ୍ଜାଳି,
ଧନ ମୋର, ସବୁ ମୋର, ଲକ୍ଷ୍ମୀ ଏ ଗ୍ରାମର,

ବାପ-ମାଆ ଆଖି-ନାକ ଘେନି କି ସୁନ୍ଦର
ସୁନାର ପିତୁଳା ତୁ ଲୋ ? କେଉଁ ଦେଶେ ଦେଶେ
ବୁଲୁଥିଲୁ ଏତେ କାଳ ? ମନେ କି ଲୋ ତୋର
ପଡୁଥିଲା ଏଇ ମାଟି ? ଗରିବର ଘରେ
ତୋ ଶ୍ରୀପଦ ଧୂଳି ଦେଲୁ, କି ଭାଗ୍ୟ ଆମର !
ସବୁ ତ ତୋହରି ମାଆ, ତୋ' ବାପା-ମାଆର,
—ସ୍ୱର୍ଗର ଦେବତା ସେ ତ, ନୁହନ୍ତି ମର୍ତ୍ତ୍ୟର—
ଏ ଗ୍ରାମ, ଏ ଘରଦ୍ୱାର, ସକଳ ଉନ୍ନତି,—
ଲକ୍ଷ୍ମୀ ତାଙ୍କ ନିଜ ଘରେ ବିଜେ ହେଲେ ଆଜି,
ଆ ଆଲୋ ମା, ଆଲୋ ରାଧା, ନିଅ ଲୋ ଝିଅକୁ—''

ମାଳତୀର କନ୍ୟା ରାଧା, ଗୌରୀର ଜନନୀ,
ପଶ୍ଚାତରେ ମୌନ ରହି ଦେଖୁଥିଲା ସବୁ;
ଆଗକୁ ସେ ଆସି ଏବେ, ଧରି ମିତ୍ରାକର
ନେଇଗଲା ଭିତରକୁ । ଭିତର ଅଗଣେ
ମଶିଣା ବିଛାଇଦେଇ, ବସାଇ ମିତ୍ରାରେ
ଗ୍ରାମ ସୀମନ୍ତିନୀଦଳ, ଆରମ୍ଭିଲେ ତା'ରେ
ନିଜ ଇଚ୍ଛା ରୁଚିମତେ ସଜାଇ କୌତୁକେ,
କହି—''ଆଜି ଦିନଟାରେ ରହିବ କି ଝିଅ,
ନ ନାଇ ଭୂଷଣ କିଛି, ସାଇବାଣୀ ପରି ?''

ସ୍ୱଭାବ-ସୁନ୍ଦର ମିତ୍ରା-ସ୍ୱର୍ଣ୍ଣ-ତନୁ-ଯଷ୍ଟି
ଧୀରେ ଧୀରେ ଆଭରଣ-ବିନ୍ୟାସେ ହୋଇଲା,
ପୁଷ୍ପୋଦ୍‌ଗମେ ଲତା ସମ, ଶିଶିର ସଂଯୋଗେ
ଦୂର୍ବାଦଳ, ତାରାଗମେ ନିର୍ମେଘ ଆକାଶ,
ସୁକଣ୍ଠେ ଗାନର ଧାରା ଉତ୍ତମ ଯୋଜନା
ଯେହ୍ନେ ଜନ-ସହଯୋଗେ, ତେମନ୍ତେ ଅଧିକ
ଚମତ୍‌କାର, ମନୋହର । ନୂପୁର ପୟରେ,
କରେ କାରୁ-ବିମଣ୍ଡିତ ରୁପାର ବଳୟ,
ଭୁଜେ ବାଜୁ, କଣ୍ଠେ ସ୍ୱର୍ଣ୍ଣମାଳା ଏକାଧିକ,
ମସ୍ତକେ ସିନ୍ଦୂରବିନ୍ଦୁ, ଚନ୍ଦନ ପଙ୍କରେ

ଚିତ୍ରିତ କନକଭାଲ, ପିନ୍ଧାଇଲେ ଶେଷେ
ନବ ଶୁଭ୍ର ପଟ୍ଟବସ୍ତ୍ର । ଗୌରୀ ଓ ତାହାରେ
ଏକତ୍ର କରାଇ ଠିଆ, ନିଖିଳ ନାରୀଏ
ନିରାଜନା କଲେ ତାଙ୍କୁ ହୁଳହୁଳି ଦେଇ
ଉଲ୍ଲସିତ ଉତ୍ସାହରେ । ଦୁହିଁଙ୍କୁ ଆଣିଲେ
ପୁଣି ବହିରାଙ୍ଗନରେ; ବିଦେଶୀ ବାନ୍ଧବେ
ଡକାଇ ଆଣିଲେ ତହିଁ । ଦୁଇ ସେ ବିଦେଶୀ
ସ୍ତବ୍ଧ ଦେଖି ମିତ୍ରାର ସେ ନବରୂପାନ୍ତର—
ମନୋରମ ପ୍ରାଚ୍ୟ-ବଧୂ-ସ୍ୱପ୍ନ ସମ୍ମୁଖରେ
ବାସ୍ତବତା ଅକଳ୍ପିତେ । ପ୍ରାଚ୍ୟ ବିଭୂଷଣେ
ଅଲକ୍ତ-ରକ୍ତିମ ପଦେ, ଅଞ୍ଜନ-ରଞ୍ଜିତ
ନେତ୍ରେ, ମିତ୍ରା, ପ୍ରାଚ୍ୟ-ବଧୂ-ସ୍ୱଭାବଜ-ଲାଜେ
ଚାହିଁ, ଚାହିଁ ନ ପାରଇ ବଂଧୁଯୁଗ୍ମେ ତା'ର,
ସମ୍ଭାଷିଲା ଖାଲି ତାଙ୍କୁ ନୀରବ କଟାକ୍ଷେ,
ଥର ଥର ସ୍ମିତହାସ୍ୟେ । ବଂଧୁ ଦୁଇ ତା'ର
ଏକାଧିକ ଫଟୋ ନେଲେ ତା'ର ଓ ଗୌରୀର ।

କ୍ରମେ ସମାହିତ ହେଲା ମଙ୍ଗଳ ଉତ୍ସବ
ବାଦ୍ୟନାଦେ, ନାରୀ ଓଷ୍ଠ ହୁଳହୁଳି ମଧ୍ୟେ,
ଗ୍ରାମଜନ କୋଳାହଳେ । କ୍ଷୁଦ୍ର ସେହି ଗ୍ରାମ
ଉଠେ ପଡ଼େ, ଉଚ୍ଛୁଳଇ, ଆନନ୍ଦ-ଉନ୍ମତ୍ତ ।
ମାଲ୍‌କମ୍, ସେପିଲକୋ ଦେଖୁଥାନ୍ତି ବସି
ଚିତ୍ରମନ୍ତ, ବର୍ଣ୍ଣାଢ଼୍ୟ ସେ ବେଦୀ-କର୍ମ ଯେତେ,
ଘୃତଦୀପ, ହୋମକୁଣ୍ଡ, ଘଟ-ନାରିକେଳ,
ଦୂର୍ବାକ୍ଷତ-ହରିଦ୍ରାର ପୁଣ୍ୟ ଆହରଣ,
ବ୍ରାହ୍ମଣର ଗୁରୁକଣ୍ଠେ ମନ୍ତ୍ରର ଆବୃତ୍ତି,—
ସବୁ ମିଶି କରୁଥିଲେ ପ୍ରତିଭାତ ତାଙ୍କ
ସମ୍ମୁଖରେ, ଭାରତର ପୁରାଣ କୃଷ୍ଟିର
ରହସ୍ୟ-ଆବୃତ୍ତ ଏକ କ୍ଷୁଦ୍ର ଚଳଚ୍ଚିତ୍ର,
ଗ୍ରଥିତ ରହିଛି ଯହିଁ ପ୍ରତିଟି ବିଧାନେ
ଶତ ଶତ ଶତାବ୍ଦୀର ଗୂଢ଼ ଅଭିଜ୍ଞତା,

ଗଭୀର କଲ୍ୟାଣ-ବାଞ୍ଛା ଆଗାମୀ ବଂଶର ।
ବେଳେବେଳେ ମିତ୍ରା ଆସି ତାଙ୍କର ଗହଣେ,
ହୋଇଯାଏ କଥାଭାଷା, ଦିଏ ବା ବୁଝାଇ
ବିଧାନର ପଛେ ଥିବା ତାତ୍ତ୍ୱିକ ସଂକେତ ।
ମୁଗ୍ଧ ହୋଇ, ସମଗ୍ରକୁ ମିଳାଇ ଅଂଶରେ,
ମନେ ମନେ ଚିତ୍ରୁଥାନ୍ତି ବିଜ୍ଞ ବିଦେଶୀଏ,
ଭାରତୀୟ ସଭ୍ୟତାର ପୂର୍ଣ୍ଣ ଏକ ଚିତ୍ର ।

ସମାପ୍ତ ମଙ୍ଗଳୋତ୍ସବ । ସମୀପ ଉଦ୍ୟାନେ
ସୁଶୀତଳ ଆମ୍ରକୁଂଜ ଛାୟା ତଳେ ତଳେ
ପଦ୍ମ-ପତ୍ର-ପାତ୍ରେ ବାଢ଼ି ସମବେତ-ରନ୍ଧା
ଗ୍ରାମ୍ୟଭୋଜି; ବସିଗଲେ ବୃଦ୍ଧ, ଯୁବା, ଶିଶୁ;
ପରଷିଲେ ଗ୍ରାମବଧୂ; ଅଲକ୍ତରଂଜିତ
ଯା'ଙ୍କ ପଦେ ତୋଟାଭୂମି ହେଲା ପୁଷ୍ପମୟ ।
ମିତ୍ରାର ବିଦେଶୀ ବଂଧୁ ସମସ୍ତଙ୍କ ସହ
ନଗ୍ନ ମୃତ୍ତିକାରେ ବସି, ଅପୂର୍ବ ତୃପ୍ତିରେ
ଭୁଞ୍ଜିଲେ ସରଳ-ପାକ,-ବିଳାସ-ବିହୀନ,
ସ୍ନେହ-ସିକ୍ତ ସେହି ଭୋଜ୍ୟ । ପଂକ୍ତି-ଭୋଜନର,
ମୁକ୍ତାକାଶ ତଳେ, ମୁକ୍ତ ମୃତ୍ତିକାରେ ବସି,
ଅପୂର୍ବ ସେ ଅଭିଜ୍ଞତା, ବିଦେଶୀଙ୍କ ଚିତ୍ତେ
କରୁଥାଇ ମୁହୁର୍ମୁହୁଃ ଆବେଗ ସୃଜନ ।

ଉତ୍ସବର ଶେଷେ ଯେବେ ସମଗ୍ର ସେ ଗ୍ରାମ
ଗୌରୀରେ ବିଦାୟ ଦେଲା, ବିଗଳିତ ହୃଦେ,
ଲୋତକ-ପ୍ଲାବିତ ନେତ୍ରେ, ଗୌରୀ ସୁକୁମାରୀ
ଶାଶ୍ରୁନେତ୍ରେ ପ୍ରତ୍ୟେକଠୁଁ ଘେନିଲା ବିଦାୟ,
ମଧୁ ସ୍ମୃତି-ଭରା ସେହି ବାଲ୍ୟଲୀଳାପୀଠେ
ଚିରଦିନ ପାଇଁ ଛାଡ଼ି ଯିବାରୁ ଯେ ବ୍ୟଥା,
କୁହୁଳୁଥିଲା ତା ବକ୍ଷେ, ତାହାରି ପ୍ରକାଶ
କରି କରି ଅର୍ଦ୍ଧସ୍ପଷ୍ଟ ନାନା ବଚନରେ
ମାଆ, କକା, ଅପା, ଖୁଡ଼ୀ, ମାଉସୀ, ପିଉସୀ
ସଭିଙ୍କ ସମ୍ମୁଖେ କାନ୍ଦି ତୁହାଇ ତୁହାଇ

ନିଖିଳ ଗ୍ରାମର ନେତ୍ରୁ କରୁଣାର ଧାରା
ବୁହାଇ ଥରକୁ ଥର ।

ଗୌରୀ ମାତାମହୀ
ମାଳତୀ ନାନୀ ସେ, ବସି ଦୂର ଏକ ସ୍ଥାନେ
ଦେଖୁଥାଏ , ମର୍ମଫଟା ଦୀର୍ଘଶ୍ୱାସ ଫେଇ
ତା' ନିଖିଳ ଆଦରର କନକ ପିତୁଳା
ତା' ହାତୁ ଛଡ଼ାଇ କିଏ ପଳାଇବା ନେଇ ।
ବିଦେଶୀ ବଂଧୁଏ ମଧ୍ୟ ଏ ବିଦାୟ ଦୃଶ୍ୟେ
ନାହିଁ କରିପାରିଥିଲେ ଅଶ୍ରୁ-ସମ୍ବରଣ ।

## [ ସପ୍ତମ ସର୍ଗ ]

ମରକତ ଲତା ଦେହେ ସ୍ଫଟିକର ଦୁଇ
ଶୁଭ୍ର ପୁଷ୍ପ ସମ ଦିଶେ ଦାନିଉବ ନଦୀ–
ଦୁଇ କୂଳେ ଯୁଗ୍ମ-ପୁରୀ, 'ବୁଦା' ଆଉ 'ପେସ୍ତ'[୧] ।
ଏକ ପାଶେ ପୁଞ୍ଜୀଭୂତ ଶୁଭ୍ର ମେଘ ସମ
ନୀଳାକାଶେ, ଦିଶେ ବୁଦା-ସୌଧାବଳି ସ୍ତର
ଅନୁଚ୍ଚ-ପର୍ବତ-ବ୍ୟାପୀ, କେନ୍ଦ୍ର କରି ସର୍ବେ
ସେ ଗିରିର ଉଚ୍ଚତମ ବିନ୍ଦୁରେ ରାଜିତ,
ଦୃଢ଼, ତୁଙ୍ଗ ଦୁର୍ଗ-ରାଜି । ନଦୀ ଅନ୍ୟ ତଟେ
ଉର୍ବର କୋମଳ ମାଟି ପରେ ହଙ୍ଗେରୀର,
ଶୁଭ୍ର-ଦୁକୂଳିତା, ହେଳାଲୀଳାୟିତା ରମ୍ୟା
ଶୋଭାଙ୍ଗୀ ରୂପସୀ ସମ ପେସ୍ତ,—ପୁରଶ୍ରେଷ୍ଠା,
ପ୍ରସାରିତା ସମତଳେ ଦିଗ୍‌ବଳୟଯାଏଁ
ସୁସଜ୍ଜିତା ଅଗଣିତ-ସୌଧ-ପୁଷ୍ପମାଳେ ।
ଦାନିଉବ୍ ଦୁଇ କୂଳେ, ତରୁ-ବୀଥି-ତଳେ
ଦଳେ ଦଳେ ଚାଲିଥାନ୍ତି ମୋହିନୀ-ନୟନା,

---

୧. ହଙ୍ଗେରୀର ରାଜଧାନୀ ବୁଦାପେସ୍ତ ପ୍ରକୃତରେ ଦୁଇଟି ସହର । ଦାନିଉବ୍ ନଦୀର ଦୁଇ କୂଳରେ 'ବୁଦା', 'ପେସ୍ତ' ନାମକ ଦୁଇଟି ସହରକୁ ଏକତ୍ରରେ କୁହାଯାଏ ବୁଦାପେସ୍ତ ।

କୃଷ୍ଣକେଶୀ, ଶୁଭାଙ୍ଗିନୀ ସୁନ୍ଦରୀଏ ସଦା,—
ପାଶ୍ଚାତ୍ତ୍ୟ-ୟୁରୋପ ଦେହେ ଏକ ବିନ୍ଦୁ ପ୍ରାଚ୍ୟ—
ଆର୍ଯ୍ୟ, ସ୍ଲାଭ, କେଲ୍‌ଟ ରକ୍ତେ ପ୍ରାଚ୍ୟର ସକଳ
ମୋହନ ମାଧୁର୍ଯ୍ୟ ଘେନି ଶରୀର ମନର,
ମଜିଆର[୨] ଜାତିର ସେ ବିଚିତ୍ର ପ୍ରକାଶ ।
ପ୍ରାଚ୍ୟର ଉତ୍ତପ୍ତ ରକ୍ତଗୁଣେ ନରନାରୀ
ବର୍ଣ୍ଣ-ଗନ୍ଧ-ଲୋଭାତୁର, ନୃତ୍ୟ-ସଂଗୀତରେ
ଚିର ମତ୍ତ, ୟୁରୋପର ସହରେ ସହରେ
ଚିତ୍ତବିନୋଦନ ପାଇଁ ପାନ-ନୃତ୍ୟଶାଳେ
ନିୟୋଜିତା ହଙ୍ଗେରୀର ରମ୍ୟାଙ୍ଗନାଦଳ
ସଂଧ୍ୟାଗମେ ବୁଦାପେଷ୍ଟ ଅୟୁତ ପ୍ରଦୀପେ
ହୁଏ ଯେବେ ଆଲୋକିତ, ନୀଳ ଦାନିଉବ୍
ହୋଇଉଠେ ସ୍ୱର୍ଣ୍ଣ-ସ୍ରୋତା, ଯୁଗ୍ମ ନଗରୀର
ଅଗଣିତ ବିଦ୍ୟୁତ୍-ଦୀପ ବକ୍ଷେ ପ୍ରତିବିମ୍ବି ।
ଦୁଇ କୂଳେ ତା'ର କାଫେ[୩], ନୃତ୍ୟ-ପଣ୍ୟାଗାରେ
ପଥେ ପଥେ, ଉପବନେ, ଶତ କୁଞ୍ଜ ତଳେ,
ଦାନିଉବ୍ ନୀଳ ବକ୍ଷେ ସହସ୍ର ନୌକାରେ,
ଅଗଣିତ ସ୍ଫୁଟପଦ୍ମ ବିଞ୍ଚିଦେଲା ପରି
ସଞ୍ଚରନ୍ତି ୟୁରୋପର ଶ୍ରେଷ୍ଠ ସୁନ୍ଦରୀଏ
ବୁଦାପେଷ୍ଟେ ଦେଇ ପରୀରାଜ୍ୟର କଳ୍ପନା ।
ଉଷ୍ଣରକ୍ତ, ଜୀବନର ଭୋଗ-ଉପାସକ,
ଲଳିତ, ମହତ ମଜିଆର ସଭ୍ୟତାର
ସୁପ୍ରକାଶ ପୁଂଜୀଭୂତ ପ୍ରତୀକ ପରାୟେ,
ୟୁରୋପର ବକ୍ଷ ପରେ, ଦାନିଉବ୍ କୂଳେ
ଉଭା ବୁଦାପେଷ୍ଟ, ଶ୍ରେଷ୍ଠା ସୁନ୍ଦରୀ ନଗରୀ ।

---

୨. ହଙ୍ଗେରୀର ଅଧିବାସୀମାନେ ୟୁରୋପୀୟ ନୁହନ୍ତି । ଏମାନେ ମଜିଆର ନାମକ ଏକ ପ୍ରାଚ୍ୟ ଜାତି । ଏଥିପାଇଁ ୟୁରୋପର କେନ୍ଦ୍ରସ୍ଥାନରେ ଏଇ ଦାନିଉବ୍ ଉପତ୍ୟକାରେ ପ୍ରାଚ୍ୟର ସମସ୍ତ ଗୁଣ-ଦୋଷ ନେଇ ଏଇ ହଙ୍ଗେରୀୟ ଜାତି ପ୍ରତିଷ୍ଠିତ ।

୩. କାଫେ— ଫରାସୀ ଶବ୍ଦ-କଫିପାନଗୃହ ବା ହୋଟେଲକୁ ବୁଝାଏ ।

ପେସ୍ତା ପାଶେ, ଦାନିଉବ ପୂର୍ବ ତଟେ ପୁଣି
ରସିକଙ୍କ ପ୍ରିୟ ପୀଠ ମାର୍ଗାରେଟ୍ ଦ୍ୱୀପ,
ଦାନିଉବ୍ ବକ୍ଷପରେ ପଦକ ପରାଏ
ବିରାଜିତ, ସୁରଚିତ ପ୍ରମୋଦ-ଉଦ୍ୟାନେ,
ବର୍ଣ୍ଣମୟ, ଗନ୍ଧମୟ, ସୁନ୍ଦର, ଶୀତଳ ।
ସେହି ଦ୍ୱୀପେ ଏକ ପାର୍କ[୪] ନିରଜନ କୋଣେ
ଏକ ସାୟଂକାଳେ, ଯେବେ ସର୍ବ ବୁଦାପେସ୍ତ
ବସନ୍ତର ଆଦ୍ୟାଗମେ ଉନ୍ମତ୍ତ, ବିଧୁର
ଗୀତେ, ନୃତ୍ୟେ, ପାନେ, ଭୋଜେ, ବିବିଧ ମଉଜେ
ଦୁଇ ବଂଧୁ, ନିରାସକ୍ତ ବାହ୍ୟ ସେ ସମ୍ଭାରେ,
ହେଉଥିଲେ ଧୀରକଣ୍ଠେ କଥୋପକଥନ ।
ପରସ୍ପର ସ୍କନ୍ଧେ ରଖି କର ଅନ୍ୟୋନ୍ୟର
ଏକ କହେ— ''ସେପିଲକୋ, ସମଗ୍ର ରୁଷରେ,
ଇଉକ୍ରେନେ, ମଙ୍ଗୋଲିୟେ, ଉଜ୍ବେକିସ୍ଥାନେ,
ପୁଣି ଏହି ଦେବଚିତ୍ତହାରୀ ମଜିଆର—
ଶ୍ରେଷ୍ଠ ସୁନ୍ଦରୀଙ୍କ ଏହି ପୀଠ ହଙ୍ଗେରୀରେ,
କାହିଁ ତମେ ନ ପାଇଲ ମାନସହାରିଣୀ,
ପାଇଲ କାହିଁ ସେ ଯାଇ ମୌସୁମୀ-ବ୍ୟାକୁଳ
ଗ୍ରୀଷ୍ମ-ଦଗ୍ଧ, ଧୂଳିମୟ, ମଶକ-ମକ୍ଷିକା-
ବିସୂଚିକା-ମାଲେରିଆ-କୋବ୍ରା—[୫] ରଙ୍ଗମଞ୍ଚ
ଇଣ୍ଡିଆର କର୍ଦମାକ୍ତ ଧାନବିଲେ କେଉଁ
ଲବଣ ହ୍ରଦର ତଟେ । ବିଚିତ୍ର ଯେ ଏହା,—
'ପ୍ରେମ ଅନ୍ଧ' ଏହାହିଁ ଯେ କରିଲ ପ୍ରମାଣ !''

ଦୀର୍ଘଶ୍ୱାସ ଫେଇ ଧୀରେ, ଦୃଷ୍ଟୀ ରହି କ୍ଷଣେ
ଉତ୍ତରଇ ସେପିଲକୋ ଅନୁଚ୍ଚ କଣ୍ଠରେ,
ଛୋଟ ଛୋଟ ବାକ୍ୟାଂଶରେ— ''ବଂଧୁ, ମାଲିଟର୍,
ଅନ୍ଧ ହେବ ପ୍ରେମ କିପାଁ ? ପ୍ରେମ ଚକ୍ଷୁଷ୍ମାନ୍ !
ଯେ ପ୍ରେମ ଆମ୍ଭର ଅଟେ ନିବିଡ଼ ସଂଧାନ,

---

୪. ପାର୍କ- ଇଂରାଜୀ ଶବ୍ଦ; ଅର୍ଥ ନଗରୋଦ୍ୟାନ ।

୫ କୋବ୍ରା-ଇଂରାଜୀ ଶବ୍ଦ, ଅର୍ଥ ନାଗ ସାପ । ବିଦେଶରେ ଭାରତବର୍ଷକୁ ଲୋକେ ନାଗବହୁଳ ଦେଶ ଭାବରେହିଁ କଳ୍ପନା କରିଥାନ୍ତି ।

ଅନ୍ୱେଷଣ ହୁଏ ତା'ର, ତୃତୀୟ ଚକ୍ଷୁର
ଅଦୃଶ୍ୟ ରହସ୍ୟାଲୋକେ; ପ୍ରକୃତ ପ୍ରଣୟ
ଦିବ୍ୟ-ଚକ୍ଷୁ, ଜ୍ୟୋତିର୍ମୟ, ରହସ୍ୟ-ଆବୃତ;
ଇତରେହିଁ ଅନ୍ଧ ବୋଲି ବୋଲିଥାନ୍ତି ତାକୁ ।
ପ୍ରକୃତିର ବଦାନ୍ୟତା ପୁଣି ଏ ସୃଷ୍ଟିରେ
ଭୌଗୋଳିକ ସୀମାରେଖା ମାନେ ନାହିଁ ବଂଧୁ !
କଠୋର ତୁନ୍ଦ୍ରାର ହିମେ, ଅବା ସାହାରାର
ଉତପ୍ତ ଜୀବନହୀନ ବାଲୁକା ପ୍ରସାରେ
ଦାନ ତା'ର ଫୁଟିଉଠେ ନାନା ପଦ୍ଧତିରେ;
ପ୍ରକୃତି ସର୍ବତ୍ର ରମ୍ୟ ଆପଣା ରୀତିରେ ।
ଘୋର ଅରଣ୍ୟରେ ଯହିଁ ମନୁଷ୍ୟ ପ୍ରବେଶ
ଘଟି ନାହିଁ ସୃଷ୍ଟିକାଳୁ, ତହିଁ ପୁଷ୍ପେ, ପତ୍ରେ
ବର୍ଣ୍ଣେ, ଗନ୍ଧେ ପ୍ରସାଧନ-ସଜ୍ଜିତା-ସୁନ୍ଦରୀ
ସମ ବିରାଜିତା ନିତ୍ୟ ପ୍ରକୃତି-ନାୟିକା;—
କେଉଁ ଭାଗ୍ୟବାନ୍ ତୁଷ୍ଟି ପାଇଁ କେ କି ଜାଣେ ?
ମନୁଷ୍ୟର ଇତିହାସେ, ସର୍ବ ଦେଶେ, କାଳେ
ପରିଚିତ ଗଳ୍ପ ଏଇ,—ପ୍ରାସାଦେ, ନଗରେ
ଅଲଭ୍ୟ, ଅଦୃଷ୍ଟ ଯେଉଁ ନାରୀରୂପ, ରାଜା
ଆକସ୍ମିକେ ଭେଟି ତାହା ବନପଥେ, ଅବା
କେଉଁ ଗ୍ରାମ କୂପତଟେ, ତାର ପଦପ୍ରାନ୍ତେ
ରାଜ୍ୟ, ଧନ, ଚିତ୍ତ, ଯଶ ଭେଟି, ଅଭିନନ୍ଦି
ବସାଇଲେ ସିଂହାସନ ପାଶେ ରାଣୀରୂପେ ।
ଜନନୀ ପ୍ରକୃତି ପରି, ପ୍ରକୃତି-ପ୍ରସୂତ
ରୂପହିଁ ରହସ୍ୟମୟ,କାହିଁ ସେ ଫୁଟାଏ,
ନିଜରେ, ନିଜେହିଁ ଜାଣେ ନିଜର ନିୟମ,
ଚକ୍ଷୁ, କର୍ଣ୍ଣ, ନାସିକାରେ ନାହିଁ ଥାଏ ପୁଣି,
ରୂପ, ବଂଧୁ;-ବିରାଜିତ ତାହା ସର୍ବାଙ୍ଗେଁ,—
ରହସ୍ୟହିଁ ସୁଷମାର ଶ୍ରେଷ୍ଠ ଉପାଦାନ ।
ଭାରତର ହ୍ରଦକୂଳେ ରୂପ ମୁଁ ଭେଟିନି,
ଭେଟିଲି ପ୍ରଥମ କରି ରୂପର ରହସ୍ୟ ।
ମେରିଆର ନୀଳ ନେତ୍ର-ଯୁଗ୍ମେ, ମାଲିଟର;
ଦେଖିନା କି ତମେ, ସେହି ଶାଶ୍ୱତ ରହସ୍ୟ ?

ଉତ୍ତରଇ ମାଲିଟର,—''ରହସ୍ୟ, ସୌନ୍ଦର୍ଯ୍ୟ,
'ଚିରନ୍ତନୀ ନାରୀ' ଆଉ 'ଆତ୍ମିକ ପ୍ରଣୟ',
ଏସବୁ ମୋ ବିଚାରର ବହୁ ଦୂରେ ବଂଧୁ,
ସେସବୁ ବୁଝନ୍ତି ଖାଲି କବି, ଚିତ୍ରକରେ ।
ମେରିଆକୁ ଚାହେ ମୁହିଁ ଜୀବନ-ସଂଗିନୀ
କରିବାରେ, କେବଳହିଁ ନିତି-ଜୀବନର
ଛୋଟ ଛୋଟ ପ୍ରୟୋଜନେ ହେବାକୁ ସହାୟ,
ଯାହା କି ସମ୍ଭବେ ମାତ୍ର ନାରୀ-କର ଦେଇ ।
ନିବିଡ଼ ବାସ୍ତବ ଏହି ଆୟୋଜନ ମାତ୍ର
ମୋର ପ୍ରଣୟର ଯାହା କିଛି ପ୍ରହେଳିକା,
ସ୍ଥୂଳ ମାଲିଟର କାହୁଁ ବୁଝିବ ଆତ୍ମାର-
ଆଲୋକ-ପିୟାସୀ ସେପିଲକୋ ଅନୁଭୂତି ?''

''କିନ୍ତୁ ବଂଧୁ''- ପୁଣି କହେ ମୃଦୁମନ୍ଦଭାଷୀ
ସେପିଲକୋ—''କେବଳହିଁ ବାସ୍ତବ ଯୋଗାଡ଼େ
ତମେ ଯେ ରହିଲ ଖାଲି ଜନ୍ତୁର ସ୍ତରରେ;
ବୁଝୁଛ ତା ମାଲିଟର ? ନର କି କେବଳ
ପ୍ରାଣୀ ହେବ, ଈଶ୍ୱରର ପ୍ରତିମୂର୍ତ୍ତି ବହି,
ଏଇ ବୁଦ୍ଧି,— ରୂପ-ରସ-ଗନ୍ଧ ଭୋଗିବାକୁ
ଏ ଧରାର, ବହି ଏଇ ଇନ୍ଦ୍ରିୟପଟଳ,
ପୁଣି ସର୍ବୋପରି ନିବିଡ଼ରେ ଭୋଗିବାକୁ
ସୁଖ, ଶୋକ, ହାସ୍ୟ, ଅଶ୍ରୁ, ଆନନ୍ଦ, ମାଧୁର୍ଯ୍ୟ,
ଦେହତଳେ ବହି ଦେହମୟ ଆତ୍ମା ଏକ ?
ଏସବୁ କି ମନୁଷ୍ୟରେ ଦେଇଥିଲେ ସ୍ରଷ୍ଟା
କେବଳହିଁ ରହିବାକୁ ଜନ୍ତୁ ବା ଉଦ୍ଭିଦ ?
ସ୍ଥୂଳରୁ ସୂକ୍ଷ୍ମତା ଆଡ଼େ, ନିମ୍ନରୁ ଆକାଶେ,
ମୃତ୍ତିକାରୁ ଅନ୍ତରୀକ୍ଷେ, ସ୍ୱର୍ଗେ ପୃଥିବୀରୁ,
କ୍ରମ-ଉର୍ଦ୍ଧ୍ୱ-ଗତି ପାଇଁ ମନୁଷ୍ୟ ଚିତ୍ତର
ଏଇ ସବୁ ଉପାଦାନ, ଉଦ୍ଦିଷ୍ଟ କି ନୁହେ,
—ଉପାଦାନ, ସ୍ରଷ୍ଟା ଯାହା ନର ବ୍ୟତିରେକେ,
ଦେଇ ନାହିଁ ପୃଥିବୀର ଅନ୍ୟ କେଉଁ ଜୀବେ ?''

ଉତ୍ତରଇ ମାଲିଟର,—"ପ୍ରାଚ୍ୟ ଦେଶେ ବୁଲି,
ପ୍ରାଚ୍ୟ ବିଦ୍ୟା ଅନୁଶୀଳି, ତମେ ସେପିଲକୋ,
ହୋଇଲଣି ଅପଦାର୍ଥ ପ୍ରାଚ୍ୟ ଜୀବ ଏକ—
ନିଶ୍ୱାସରୋଧକ, ଆଖିବୁଜା ଜଟାଧାରୀ,
ସଂସାରକୁ-ଭୟ-କରି-ପଳାତକ ସେହି
ଗୁହାବାସୀ ଆତ୍ମମୁକ୍ତିକାମୀ ହେୟ ଯୋଗୀ ।
ସମଗ୍ର ପୃଥିବୀ ଆଜି ଆଲୋକିତ ଯେଉଁ
ପ୍ରତୀଚ୍ୟର ଜ୍ଞାନେ, ଦାନେ, ତା'-ବାସ୍ତବ-ଧର୍ମୀ,
ଜୀବନ-ଦର୍ଶନ ତେଜି, ତମେ ଚଳିଲଣି
ସେହି ଅବାସ୍ତବ, ଅନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼େ
ସେହି ପ୍ରତ୍ନତତ୍ତ୍ୱ-ଦେଶ-ଅତୀନ୍ଦ୍ରିୟ ଲକ୍ଷ୍ୟେ ।"

"ପ୍ରତୀଚ୍ୟର ଦାନ ବଂଧୁ"- କହେ ସେପିଲକୋ,
"ଭୁଲ ନାହିଁ । ପରେ ପରେ ଧରା-ଧ୍ୱଂସକାରୀ
ବିଶ୍ୱଯୁଦ୍ଧ, ଧରାମୟ ନିବିଡ଼ ଅଶାନ୍ତି,
ସତ୍ୟରେ ନିୟତ ହତ୍ୟା, ନ୍ୟାୟରେ କଏଦି.
ପତି-ପତ୍ନୀ-ପୁତ୍ର-କନ୍ୟା ମଧୁର ସମ୍ବନ୍ଧ
ଗୋଟି ଗୋଟି ସ୍ୱାର୍ଥ-କେନ୍ଦ୍ରୀ-ଦାବିରେ ହେବାର
କଳୁଷିତ, ନିଜ ନିଜ ମାର୍ଗେ ଯିବା ସର୍ବେ,
ଠିକ୍ ସେହି ଜଙ୍ଗଲର ପ୍ରାଣୀବର୍ଗ ପରି,
କେବଳହିଁ ନିଜ ନିଜ ଭୋଗ ଅନ୍ୱେଷଣେ;
ଏଇ ତ ତମର, ବଂଧୁ, ୟୁରୋପ-ସଭ୍ୟତା ?
ଦେଖିଛି ନେତ୍ରରେ ଯାହା, ଅସତ୍ୟ ବୋଲି ତା'
କେମନ୍ତେ କହିବି ମୁହିଁ ? ଭାରତର ସେହି
ହ୍ରଦତଟେ କ୍ଷୁଦ୍ର ଏକ ତୋଟା-ଘେରା ଗ୍ରାମେ,
ଦରିଦ୍ର କୁଟୀର-ପୁଂଜେ ନର-ପରିବାରେ
ଯେ ସୁଖ, ଯେ ପ୍ରାଣ-ଭୋଗ, ମଧୁ, ଅନାବିଳ,
ଯେ ଗୋଷ୍ଠୀ-ଜୀବନ-ସୁଖ,—ଆପାତ-ଝଲକ
ପ୍ରତୀଚ୍ୟର ଶିଳା-ଲୌହ-କଂକ୍ରିଟର ଏହି
ବିରାଟ, ବିଶାଳ ସ୍ତୂପ, ସହର ଯା ନାମ,
କାହିଁ ତହିଁ ଦେଖିବାକୁ ପାଇବ ହେ ବଂଧୁ ?

ବାହାରହିଁ ନୁହେ ସବୁ, ଜାଣ ମାଲିଟର,
ଶରୀରର ପ୍ରୟୋଜନ, ନିତ୍ୟ ଚଳମାନ,
ସମାଜର କ୍ଷଣ କ୍ଷଣ ପରିବର୍ତ୍ତୟନ୍ତି
ଦାବି ଓ ଚାହିଦା ଯେତେ, ସେହିହିଁ ଜୀବନ
ନୋହିପାରେ; ନୁହେ ନର-ନିଖିଳ-ଚରିତ୍ର ।
ଦୃଶ୍ୟ ଆରପଟେ ସ୍ଥିତ ବିରାଟ ଅଦୃଶ୍ୟ
ଭୋଗକ୍ଲାନ୍ତ ଦେହ, ଭୋଗ ନାହିଁ ଚାହି ଆଉ,
ଖୋଜଇ ଅଜ୍ଞାତ କିଛି । ଜ୍ଞାତ ଓ ପ୍ରତ୍ୟକ୍ଷ
ଏଇ ଧରା, ଏଇ ରାଜ୍ୟ, ଏଇ ଯେ ଜୀବନ,
ଦିନେ ଯାକୁ ପରିତ୍ୟାଗି ଦୂରେ କେଉଁ ଦୂରେ
ତମକୁ ଯିବାକୁ ହେବ,—କାହିଁ ଯିବ ପୁଣି
କେ ନ ଜାଣେ, ତମେ ଆଉ ନ ଫେରିବ ଏଥି ।
ତେଣୁ ବଂଧୁ, ପ୍ରତ୍ୟକ୍ଷ ବା ଚାକ୍ଷୁଷହିଁ ସବୁ
ନୁହେଁ ଏହି ଜୀବନର ସମଗ୍ର ତାତ୍‌ପର୍ଯ୍ୟ ।''

''ହେଲା ଅବା'', ଉତ୍ତରଇ ପୁଣି ମାଲିଟର,
''ପ୍ରଣୟ-ରହସ୍ୟ ଖାଲି, ଜୀବନ-ରହସ୍ୟ,
ଚାକ୍ଷୁଷ ଏ ଧରା ପୁଣି ଆବୃତ ରହସ୍ୟେ,
ପ୍ରତ୍ୟକ୍ଷ କିଛିହିଁ ନୁହେଁ, ଅପ୍ରତ୍ୟକ୍ଷ ମୁଖ୍ୟ
ମାନିଲି ମୁଁ;—ମାନିବାରେ କିବା ଲାଭ , ବଂଧୁ ?
ଦେହବତୀ, ବାସ୍ତବିନୀ ମେରିଆରେ ମୁହିଁ
ପାଇପାରେ ସାଥୀରୂପେ ଦୂରେ ବା ନିକଟେ ।
ତମର ତ ବଂଧୁ, ତିଳେ ନାହିଁ ସମ୍ଭାବନା
ମିତ୍ରାକୁ କରିବ କେବେ ଜୀବନ-ସଂଗିନୀ !
ତେବେ କିପାଁ ଏ ଭାବନା ? ଏ ଦର୍ଶନ-ଚର୍ଚ୍ଚା ?
ଅଲଭ୍ୟ ଯା' ତାହା ପାଇଁ ବିଳାପ କିପାଇଁ ?
କି ଲାଭ ତା'ର ବା କରି ନିତ୍ୟ ଆଲୋଚନା ?''

ଧୀରେ ନମ୍ରେ ସେପିଲକୋ କହଇ ବଂଧୁରେ—
''ସେଥିପାଇଁ ତୁମକୁ ମୁଁ ଆଣିଛି ଏ ସ୍ଥଳେ,
ନିଭୃତ ଏ ଦ୍ୱୀପକୋଣେ ନିଭୃତ ପ୍ରାଣର
ଶେଷ କ୍ଷୀଣ ଆଶା-ଅନୁରୋଧ ଯିବି ଦେଇ

ଏପରି ବଂଧୁର ହାତେ, ଯେ କି ଦତ୍ତ-ସତ୍ୟ
ରଖିପାରେ ପ୍ରାଣଦେଇ''—

'' କି ସବୁ କହୁଛ ?
''ଶେଷ ଆଶା'', ''ଶେଷ କଥା'', ଏସବୁ କିସ ହେ ?
କଥା କହ ବୀର୍ଯ୍ୟବନ୍ତ ପୁରୁଷ ପରିରେ,
ତମେ କି ସାମାନ୍ୟ ଏକ ପ୍ରାଚ୍ୟ ନାରୀ ପାଇଁ
ଭାବୁଛ କରିବ ହତ୍ୟା ନିଜର ପ୍ରତିଭା,
ଜୀବନର ସବୁ ଯଶ, ଉନ୍ନତି, ଆଶୟ ?''

''ଆଦୌ ନୁହେଁ ତା ବଂଧୁ, ଶୁଣ ମାଲିଟର,
ମିତ୍ରାର ପ୍ରଣୟ ଲଭି କେଉଁ ହତଭାଗ୍ୟ
କରିପାରେ, ପୁଣି ଘୃଣ୍ୟ କଳୁଷିତ କିଛି ?
ବିଶୁଦ୍ଧ ପ୍ରଣୟଠାରୁ ପୁରୁଷ-ଜୀବନେ
ମହତ୍ତର ନାହିଁ ଅନ୍ୟ ପାବନ ପ୍ରେରଣା ।
ସେହି ସେ ପ୍ରଣୟ ସ୍ପର୍ଶେ, ବଂଧୁ ମାଲିଟର,
ନୁହେଁ ମୁହିଁ ଆଉ ସେହି ପୂର୍ବ ସେପିଲକୋ,—
ଦେଶ-କାଳ-ଗୋଷ୍ଠୀ-ମତ-ସଂକୀର୍ଣ୍ଣ ରେଖାରେ
ସୀମିତ ସାମାନ୍ୟ ଏକ ନାଗରିକ ମାତ୍ର ।
ପ୍ରଣୟିନୀ ବିଶ୍ୱମିତ୍ରା ପରିରେ ମୁଁ ଏବେ
ବିଶ୍ୱ-ନାଗରିକ ବଂଧୁ, ଉଦାର ମନୁଷ୍ୟ ।
ଦେଶ, କାଳ ନାହିଁ ମୋର, ନାହିଁ ଦଳ,ଗୋଷ୍ଠୀ
ମୁକ୍ତ ଆଜି, ବୀର ଆଜି, ଅକୁତୋଭୟ ମୁଁ ।
ରୁଷିୟାନ ହୋଇ ମଧ୍ୟ ହଙ୍ଗେରୀର ପାଇଁ,
ନ୍ୟାୟ ପାଇଁ, ଦେଇପାରେ ଅକୁଣ୍ଠିତେ ପ୍ରାଣ,
ତୁମ ପରି...........''

ମାଲିଟର ଆସନ ତିଆଗି
ହଠାତ୍ ହୋଇଲା ଉଭା ସେପିଲକୋ ଆଗେ,
ଅଭୀତ ନୟନେ ସେପିଲକୋରେ ଅନାଇ
କହିଲା ସେ ହାତ ରଖି ପକେଟସ୍ଥ ତା'ର
ରିଭଲ୍‌ଭରେ—

''ସତ୍ୟ କହ, ନୁହ ଗୁପ୍ତଚର ?
ନୁହେ ଏହା କୂଟବାଣୀ ? ଏ ସବୁ ସମସ୍ତ
ନୁହେଁ ତ ଛଳନା ଖାଲି ନେବାକୁ ମୋଠାରୁ
ବିପ୍ଳବର ସତ୍ୟତତ୍ତ୍ୱ ? ସତ୍ୟ କୁହ ମତେ''—

ସେପିଲକୋ ମଧ ଉଠି,ବଂଧୁ ଦୁଇ ବାହୁ
ଧରି ସ୍ନେହେ ଦୁଇ କରେ, କହଇ ବଂଧୁରେ—
''କହି ମୁଁ ଆସିଛି ସତ୍ୟ, ଏକ ବିନ୍ଦୁ ମିଥ୍ୟା
କହିନି ତୁମରେ ବଂଧୁ, ଏଯାବତ ମୁହିଁ ।
ମିଥ୍ୟାବାଦୀ, ଗୁପ୍ତଚର, ଛଦ୍ମ, ଷଡ଼ଯନ୍ତ୍ରୀ
ନାହିଁ କରିପାରେ ଆଶା, ଲଭିବ ପ୍ରଣୟ
ମିତ୍ରା ପରି ତରୁଣୀର । ଜାଣ ବଂଧୁ ମମ
ଯେ ଆତ୍ମା ଦେଇଛି ପ୍ରେମ ନିର୍ମଳ, ନିବିଡ଼,
ଅଲଭ୍ୟ, ଦୁର୍ଲଭ ସେହି ବାଳିକାର ପଦେ,
ସେହିହିଁ ଦେଇଛି ତା'ର ନିର୍ମଳ ବଂଧୁତା
ବିଦେଶୀ ତୁମରେ, ଛାଡ଼ି ଦେଶୀ ଜନେ ତା'ର ।
ତୁମଠାରେ ଦେଖିଛି ମୁଁ ଉଦାର ନରତ୍ୱ,
ଦେଶସୀମାତୀତ ନର-ଆତ୍ମାର ସୌନ୍ଦର୍ଯ୍ୟ ।
କମ୍ୟୁନିଷ୍ଟି-ରଥ-ଚକ୍ରତଳେ ହଙ୍ଗେରୀର
ନିର୍ଯାତନା ମତେ ବଂଧୁ ନୁହଇ ଅଜ୍ଞାତ ।
ବିପ୍ଳବର କୁହୁଳିତ ଅଗ୍ନିର ଉତ୍ତାପ
ମତେ ବି ଅଜଣା ନୁହେ । ହେଲେ ଆବଶ୍ୟକ
ତମେ ମତେ ଦେଖିପାର ତମ ସ୍କନ୍ଧାବାରେ ।
ନୁହେଁ ମୁହିଁ ଗୁପ୍ତଚର—ଏଇ ନିଅ ତାର
ପ୍ରକୃଷ୍ଟ ପ୍ରମାଣ''—

କହି ସେପିଲକୋ ତା'ର
ପକେଟରୁ ଦେଲା କାଢ଼ି ରିଭଲ୍‌ଭର ଏକ
ବଢାଇ ବଂଧୁର ହସ୍ତେ । ଯୋଡ଼ହସ୍ତେ ପୁଣି
କହିଲା ସସ୍ମିତେ—

''ତମେ ଏହିଠାରେ ଅବା
ହତ୍ୟା ମତେ କରିପାର । କିନ୍ତୁ ଆଶା କରେ,

ମରଣ ପୂର୍ବରୁ ମୋର ଏଇ ଅନୁରୋଧ
ରଖିବ—, ମିତ୍ରାକୁ ମୋର ଜଣାଇବ ପତ୍ରେ
ମରିଛି ପ୍ରଣୟୀ ତା'ର ସ୍ମୃତି ଘେନି ତା'ର
ଚିତ୍ତର ନିଭୃତ ସ୍ତରେ, ମରିଛି ସେ ପୁଣି
ବୀର ପରି ନ୍ୟାୟ ପାଇଁ,ମନୁଷ୍ୟତା ପାଇଁ ।''

## [ ଅଷ୍ଟମ ସର୍ଗ ]

ଏକ ବର୍ଷ ପରେ ପୁଣି ସେହି ସେ ହେମନ୍ତ
ସମାଗତ ଧରଣୀରେ । ପାଚିଲା ଧାନର
ସୁବର୍ଣ୍ଣ ଉତ୍ତରୀ ବକ୍ଷେ ଦୋଳାଇ ଚଞ୍ଚଳ,
ଶତବର୍ଗ-ସ୍ୱର୍ଣ୍ଣସ୍ମିତେ ଶୋଭାଇ ବଦନ,
ମାର୍ଗଶୀର୍ଷ, ଶରତ୍‌ର ଶୁଷ୍କୀକୃତ ମାର୍ଗେ
ଅଚଂଚଳ ପଦନ୍ୟାସେ ଉପସ୍ଥିତ,କ୍ଷେତ୍ରେ ।
ବାରିଧି-ଚିଲିକା-ଶୁଦ୍ଧ-ବାୟୁ-ନିସେବିତ-
ଚାରୁ-ଭୂମେ ବିସ୍ତାରିତ କରୁଣା-କଲୋନି,
ହୈମନ୍ତିକ ଧାନ୍ୟ ଯାଉଁ ଭରି ଘରେ ଘରେ
ବର୍ଷବ୍ୟାପୀ ଶ୍ରମ ଶେଷେ, ପାଳଇ ଉନ୍ମତ୍ତେ
ଶସ୍ୟୋତ୍ସବ,—ଆନନ୍ଦର ହିଲ୍ଲୋଳ ବୁହାଇ
ସମଗ୍ର ଅଞ୍ଚଳେ । ପାଖାପାଖି ଗ୍ରାମ ଯେତେ
ଶୂନ୍ୟ କରି, ସମବେତ, ଏକତ୍ର କେନ୍ଦ୍ରରେ,
ବାଳକ, ଯୁବକ, ବୃଦ୍ଧ, ଯୁବତୀ, କିଶୋରୀ ।
ଶବଳିତ ସାରା ଭୂମି ଇନ୍ଦ୍ରଧନୁ-ବର୍ଣ୍ଣେ
ନର-ନାରୀ-ବର୍ଣ୍ଣମୟ-ବସନ-ଭୂଷଣେ ।

ସେହି କେନ୍ଦ୍ରେ, ପାଖକରେ ବିଦ୍ୟାଳୟ ଯା'ର
ଆରପାଖେ କଲୋନିର ମୁଖ୍ୟ କର୍ମାଳୟ,
ଏପରି ଉନ୍ମୁକ୍ତ ଏକ ଉଦାର ପ୍ରାନ୍ତରେ,
ସମବେତ ଜନସଂଘ । ସର୍ବୋଚ୍ଚ ବିନ୍ଦୁରେ
ସେ ମୁକ୍ତ ଭୂମିର, ବସି ଦେଖନ୍ତି ଆସନେ
ମିତ୍ରା, ମାଲକମ, ମିସ୍ ବାଟସନ, ପୁଣି

ଯୋଗୀ ମହାନନ୍ଦ ସ୍ୱାମୀ, ଗୈରିକ-ଶୋଭନ ।
ବସି ସେ ଦେଖନ୍ତି କୁତୂହଳେ ଏହି ଗ୍ରାମେ
ଭାରତର ପଲ୍ଲୀଜନେ କେମନ୍ତେ ନିଜକୁ
ନିଜେଇ କରିବେ ଆଜି ଆପ୍ୟାୟିତ, ଶସ୍ୟ
ମାଟିରୁ କାଟିଲା ପରି , ଆନନ୍ଦ ବି ଏଇ
ମାଟିରୁ କିପରି ଏହି ନିର୍ବିଦ୍ୟ ଜନତା
ଆହରିବେ, ବିତରିବେ ବିନା ଧନେ ପୁଣି
ଆପଣାର ସମାଜରେ । ପୁରାଣ ସଂସ୍କୃତି
କିପରି ଏ ଦେଶେ ରହିଆସିଛି ଶାଶ୍ୱତ
କାଳ ଧରି,-ସ୍ୱୟଂଭୂତ, ସ୍ୱୟଂସମ୍ବର୍ଦ୍ଧିତ ।

ଏ ସମୟେ ଅଦୂରରେ ଶୁଣାଗଲା ଗୁରୁ—
ଗମ୍ଭୀର ନିର୍ଘୋଷ ଗ୍ରାମ୍ୟ-ବାଦ୍ୟ ଢୋଲକର,
ସେହି ବାଦ୍ୟତାଳେ ପୁଣି ପକାଇ ପାହୁଲ
ବିକ୍ରମ ଠାଣିରେ ଆସିବାର ଗଲା ଦେଖା
ପାଇକଙ୍କ ଦୁଇ ଦଳ, ଦୁଇ ଧାଡ଼ି ହୋଇ ।
ସମ୍ମୁଖରେ ଚାଲେ ତାଙ୍କ ଅଚଂଚଳ ପଦେ
ବୃଦ୍ଧ ଦଳପତି, ଏହି ଅଞ୍ଚଳ ଦଳାଇ,
ହସ୍ତେ ତାଙ୍କ ତରବାରି ବହୁ ପୁରୁଷର ।
ପାଇକଙ୍କ ଶ୍ରେଣୀ ଧୀରେ ଆସି ସେହି ସ୍ଥଳେ
ମିତ୍ରା, ତା'-ସାଥିଏ ଯହିଁ ଥିଲେ ସମାସୀନ,
ଦଳପତି ସଂକେତରେ ନ ଛାଡ଼ି ପାହୁଲ
ଦୁଇ ଶ୍ରେଣୀ ଦୁଇ ଦିଗେ ଗଲେ ଅପସରି ।
ଦଳପତି, ଖଣ୍ଡାମୁନେ ପରଶି ଅବନୀ,
ପରଶି ସ୍ୱଭାଲ ପୁଣି, ଦେଖାଇ ସମ୍ମାନ
କଲୋନିର ରାଣୀ-ସମା ସେ ବିଶ୍ୱମିତ୍ରାରେ,
ଖଣ୍ଡାମୁନ ଲଗାଇ ତା ଚରଣ ପ୍ରାନ୍ତରେ,
ବିପୁଳ ଉତ୍ସାହେ ମାରି କ୍ଷେପ ଦୁଇ ତିନି
ଛିଁଛାଡ଼ି ଢାଲ୍ୟମାନ ଅସି ଚତୁର୍ଦ୍ଦିଗେ
ଡେଇଁଲେ କୁହାଟ ମାରି ଚକ୍ର ଦେଇ ଦେଇ,
ଆହ୍ୱାନି ସେ ସମବେତ ଭେଣ୍ଡିଆ ପାଇକେ—

ଆସ, ଦିଅ ଯୁଦ୍ଧ ବୋଲି ଅ-ବାଣୀ ନିର୍ଦ୍ଦେଶେ ।
ବାମହସ୍ତେ ଦୃଢ଼େ ଧରି ଢାଲ ସୁପ୍ରାଚୀନ,
ଦକ୍ଷେ ଦ୍ରୁତ ତରବାରି ଘୂରାଇ ଘୂରାଇ
'ମଣିମା ' 'ମଣିମା' ଡାକି କୁହାଟେ କୁହାଟେ,
ଉନ୍ମତ୍ତ ବୃଷଭ ସମ ବୃଦ୍ଧ ଦଳପତି
ମୃତ୍ତିକା ମନ୍ଥନ କଲେ ସମଗ୍ର ସ୍ଥଳୀର,
ଊର୍ଦ୍ଧ୍ୱଶିଖ ନିଶ ତାଙ୍କ ହୋଇ ଟାଙ୍କୁରିତ,
ଦିଶେ ଯେହ୍ନେ ଅନ୍ତରର ତେଜ ପୁଞ୍ଜୀଭୂତ ।
ବୃଦ୍ଧର ସମରାହ୍ୱାନେ ହୋଇ ଅସମ୍ଭାଳ,
ଦଳାଇଙ୍କ ନିଜ ନାତି, ନିଜ ପ୍ରିୟ ଶିଷ୍ୟ
ଲମ୍ଫ ଦେଲା ପ୍ରାଙ୍ଗଣରେ, ପଟାବାଡ଼ି-ହସ୍ତେ
ତରୁଣ ଶାର୍ଦ୍ଦୂଳ ସମ । କଟିବସ୍ତ୍ର ତଳେ
ଥିଲା ତା'ର ଘାଘୁଡ଼ିର ମାଳ ହୋଇ ଗୁନ୍ଥା,
ପ୍ରତି ତାର ବୀର୍ଯ୍ୟଦୃପ୍ତ ପାହୁଲରେ ବାଜେ
ତାରୁଣ୍ୟର, ପୌରୁଷର ଜୟ-ବାଦ୍ୟ ଯେହ୍ନେ ।
କାଛି ପିନ୍ଧିଥିବା କଟିବସ୍ତ୍ର ଛଡ଼ା ତା'ର
ଅପଘନ ଥିଲା ନଗ୍ନ । ଚିକ୍‌କଣ, ଶ୍ୟାମଳ,
ସୁଗଠିତ, ସୁବର୍ଦ୍ଧିତ ସମାନୁପାତିକ
ବପୁ ତାର, ମନେହେବ, ଜୀବନ୍ତ ସେ କିବା
ଉତ୍ତମ ବିନ୍ଧାଣି-ଗଢ଼ା ମୁଗୁନିର ମୂର୍ତ୍ତି ।

ସମବେତ ଜନତାର ନରନାରୀ ହୃଦେ
ବିପୁଳ ଉତ୍ସାହ ଦେଖାଦେଲା ବର୍ତ୍ତମାନ
ନାତି-ପିତାମହର ଏ କୁତୂହଳୀ ଦ୍ୱନ୍ଦ୍ୱେ;
ଅଧିକ ଉତ୍ସାହେ ଦେଲା ଢୋଲିଆ ତା ବାଦ୍ୟେ
ଆଘାତ, କମ୍ପିଲା ବାଦ୍ୟନାଦେ ସେ ଭୂଖଣ୍ଡ;
ଠିଆଥିବା ପାଇକଙ୍କ ପଦ ଶତ ଶତ
ଥୟ ନାହିଁ ଧରେ ଆଉ । ଦ୍ୱନ୍ଦ୍ୱଯୁଦ୍ଧରତ
ଜେଜେ ଆଉ ନାତିଙ୍କର କର, ଚରଣର
କ୍ଷିପ୍ରତା, ଉଷ୍ଣତା ପୁଣି କେ ପାରିବ ବର୍ଣ୍ଣି ?
ଯୁଗ-ଯୁଗ ଧରି ଯା'ଙ୍କ ଶୋଣିତେ ଶୋଣିତେ
ଜଳିଆସିଅଛି ଭୀମ ସମର ପିପାସା,

ବର୍ଷକର ଏଇ ଏକ ଦିନେ, ଜନସଂଘ–
ସହସ୍ର ଚକ୍ଷୁର ତଳେ, ଏ ଯୁଦ୍ଧ-ପ୍ରାଙ୍ଗଣେ,
ସେ କି ଆଉ ମାନିପାରେ ପୈତୃକ ସମ୍ବନ୍ଧ ?
ଦୁଇ ହିଂସ୍ର, ପରସ୍ପର-ଶତ୍ରୁ-ଜୀବ ପରି
ନାତି-ପିତାମହେ ସମ୍ମୁଖୀନ ଅନ୍ୟୋନ୍ୟର
ହୋଇ କଲେ ଚେଷ୍ଟା ଅନ୍ୟେ କେହ୍ନେ ଆଘାତିବେ
ନିଜ-କର-ଶସ୍ତ୍ର-ମୁନେ, ନିର୍ମମ ପ୍ରହାରେ ।
ଛକାଛକି ରହି ଦୁହେଁ, ଆଡ଼ବାଁକେ ଚାହିଁ,
କୁହାଟେ ଆନର ମାଡ଼େ ପରିହାସି, କ୍ଷିପ୍ରେ
ଓଲଟାଇ ଦେଇ ପିଠି, ପୁଣି ସତର୍ଜନ
ଆକ୍ରମି ତା ବିରୋଧୀରେ, ଖଞ୍ଜା ଉଣ୍ଡି ଉଣ୍ଡି
ଠେଲନ୍ତି ସେ ଆକ୍ରମଣ । ଶସ୍ତ୍ରେ ଶସ୍ତ୍ର ବାଜେ,
ବୃଦ୍ଧର ଢାଲରେ ପଡ଼େ ତରୁଣ ହସ୍ତର
ନିଷ୍ଠୁର ଲାଠିର ମାଡ଼, ସେହି ଲାଠି ଘେନି
ବୃଦ୍ଧର ଅସିର ଧକ୍କା ନିବାରି କୌଶଳେ
ତରୁଣ ଆକ୍ରମେ ନିଜ ଜେଜେରେ ଓଲଟି ।
ଚକ୍ର ଖାଇ, ପଛେ ଘୁଞ୍ଚି, ଆଗେ ମାଡ଼ି ପୁଣି,
ଘୂରୁଘୂରି, ଛକାଛକେ ରଖି ଆନେ ଆନେ
ମଣ୍ଡଳିରେ, ପୁଣି ଦେଇ ଲମ୍ଫ ସ-କୁହାଟ
ଲାଗିଯିବା ପୁଣି ଯୁଦ୍ଧେ, ସେ ନାତି-ଜେଜେର
ଦେବତା-ଦର୍ଶନଯୋଗ୍ୟ ଘଟଣା ସେ ହେଲା,
ଉତ୍ସାହେ ମନ୍ଥନ କରି ବକ୍ଷ ଜନତାର ।

ଶେଷେ ନାତି କେଉଁ ଏକ ଦୁର୍ବଳ ମୁହୂର୍ତ୍ତେ
ଘର୍ମାକ୍ତ ଜେଜେରେ ତା'ର, ଦ୍ୱନ୍ଦ୍ୱ-ସଂଗ୍ରାମର
ସୂକ୍ଷ୍ମ ଏକ କୌଶଳରେ ନେଲା ତଡ଼ି ଆସ୍ତେ
ଖେଳା-ବେଢ଼ା ଆରପଟେ, ମିତ୍ରା, ତା'-ସାଥିଏ
ଯହିଁ ବସି ଦେଖୁଥିଲେ ଏ ଖେଳ, ନିର୍ବାକ ।
ମିତ୍ରା ବର୍ତ୍ତମାନ ଉଠି ଆସନରୁ ତା'ର
ଆଲଗି ଧଇଲା ହାତ ବୃଦ୍ଧା ଦଳାଇଙ୍କ,
ଅସି, ଢାଲ କାଢ଼ି ତାଙ୍କ ଆୟସ କରରୁ
ଲମ୍ବାଇଲା କଣ୍ଠେ ତାଙ୍କ ଗେଣ୍ଡୁ ଫୁଲମାଳା ।

ସମବେତ ଜନସଂଘ ଦେଲେ କରତାଳି,
ହୁଳହୁଳି ଧ୍ୱନି କଲେ ପୁରବାଳାଗଣ,
'ଜୟ ଦଳାଇଙ୍କ ଜୟ', ଧ୍ୱନି କଲେ ସର୍ବେ ।
ଦଳାଇଏ କିନ୍ତୁ ତାଙ୍କ କଣ୍ଠୁ ମାଳା କାଢ଼ି
ବିଜୟୀ ନାତିରେ ଦେଲେ, ଆଲିଙ୍ଗି ତାହାରେ
ଆପଣାର ଦୃଢ଼ ବକ୍ଷେ, ଚୁମ୍ବିଲେ ତା' ଭାଲ,
ଦୃପ୍ତ ଦୁଇ ନେତ୍ର ତାଙ୍କ ହେଲା ଅଶ୍ରୁସିକ୍ତ
ଗଭୀର ଆନନ୍ଦେ । ମିତ୍ରା, ତରୁଣ ବୀରର
ହସ୍ତ ଧରି, ଚନ୍ଦନର ପ୍ରଲେପ ଲେପିଲା
ସ୍ୱେଦସିକ୍ତ ତା କପାଳେ, ଗୌରବ-କବିତା ।
ପୁଣି ଜୟଧ୍ୱନି କଲେ ସମଗ୍ର ଜନତା,
ପୁଣି ହୁଳହୁଳି ଦେଲେ ପୁରବାଳାଗଣ
'ଜୟ ଦଳାଇଙ୍କ ଜୟ' ପୁଣି ଉଠେ ଧ୍ୱନି
ଗଗନ କମ୍ପିତ କରି ।

ତା' ପରେ ଆସିଲେ,
ଭେଣ୍ଡିଆଏ ଦୁଇ ଦୁଇ, ଦେଖାଇବା ପାଇଁ
ଦେହର ପରମ-ଶିକ୍ଷା । ଗୁରୁ ଆଖି-ତଳେ,
ଦିନ ଦିନ ଅଭ୍ୟାସରେ କିଶୋର-କୋମଳ-
ଦୁର୍ବଳ ଶରୀର ତାଙ୍କ ହୋଇଥିଲା ଗଢ଼ା
ବୀର୍ଯ୍ୟଶୀଳ ପୌରୁଷର ସୁନ୍ଦର ଭାସ୍କର୍ଯ୍ୟେ ।
ଶରୀରର ସେହି କାବ୍ୟ ଏକେ ଏକେ ଆସି
ନଗ୍ନ ଦେହେ, ମେଘମୁକ୍ତ ନୀଳ ନଭ ତଳେ,
ହେମନ୍ତର ଶ୍ୟାମ-ସ୍ୱର୍ଣ୍ଣ ମଧୁ ପରିବେଶେ
ଯୁବାଏ ମେଲାଇ ଗଲେ, ଛନ୍ଦି ପରସ୍ପରେ
କଣ୍ଠାଯୁଦ୍ଧେ, ମାରି ଚିରା, ମାରି ନହୁଣିଆ ।
ତାଙ୍କ ପରେ ଦେଲେ ଦେଖା କିଶୋର କିଶୋରୀ
ନାନା ଭଙ୍ଗେ ତନୁବନ୍ଧ ଦେଖାଇ ମିଳିତେ,
ଦେଖାଇଲେ ନମନୀୟ ତନୁର ମାଧୁର୍ଯ୍ୟ,
ଉପସ୍ଥିତ ପିତାମାତା, ଭାଇ-ଭଗିନୀଙ୍କ
ହୃଦୟେ ଜାଗ୍ରତ କରି ଗର୍ବ, କ୍ଷମଣୀୟ ।

ଶେଷେ ଶୂନ୍ୟ ଖେଳ-ବୃତ୍ତେ ପୁଣି ଦଳପତି
ଦଳାଇ କରିଲେ ବିଜେ । ନିର୍ବାକ ସଂକେତେ
ପାଇକେ ଆସିଲା ଚାଲି ଜନତା ମଧ୍ୟରୁ,
ଆସିଲା ତରୁଣ ନାତି । ବିନା ବାକ୍ୟବ୍ୟୟେ,
ପାଇକ ସେ ଚଢ଼ି କ୍ଷିପ୍ରେ ଦଳାଇଙ୍କ କାନ୍ଧେ
ସ୍ତମ୍ଭ ସମ ହେଲା ଉଭା । ଦଳାଇଙ୍କ ନାତି
ଉଠିଲା ପାଇକ କାନ୍ଧେ । ପାଇକ ସେ ପୁଣି
ଦଳାଇ ନାତିରେ ଟେକି ଉର୍ଦ୍ଧେ ଦକ୍ଷ-କର-
ପାପୁଲିରେ ଦଣ୍ଡ ପରି ରଖିଲା ଶୁଆଇ ।
ବୃଦ୍ଧ ଦଳପତି ଘେନି ଏହି ମହାଭାର
ଗୌରବରେ ସୁଖୀ ହାତୀ ପରି ଧୀରେ ଧୀରେ
ବୁଲି, ବୁଲି ଚଉଦିଗେ କଲେ ପା-ଚାରଣ,
ସମଗ୍ର ଜନତା ଦେଲା ତାଳି ଏକତ୍ରରେ ।
ଏକାଳେ ଉଦାର କଣ୍ଠେ ଦଳାଇର ନାତି—
ନବୀନ ତରୁଣ ସେ ତ,—କେଉଁ ତରୁଣୀକୁ
ଲକ୍ଷ୍ୟ କରି ଛାଡ଼ିଦେଲା ପ୍ରାଚୀନ କାବ୍ୟରୁ
ବଛା ଏକ ମଧୁ ଗୀତି ନିବିଡ଼ ପ୍ରେମର,
ଜନତାର ବକ୍ଷେ ବକ୍ଷେ ମଧୁ ବେଦନାର
ଗାଢ଼ ରେଖା ଟାଣିଦେଇ ବୀର ପୌରୁଷର
ନାରୀ ପଦେ ସେହି କାନ୍ତ ଆତ୍ମ-ନିବେଦନେ ।

ମାଲ୍‌କମ୍ ସେ ଇଂରେଜ କହଇ ମିତ୍ରାରେ
ମୁଗ୍ଧ କଣ୍ଠେ—''ଜାତି ମୋର ଶାସିଲା ଏ ଦେଶ
ଦୀର୍ଘ ଦୁଇ ଶତ ବର୍ଷ, କିନ୍ତୁ ପାରିଲାନି
ସ୍ପର୍ଶି ଏ ଜାତିର ମର୍ମ । ଆମେ ତମ ପରେ
ନିର୍ବିଚାରେ ନଦିଦେଇ ବୈଦେଶିକ ଧାରା
ଶିକ୍ଷାରେ, ଶାସନେ, ଗ୍ରାମ-ତନ୍ତ୍ରେ, ବିଚାରରେ,
ଅଜାଣତେ ଧ୍ୱଂସ ସାଧିଅଛୁଁ, ମୁଁ ଦେଖୁଛି,
ବହୁ ପୁରାତନ ଏକ ସୁଦୃଢ଼ ସଂସ୍କୃତି ।
ସଭ୍ୟମାନବର ପ୍ରାଣ ଖୋଜିଥାଏ ଯାହା
ସବୁ ଅଛି ଏହିଠାରେ । ବୀର୍ଯ୍ୟ ଓ କବିତା,
ସଂଘବଦ୍ଧ ବଞ୍ଚିବାର, ନୃତ୍ୟ ଆଉ ଗୀତ,

ଚିତ୍ର, ଶିଳ୍ପ, ସାହିତ୍ୟର ନିଜସ୍ୱ ଅର୍ଚ୍ଚନା ।
ଅଧିକ ଲଜ୍ଜାର କଥା, ପୁଣି ସେ ବିଦେଶୀ—
ଶାସନ-ମୋହ-ବିମୂଢ଼ ତମ ଦେଶ ଲୋକେ
ନ ବୁଝନ୍ତି, ଭାରତର ଅଦ୍ଭୁତ ପଲ୍ଲୀରେ
ଏବେ ବି ରହିଛି ବଂଚି ଯେ ସୂକ୍ଷ୍ମ ସଂସ୍କୃତି,
କୋଟ-ପ୍ୟାଣ୍ଟ୍-ଟାଇ ପିନ୍ଧି, ବିକୃତ ଇଂରାଜୀ
କହିବାର ଦମ୍ଭ ଘେନି ବିଚାରନ୍ତି ଥୋକେ
ଏଇ ତମ ଗ୍ରାମ୍ୟ ଜନତାରୁ ସେ ବାହାର,
ଅଧିକ ଉନ୍ନତତର, ଅଧିକ ସଂସ୍କୃତ,
ଗାନ୍ଧୀର ବାଣୀ ବି ମଧ ଅପାଂକ୍ତେୟ ଆଜି ।''

ଏହା କହୁଁ, ଆସିଗଲେ ଗ୍ରାମ-ଯାତ୍ରାଦଳ,
ଅଭିନୟ ଦେଖାଇବେ କର୍ତ୍ତିତ ଶସ୍ୟର
ଗୃହ-ପ୍ରବେଶର ଅଭିନନ୍ଦନ-ଉତ୍ସବ ।
ମାଳତୀ ନାନୀର ନପ୍ତ୍ରୀ ଗୌରୀ ମନୋହାରୀ
ଏଇ ବିବାହିତା ସେହି ଦିନ, ବିଶ୍ୱମିତ୍ରା—
ସମ୍ମୁଖରେ,ପୁଣି ତା'ର ଗ୍ରାମ-ସେବୀ ସ୍ୱାମୀ,
ଗୃହସ୍ଥ, ଗୃହିଣୀ ରୂପେ ଏଇ ଉତ୍ସବର
ନାୟକ, ନାୟିକା ହୋଇ ଦେଲେ ଦେଖା ଆସି ।
ସମବେତ କିଶୋରୀଙ୍କ କଣ୍ଠୁ ଏଇ କାଳେ
ଶୁଭିଲା ସ୍ୱାଗତ-ଗୀତି କର୍ତ୍ତିତ-ଧାନ୍ୟର ।

(ଗୀତ)

ଧନ ଆସ ଗୋ,
ଶିରୀ ଆସ ଗୋ,
ଶୁଭ ଆସ ଗୋ,
କୁଟୀରେ କୁଟୀରେ ଦୁଃଖ ନାଶ ଗୋ ।

ତବ ଆଗମନେ ହେବ ଘର ଉଜ୍ଜଳ,
ତମେ ଆମ ଗୃହ-ଦେବୀ, ଚିର କୁଶଳ,
ସକଳ ଦୁରିତ ନାଶେ
ତବ ହାସ ଗୋ,
ଧନ ଆସ ଗୋ !

ଆମେ ଆଣୁ ତୁମକୁ ମା' ବସୁଧା ଚିରି,
ତୁମେ ଆମ ଘର, ଦ୍ୱାର, ସକଳ ଶିରୀ,
ତୁମକୁ ଦେଖିଲେ ଭୂଲୁ
ସବୁ ପ୍ରାସ ଗୋ,
ଧନ ଆସ ଗୋ !
ଆସ ବିରାଜ ମା' ଆମ ଅୟୁତ ଘରେ,
କନକ-ବରଣା-ବଧୂ କୋମଳ-କରେ,
ଫୁଟାଇ ହୃଦୟେ ନବ
ସୁଖ ଆଶା ଗୋ
ଧନ ଆସ ଗୋ !
ସମବେତ ଗାନ ପରେ ଆସିଲେ କୃଷକେ
କର୍ତ୍ତିତ ଶସ୍ୟର ଭାର ଘେନି ମଥାପରେ,
ସଙ୍ଗେ ଘେନି ଛୋଟ ଛୋଟ ପୁଅ-ଝିଅ ତାଙ୍କ,
ଯାଙ୍କ ପ୍ରତି ହସ୍ତେ ଥିଲା ବିବିଧ ପ୍ରକାର
ଧାନ୍ୟର ଗୁଚ୍ଛିତ କେଣ୍ଡା, ମାଲ୍ୟ ମନୋହର ।
ସକଳେ ସେ, ସମବେତ-ନର୍ତ୍ତିତ-ଗତିରେ
ଗାଇଲେ ଧାନ୍ୟର ଜୟ, କୃଷକର ଜୟ ।

## (ଗୀତ)

ଆମେ, ଚଷା,
ଆମେ, ଚାଷୀ,
ଆମେ, ଧରାଧର୍ଷଣକାରୀ,
ଆମେ, ଯୁଗ-ଯୁଗଧରି
ବସୁଧାକୁ ଚିରି
ଅମୃତ ଅଛୁଁ କାଢ଼ି ।
ଆମେ, ଚଷା,
ଆମେ, ଚାଷୀ,
ଆମେ, ଧରାଧର୍ଷଣକାରୀ ।
ଆମେ, ନିଖିଳ ଜନର ପୋଷକ, ତୋଷକ,
ସ୍ରଷ୍ଟା ଅତୁଳନୀୟ,
ଆମେ, ଘୃଣ୍ୟ ପଙ୍କେ ସୁନା ପାଲଟାଉ,
କରୁ, କୁତ୍ସିତେ କମନୀୟ ।

ଆମେ, ବସୁଧାରେ କରୁ ଉର୍ବର, ଦେଇ
ଶରୀର-ଘର୍ମବାରି ।
ଆମେ, ଚଷା,
ଆମେ, ଚାଷୀ,
ଆମେ, ଧରାଧର୍ଷଣକାରୀ...
ଆମେ, ନାହିଁ ମାନୁ ଖରା, ନାହିଁ ଦେଖୁ ତରା,
ନ ଜାଣୁ ବଜ୍ର-ଭୟ,
ଆମେ, ଜୀବନକୁ କରୁ ଜୀବନ୍ତ, ଆମେ,
ପ୍ରକୃତି କରୁ ଜୟ ।
ଆମେ, ଭିକ୍ଷୁକ ନୋହୁ, ନ ମାଗୁ କା' ଦୟା,
ଆମେ, ଅଭୟ ସୃଷ୍ଟିକାରୀ ।
ଆମେ, ଚଷା,
ଆମେ, ଚାଷୀ,
ଆମେ, ଧରାଧର୍ଷଣକାରୀ,
ଆମେ, ଯୁଗ ଯୁଗ ଧରି
ବସୁଧାକୁ ଚିରି
ଅମୃତ ଅନ୍ନ କାଢ଼ି ।

ତା' ପରେ ହୋଇଲେ ଉଭା ଜନସଂଘ ଆଗେ,
ପାଲାବାଲା, ଜନତାର ମୁଖପାତ୍ରରୂପେ,
ଜନତାର କବି, ବାଗ୍ମୀ, ରସପ୍ରଦାୟକ,
ଶିକ୍ଷକ, ଶ୍ରୀଗୁରୁ ଆଦି ସବୁ ଏକାଧାରେ ।
ଗାନେ, କାବ୍ୟ-ବ୍ୟାଖ୍ୟାପନେ, ଶବ୍ଦାର୍ଥ କୌଶଳେ,
ମୁଗ୍ଧ କରି ଜନତାର ଚିତ୍ତ ସର୍ବାଦ୍ୟରେ,
ବୁଝାଇଲେ ତାଙ୍କୁ ଶେଷେ ସ୍ୱାଧୀନ ଏ ଦେଶ,
କାହିଁକି କିପରି ହେଲା, କି ତାର ତାତ୍ପର୍ଯ୍ୟ;
ଗଣତନ୍ତ୍ର-ଶାସନର କି ଅବା ମର୍ଯ୍ୟାଦା,
ରାଷ୍ଟ୍ରସଂଘେ ଭାରତର ଆସନ କିପରି,
ଭାରତୀୟ ଜନତାର ସମୂହ କଲ୍ୟାଣେ
ପଞ୍ଚସାଲି ଯୋଜନାର କିବା ଆଭିମୁଖ୍ୟ ।

ଜନତା ଶୁଣୁଛି ବସି ମନ୍ତ୍ରମୁଗ୍ଧବତ
ପାଲା-ବ୍ୟାଖ୍ୟାପନ । ଏହି କାଳେ କେହି ଜଣେ

ମିତ୍ରା, ମାଲ୍‌କମ୍ ହସ୍ତେ ଆଣି ଦେଲା ଗୁଞ୍ଜି,
ଡାକେ ଆସିଥିବା ପତ୍ର-ପତ୍ରିକା-ସମ୍ଭାର ।
ହଙ୍ଗେରୀରେ ବିପ୍ଳବର ବାରତା ଜଗତେ
ପ୍ରଚାରିତ ହେବା ଦିନୁ ମିତ୍ରାର ଚିତ୍ତରେ
ନାହିଁ ଶାନ୍ତି, ସେପିଲକୋ ଶେଷ-ପତ୍ର ଯେଣୁ
ବୁଦାପେଷ୍ଟୁ ପାଇଥିଲା ବହୁଦିନ ପୂର୍ବେ;
ଆଉ ଆସୁନାହିଁ ପତ୍ର । କି ହେଲା ତାହାର,
କିଛି ପତ୍ତା ନାହିଁ ମିଳେ । ରୁଷ୍-ଦୂତାବାସ
ତୁରନ୍ତ-ତାରରେ ଡାକି ନେଇଗଲେ ତାକୁ
ଛିଣ୍ଡାଇ ମିତ୍ରାର ପାଶୁ, ପୁଣି ଭାରତରୁ
ତଡ଼ି ନେଇ, ଲୌହ ଯବନିକା ଆରପାରେ
ବନ୍ଦୀ କଲେ କମ୍ୟୁନିଷ୍ଟ ଭୂମି ସୀମା ମଧ୍ୟେ ।
ତଥାପି କୋମଳ ଆଶା ଦୁଇ ପ୍ରଣୟୀର
ବଞ୍ଚିଥିଲା,—ଦୁହେଁ ଅବା ମିଶାଇବେ ପ୍ରାଣ
ଦିନେ, ଏଇ ଭାରତର ନୀଳାକାଶତଳେ,
ଅବା ନେଭା, ମସ୍କୋଭା[୧]ର ତଟପ୍ରାନ୍ତେ କାହିଁ ।
କିନ୍ତୁ ଏଇ କେତେ କାଳ ଅ-ସମ୍ବାଦ ଯୋଗୁଁ
ଦୁଶ୍ଚିନ୍ତାରେ କଟିଥିଲା ମିତ୍ରାର ଜୀବନ ।
ଡାକ ହାତେ ପାଉଁ ମିତ୍ରା, ପ୍ରଥମେ ଫିଟାଇ
ପଢ଼ିବାରେ ଲାଗିଲା ସେ ବଡ଼ ପତ୍ର ଏକ,
ଆସିଥିଲା ଯାହା ଚିହ୍ନ ବହି ନିଜ ଅଙ୍ଗେ
ୟୁରୋପର ନାନା ଦେଶୁଁ । କୌତୂହଳଭରେ
ତେଣୁ ସେ ପଢ଼ିଲା ତାକୁ । ପଢୁଁ ପଢୁଁ ତାର
ଦୁଇ ଗଣ୍ଡ ହେଲା କ୍ରମେ ବିବର୍ଣ୍ଣ ସହସା,
ତା' ପରେ ନିଖିଳ ଜନଚକ୍ଷୁ ସମକ୍ଷରେ,
ଥରଥର ରୂପଲତା ତୋଫାନ-ବିକ୍ଷୁବ୍ଧା
ପରି ସେ ଆସନୁ ଟଳି ପଡ଼ିଗଲା ଭୂମେ ।

---

୧. ନେଭା, ମସ୍କୋଭା ରୁଷିଆର ନଦୀ । ନେଭା ତଟରେ ଲେନିନ୍‌ଗ୍ରାଡ୍ ଓ ମସ୍କୋଭା ତଟରେ ମସ୍କୋ ଦଣ୍ଡାୟମାନ ।

## [ ନବମ ସର୍ଗ ]

''ବିଶ୍ୱମିତ୍ରା, ଭାରତୀୟ ଭଗିନୀ ମୋହର,
ସଂପୂର୍ଣ୍ଣ ଅପରିଚିତା ମୋଠାରୁ ଏ ପତ୍ର
ପାଇ, ନିଶ୍ଚେ ହେବ ଆଦ୍ୟେ ଅସୀମ ବିସ୍ମିତ ।
କିନ୍ତୁ ତମ ପାଶେ, ବନ୍ଧୁ, ଅନ୍ୟା ନୁହେଁ ମୁହିଁ,
ହେଲେହେଁ ଅପରିଚିତା । ଧରିନେବ ତମେ,
ସହସ୍ର ସହସ୍ର କିଲୋମିଟର ଦୂରରେ
ସମଦୁଃଖଭାଗୀ ଏକ ବିଦେଶିନୀ ମତେ
ଅତି ଆପଣାର ବୋଲି, ଅତି ଅନ୍ତରଙ୍ଗ ।

''ହଙ୍ଗେରୀ ମୋ ଜନ୍ମଭୂମି, କିନ୍ତୁ ବର୍ତ୍ତମାନ,
ଲଣ୍ଡନରୁ ଦେଉଛି ମୁଁ ଏ ପତ୍ର ତୁମରେ ।
ଜୀବନରେ ଆଉ ମୋର ପ୍ରିୟ ଜନ୍ମଭୂମି
ଦେଖିବି ନାହିଁ ଏ ଆଶା । ଯୁଗେ-ଯୁଗେ ଯାହା
ଘଟିଛି କଳଙ୍କ ଲେପି ମାନବ ଚରିତ୍ରେ,
ଆଜି ପୁଣି, ଏହି ସଭ୍ୟ ବିଂଶ ଶତାବ୍ଦୀରେ,
ସଭ୍ୟତାର ଅହଂକାରୀ ୟୁରୋପର ବକ୍ଷେ,
ସମଗ୍ର ଧରାର କୋଟି ଅପଲକ ନେତ୍ର-
ତଳେ, ସେହି ନର ପ୍ରତି ପଶୁ ବ୍ୟବହାର
ଅନ୍ୟ ମନୁଷ୍ୟର, ଘଟିଯାଇଛି, ବାନ୍ଧବି,
ପଢିଥିବ ପତ୍ରିକାରେ, ହେ ଦୂରଦେଶିନୀ
ହଙ୍ଗେରୀ-ବିପ୍ଳବ କଥା । ସେହି ବିପ୍ଳବର
ଅଶ୍ରୁ-ଦୁଃଖ-ରକ୍ତମୟ ସ୍ମୃତି-ସଂହତିର
ମୁଁ ଏକ ଜୀବନ-ଗାଥା,—ନଷ୍ଟ-ନୀଡ଼ ପକ୍ଷୀ,
ଶାଖା-ଚ୍ୟୁତ ପତ୍ର, ଅବା ଯୂଥଭ୍ରଷ୍ଟ ପ୍ରାଣୀ
ପରିରେ ମୁଁ ଭ୍ରାମ୍ୟମାଣ ଦେଶେ ଦେଶେ ଆଜି
ଗୃହହୀନ, ଦେଶହୀନ, ଜାତି-ବନ୍ଧୁ-ହୀନ ।
ମୁଁ କିନ୍ତୁ ଏକାକୀ ନୁହେଁ, ସହସ୍ର ସହସ୍ର
ମୋପରି ମୋ ଦେଶବାସୀ, ନରନାରୀଯୁବା,
ବାଳକ-ବାଳିକା, ପଳାତକ, ଦେଶତ୍ୟାଗୀ

ଦୂରଦୂରାନ୍ତରେ, ସଭ୍ୟମ୍ମନ୍ୟ ମନୁଷ୍ୟର
ପଶୁତ୍ୱରୁ ଆପଣାକୁ ବଞ୍ଚାଇବା ପାଇଁ
ବଞ୍ଚାଇରଖିବା ପାଇଁ ମନୁଷ୍ୟ-ମର୍ଯ୍ୟାଦା ।
ମନୁଷ୍ୟର ଜୟ ଗାଇ ବଦନେ ବଦନେ,
ଧରାପୃଷ୍ଠେ ସାଧାରଣ-ଦୀନ-ଜନତାର–
-ସ୍ୱର୍ଗ ଥାପିବାର ଦେଇ ଛଦ୍ମ ପ୍ରତିଶ୍ରୁତି,
ଏପରି ନୃଶଂସ ହତ୍ୟା କରିପାରେ ଲୋକ,
ସତ୍ୟ,ନ୍ୟାୟ, ଧର୍ମ, ଅବା ମାନବିକତାର,–
ପ୍ରତ୍ୟକ୍ଷ ସମ୍ପର୍କ ବିନା କେହି ସଭ୍ୟ ଜନ
ବିଶ୍ୱାସ ସହଜେ ନାହିଁ କରିବେ, ବାନ୍ଧବି !
ସେହି ମର୍ମ-ମନ୍ଥନକ, ପ୍ରାଣ-ଚୂର୍ଣ୍ଣକାରୀ
ଅଭିଜ୍ଞତା ଘଟିଯାଇଅଛି ଏଇ ମାତ୍ର,
ହଙ୍ଗେରୀରେ, ଲକ୍ଷ ଲକ୍ଷ ନରନାରୀଙ୍କର,
କମ୍ୟୁନିଷ୍ଟ ରୁଷିଆର କ୍ରୁର ନିଷ୍ପେଷଣେ ।
ହତଭାଗ୍ୟ ଦେଶ ମୋର, ଅଭିଶପ୍ତ ଜାତି,
ବାର ବାର ବିଦେଶୀର ଗୃଢ଼ ପଦତଳେ
ହୋଇଆସିଅଛି ଏହିପରି ନିର୍ଯାତିତ,
ବାର ବାର ଏହିପରି ଉଠି ବିଦ୍ରୋହରେ
ପୁଣି ଯାଇଅଛି ମିଶି ଆପଣା ମାଟିରେ
ମୁହଁ ମାଡ଼ି, ଦୁର୍ବଳର ବିଳାପେ କୁହାଇ ।
ଏଇ ଯା' ଲେଖୁଛି ପତ୍ର ତୁମରେ ଭଗିନୀ,
ମୋର ସେହି ହତଭାଗ୍ୟ ଦେଶ, ଜାତି ପାଇଁ
ବର୍ଷାକୁଳ ନଦୀ-ବେଣୀ ପରିରେ ମୋ ଅଶ୍ରୁ
ନେତ୍ରପ୍ରାନ୍ତ ଲଙ୍ଘି ଭାସିଯାଏ ଅନାୟରେ ।

''ତମ ଦେଶ, ତମ ଧର୍ମ, ତମର ସଂସ୍କୃତି
ଅନନ୍ୟ ମହିମାମୟ ସମଗ୍ର ଧରାରେ ।
ଲକ୍ଷ ଲକ୍ଷ ବୁଦ୍ଧିଜୀବୀ ପୂର୍ବ, ପଶ୍ଚିମରେ
ଭାରତର ବାଣୀ ଆଗେ ବିନୀତ ମସ୍ତକ ।
ଯୁଗେ-ଯୁଗେ ବିଶ୍ୱ ଆଗେ ବାଢ଼ିଛି ଭାରତ,
ବିଶୁଦ୍ଧ ସତ୍ୟର ବାଣୀ, ପରମ ତତ୍ତ୍ୱରେ,

ଦେଶକାଳ-କ୍ଷୁଦ୍ର-ସୀମାତୀତ ମନୁଷ୍ୟର
ଆତ୍ମାର ଦୈବତ ତଥ୍ୟ । ସେ ସତ୍ୟ-ଗ୍ରହଣେ
ଭାରତ କରିନି ପୁଣି ହେଲେ କେଉଁ କାଳେ,
ଦୀର୍ଘ ତାର ଇତିହାସେ, ବାଧ କାହାରିରେ,
ବିରୋଧର ସମାଧାନ କରିନାହିଁ କେବେ
ବିରୋଧୀର ମଥା କାଟି, ଅବା ତା'ର ଓଷ୍ଠେ
ବନ୍ଧ କରି ପଶୁଭୟେ । ସମଗ୍ର ଧରାର
ସଭ୍ୟତାର ଇତିହାସେ ଅଦ୍ୱିତୀୟପନ୍ଥୀ—
ବୁଦ୍ଧ, ଗାଂଧୀ—ଏ ଧରାର ପୁତ୍ର ସର୍ବଶ୍ରେଷ୍ଠ;—
ଯେହୁ ହିଁ କେବଳ ଉଠି ଦୈବତ ଊର୍ଦ୍ଧ୍ୱରେ,
ଗୋଷ୍ଠୀ, ଦେଶ, ତାତ୍‌କାଳିକ କ୍ଷଣିକ ଲାଭର
ସକଳ ମୋହରେ ଭାଙ୍ଗି, ପ୍ରଚାରିଲେ ବାଣୀ
ମୈତ୍ରୀ, ପ୍ରେମ,ଅହିଂସାର, ଜୀବେ ଓ ମାନବେ ।
ପୃଥିବୀର କେଉଁ ଦେଶେ କେହି ହିଁ ମହାତ୍ମା
ଏ ଦୁଇ ପରିରେ ଦେଇ ଯାଇନି ନିର୍ମଳ
ଐଶ୍ୱରିକ ମହାତତ୍ତ୍ୱ, ଅଛଦ୍ମ ଭାଷାରେ,
କାହାରି ବାଣୀରେ ଏତେ ବିକଚ ମଧୁର
ଫୁଟି ନାହିଁ ଜୀବ-ଅବା-ମନୁଷ୍ୟ-ମର୍ଯ୍ୟାଦା,
କାହାରିହିଁ ବାଣୀ ହୋଇ ନାହିଁ ବିଶ୍ୱବ୍ୟାପ୍ତ
ଏ ଦୁହିଁଙ୍କ ବାଣୀ ସମ, ବିନା ରକ୍ତପାତେ ।

''ହିଂସାରେ ବିଶ୍ୱାସୀ ଆମେ ପାଶ୍ଚାତ୍ୟ ଜାତିଏ,
ପାଦାର୍ଥିକ ସ୍ୱାଚ୍ଛନ୍ଦ କୁ ବୁଝିଣ ସଭ୍ୟତା,
ତାହାରି ରକ୍ଷଣ ଲାଗି ଦୁଇ ବିଶ୍ୱ-ଯୁଦ୍ଧେ
ହୋଇ ମଧ ଧ୍ୱସ୍ତ, ପୁଣି ତୃତୀୟ ସଂଗ୍ରାମ
ପାଇଁ ହେଉଅଛୁଁ ସଜ । ଯୁଗ-ଯୁଗଧରି
ୟୁରୋପୀୟ ସଂସ୍କୃତିର ହିଂସା-ଜର୍ଜରିତ,
ହତ୍ୟା-କଳୁଷିତ, ଷଡ଼ଯନ୍ତ୍ର-ବିଦୂଷିତ,
ଚିନ୍ତାଧାରା, ଅବଶେଷେ ଦେଇଅଛି ଦେଖା
ମାର୍କସ୍-ତତ୍ତ୍ୱେ,[୨] ଯା' ଜଙ୍ଗଲ-ଜନ୍ତୁ-ଉପଯୋଗୀ ।

---

୨. କାର୍ଲମାର୍କସ୍ ପ୍ରଚାରିତ କମ୍ୟୁନିଜମ୍ ବା ସମସମାଜବାଦ ନିଜର ଲକ୍ଷ୍ୟ ସାଧନ ପାଇଁ ଯେ କୌଣସି ଉପାୟ ଅବଲମ୍ବନ ସମର୍ଥନ କରେ ।

ମାନବର ସର୍ବ-ଦୁଃଖ-ହର ପନ୍ଥା ବୋଲି
ଦୈନ୍ୟ-ନିପୀଡ଼ିତ କୋଟି ଧରାବାସୀ ସାଥେ
ଆମେ ମଧ୍ୟ ହଙ୍ଗେରୀରେ ସାଧାରଣ ଜନେ
ମାର୍କସ୍-ବାଦ ପ୍ରଚାରରେ ଯାଇଥିଲୁ ଭୁଲି;
ଦେଖିଥିଲୁ ସ୍ୱପ୍ନ, ଶୀଘ୍ର ଧରାପରେ ସ୍ୱର୍ଗ
ଠିଆହେବ, ଶୁଦ୍ଧ ହାସ୍ୟେ, ନ୍ୟାୟ ବିଚାରର
ଜୀବନ୍ତ ପ୍ରତୀକ ପରି । ଅ-ସମ ସମାଜ
ସମତାର ଅଭିନବ ସାମ୍ୟବସ୍ତ୍ରେ ସାଜି
ଠିଆହେବ ଆଖି ଆଗେ; ଶୋଷଣର ଚିହ୍ନ
କେବଳ ରହିବ ଇତିହାସର ପୃଷ୍ଠାରେ ।
ଏହିପରି ଭାବି ଦିନେ ଆମେ ହଙ୍ଗେରୀରେ
ଏକ ହସ୍ତେ ତଡ଼ି ଦେଇ ବର୍ବର ନାଜୀଙ୍କୁ
ଅନ୍ୟ ହସ୍ତେ ଦେଇଥିଲୁ ବଂଧୁ-ସମ୍ବର୍ଦ୍ଧନା
କ୍ଷିପ୍ରଗାମୀ ସୋଭିଏଟ ବିଜୟୀ ସେନାରେ ।

"କିନ୍ତୁ ମାତ୍ର ଅଳ୍ପକାଳେ, ବୁଝିଲୁ ବାନ୍ଧବି,
ଇତିହାସେ ନାହିଁ ଥିଲା ଘୋରତର କେବେ
କୌଣସି ସାମ୍ରାଜ୍ୟ ମାର୍କସ୍-ବାଦୀର ସାମ୍ରାଜ୍ୟୁଁ ।
ସେ-ସାମ୍ରାଜ୍ୟ-ଅଷ୍ଟପଦୀ-ବୀଭତ୍ସ-ଲାଙ୍ଗୁଳେ
ଆମ ପ୍ରତ୍ୟେକର ହସ୍ତପଦ ହେଲା ବଂଧା,
ବ୍ୟକ୍ତି ତା' ବ୍ୟକ୍ତିତ୍ୱ ତେଜି ହୋଇଲା କେବଳ
ବିରାଟ ଶାସନ-ଯନ୍ତ୍ରେ ସାମାନ୍ୟ କବ୍ଜା ।
ଆମେ ସବୁ ଚିନ୍ତାହୀନ, ବାକ୍ୟହୀନ, ମୂଢ
ଅବୋଧ ଜନ୍ତୁଙ୍କ ପରି କାମ କରୁଁ, ଖାଉଁ
ପୁଣି କାମ କରୁ, ଘରେ ଧୀରେ ଶୋଉଁ ଫେରି,
ଆମ ପ୍ରତ୍ୟେକର ବେକେ ଅଦୃଶ୍ୟ ଦଉଡ଼ି
କମ୍ୟୁନିଷ୍ଟ ଦଳ ଆଉ ପୋଲିସର ହସ୍ତେ
ଅଛି ଏହା ଜାଣି ଥାଉ ମୂକ, ନିର୍ବିକାର;
ଆମେ ମାତ୍ର ଶ୍ରମିକ, ସେ ଶ୍ରମିକର ସ୍ୱର୍ଗେ,—
ହଙ୍ଗେରୀର ରସ ହେଲା କୌଶଳେ ଶୋଷିତ,
ରୁଷିଆର ବୃଦ୍ଧି ଲାଗି । ଦୈନ୍ୟ-ନିଷ୍ପେଷିତ

ବିଶ୍ୱ-ଜନତାର ନାମେ ସ୍ଲୋଗାନ ଶୁଣାଇ,
ସାମନ୍ତ-ଯୁଗୀୟ ସେହି ଔପନିବେଶିତା,
ସେହି କ୍ଷୁଦ୍ର ଜାତୀୟତା, ଫୁଟିବାର ଶେଷେ,
ସେହି ଏକ ଦେଶ ଅନ୍ୟ ଦେଶ ଜୟ କରି
ପଶୁବଳେ, କରିବାର ଶୋଷଣ ତାହାକୁ
ଚୂର୍ଣ୍ଣୀଭୂତ କରିଦେଲା ମୂଢ଼ ସ୍ୱପ୍ନ ସବୁ
ଆମର ଧରାରେ ଠିଆକରାଇବା ସ୍ୱର୍ଗ ।

''କୁହୁଳି କୁହୁଳି ଦ୍ୱେଷ ହେବାରୁ ଅସହ୍ୟ,
ସହସ୍ର ଶିଖାରେ ତାହା ହେଲା ଉଦ୍‌ଗାରିତ
ଏଇ ସଦ୍ୟ ବିଘଟିତ ବିପ୍ଳବ-ଯଜ୍ଞରେ ।
ହଙ୍ଗେରୀର ଏ ବିପ୍ଳବ ଆଧୁନିକ କାଳେ
ଅନନ୍ୟ;— ନିରନ୍ଧ୍ର, ରୁକ୍ଷ, କମ୍ୟୁନିଷ୍ଟି ଦେହେ
ଏହିହିଁ ପ୍ରଥମ ଗୁରୁ କଠିନ ଆଘାତ ।
କମ୍ୟୁନିଷ୍ଟି ଶାସନର ସକଳ ଦମନ,
ସକଳ ଚକ୍ରାନ୍ତ, ସର୍ବ ହିଂସ୍ରତାରେ ଦେଇ
ଘୋର ଅପମାନ, ଏକ ଅସହାୟ ଜାତି
ବାଳ-ବୃଦ୍ଧ-ନିର୍ବିଶେଷେ ଉଠିଲା ସେଦିନ
ଏକାବେଳେ ମନ୍ତ୍ର-ଶକ୍ତି-ଚାଳିତ ପରିରେ
ଅତ୍ୟାଚାରୀ ଶାସକର ପିଟିବାକୁ ମଥା,
ନିଷ୍ପେଷିତ ନରତ୍ୱରେ ଦେବାକୁ ମର୍ଯ୍ୟାଦା ।

''ଏଇ ବିପ୍ଳବରେ ଏଇ ମାନବିକତାର
ଜୟଧ୍ୱନି ଉତ୍ତୋଳନେ, ନର ମର୍ଯ୍ୟାଦାର
ଏହି ପୁଣ୍ୟ-ଯଜ୍ଞେ, ମୋର ବିଦେଶୀ-ଭଗିନି,
ଏଇ ସୁଖ-ସମ୍ବାଦ ମୁଁ ଦେଉଛି ତୁମରେ,
ତୁମର ଓ ମୋର ପ୍ରେମ ଆସ୍ପଦ ଯେ ଦୁହେଁ,
ସେମାନେ ଯେ ବୀର ପରି ନିଜକୁ ଆହୁତି
ଦେଇଛନ୍ତି, ସେଇମାତ୍ର ପରମ ସାନ୍ତ୍ୱନା ।
ସେପିଲକୋ, ମାଲିଟର, ଦୁଇ ବଂଧୁ ନାମ
ହଙ୍ଗେରୀର ଘରେ ଘରେ ଉଚ୍ଚାରିତ ଆଜି ।

ଅକ୍‌ଟୋବର ତେଇଶି'ର ସଂଧ୍ୟାରେ, ଜନତା
ବୀର-ଶୃଙ୍ଗାଟକେ ଥିବା କ୍ରୁର ହତ୍ୟାକାରୀ
ଷ୍ଟାଲିନୀର ବ୍ରୋଂଜ୍ ମୂର୍ତ୍ତି ଭାଙ୍ଗି, ଓଲଟାଇ
ଫେରିଲା ଯେ କାଳେ ସୋଭିଏଟ୍-ନିୟନ୍ତ୍ରିତ
ସୈନ୍ୟ ଦେଉଁ ଜନତାରେ ଅଗ୍ନି-ସମ୍ବର୍ଦ୍ଧନା,
ପଳାତକ ଜନଗଣେ ଅଟକାଇ ପନ୍ଥ
ରୁଷିୟାନ୍ ସେପିଲକୋ ଦେଲା ଉନ୍ମାଦନା,
କହି ଏହା—

'ହଙ୍ଗେରୀର ନିର୍ଯାତିତ ଜନେ,
ବୁଦାପେଷ୍ଟ ସାହସିକ ନାଗରିକ ଯେତେ,
ଫେରନାହିଁ, ନ ପଳାଅ, ଘୁଞ୍ଚ ନାହିଁ ପଛେ,
ଠିଆରହ ଅତ୍ୟାଚାରୀ ଅନ୍ୟାୟ ସମ୍ମୁଖେ ।
ନରର ମର୍ଯ୍ୟାଦା ଲାଗି, ଅନ୍ୟାୟ ବିରୁଦ୍ଧେ
ଯେ ବିଦ୍ରୋହ ଠିଆ ତମେ କରିଛ ଏ ସ୍ଥାନେ
ସମଗ୍ର ବିଶ୍ୱରେ ତାହା ଅନନ୍ୟ ଆଦର୍ଶ ।
ପଳାୟନେ ନ ନୁଆଁ ବିପ୍ଳବର ମାନ,
ଯେ ଭୟେ ଶାସକ କରି ରଖିଛି ନିର୍ବାକ
ତୁମ ସକଳରେ, ତୁମେ ସେହି ଭୟକୁହିଁ
ପ୍ରଥମରେ କର ହତ୍ୟା । ବକ୍ଷ ଓ ମସ୍ତକ,
ଉଚ୍ଚ କର ଅତ୍ୟାଚାରୀ ହିଂସ୍ର ଅସ୍ତ୍ର ଆଗେ
ଆପଣାକୁ ଅବିଜେୟ ଦୈତ୍ୟ-ଶକ୍ତି ପରି
ଦେଖାଅ ଅକୁତୋଭୟେ । ମର ଅକାତରେ,—
ତମ-ମୃତ୍ୟୁ-ଗର୍ବେ ଦିନେ ପିଲାଏ ତମର,
ଧରାର ଅୟୁତ ନିଷ୍ପେଷିତ ଜନ ପୁଣି,
ବଞ୍ଚିବେ ନିର୍ଭୟେ ମାନବିକ ମର୍ଯ୍ୟାଦାରେ ।
ମୁହିଁ ରୁଷିୟାନ୍ ଭାଇ, ତମ ପରି ଆମେ
ଲକ୍ଷ ଲକ୍ଷ ନିର୍ଯାତିତ, ସୋଭିଏଟ ଦେଶେ,

---

୨. ୨୩ ଅକ୍‌ଟୋବର, ୧୯୫୬ରେ ହଂଗେରୀ ବିପ୍ଳବ ପ୍ରଥମ ଆତ୍ମପ୍ରକାଶ କରିଥିଲା । ବୁଦାପେଷ୍ଟ ନଗରୀର ହିରୋ-ସ୍କୋୟାର ବା ବୀର-ଶୃଙ୍ଗାଟକରେ ଷ୍ଟାଲିନ୍‌ର ବିରାଟ ବ୍ରୋଂଜ୍ ପ୍ରତିମୂର୍ତ୍ତିକୁ ଧୂଳିସାତ୍ କରିବା ଏହି ବିପ୍ଳପବର ପରମ ପ୍ରତୀକ ।

ବାକ୍ୟହୀନ, ଚିନ୍ତାହୀନ, ସ୍ପର୍ଶହୀନ ପ୍ରାଣୀ,
ନେତା ଓ ଦଳର ରଜ୍ଜୁ ଚଳାଏ ଆମରେ ।
ତମର ବିଦ୍ରୋହ ଏହି, ନୁହଇ କେବଳ
ରୁଷିଆ-ବିରୋଧ । ମାନବିକ ମାନ ପାଇଁ
ହିଂସ୍ର, କ୍ରୁର,ଅମାନୁଷ, ଏକଚ୍ଛତ୍ରବାଦୀ
ମାର୍କସ୍-ତତ୍ତ୍ୱ-ପ୍ରତିଷ୍ଠିତ କମ୍ୟୁନିଷ୍ଟ-ରାଜ
ବିରୋଧରେ ଏ ବିଦ୍ରୋହ । ଉଠାଅ ପତାକା
'ଜୟ ଗଣତନ୍ତ୍ର' କହି, 'ବ୍ୟକ୍ତି-ସ୍ୱାଧୀନତା'
'ବ୍ୟକ୍ତିର ମର୍ଯ୍ୟାଦା' 'ମନୁଷ୍ୟତାର ସମ୍ମାନ'
ଧ୍ୱନି ଉଚ୍ଚେ, ଅତ୍ୟାଚାରେ ଦିଅ ହେ ଆହ୍ୱାନ;
ସମଗ୍ର ପୃଥିବୀ ଘେରି ବ୍ୟାପିବ ସେ ବାଣୀ
ଦେଶେ ଦେଶେ, ଏ ଧରାର ପ୍ରତି କୋଣେ କୋଣେ,
ମାନବର ପ୍ରାଣଭରା ହୃଦରୁ ଉଠିବ
ପ୍ରତିଧ୍ୱନି ତମ ଲାଗି, ପରମ ଉତ୍ସାହ ।
ଆସ ସର୍ବେ, ଫେର ଭାଇ, ପ୍ରିୟ ହଙ୍ଗେରୀଏ,
ପ୍ରାଣବଳି ଦେଇ ଏହି ସ୍ୱାଧୀନତା-ଯଜ୍ଞେ
ପୋତିବା ବିଜୟକେତୁ ମାନବିକତାର ।''

''ଫେରିଲେ ଜନତା ସତ୍ୟେ । ଅଗ୍ରେ ସେପିଲକୋ,
ଅଦୂରରେ ସୋଭିଏଟ୍-ହଙ୍ଗେରୀୟ ସେନା,
ଅଗଣିତ ବନ୍ଧୁକର ଅଗ୍ର ଲକ୍ଷ୍ୟ ରଖି
ପ୍ରସ୍ତୁତ, ଆଦେଶ ଲାଗି । ପାଇଁ ସେ ସଂକେତ
ବରଷିଲେ ଗୁଳିଜାଳ । ବୁଦାପେଷ୍ଟ-ପୁର-
ଜନ ସାଥେ ସେପିଲାକୋ ହେଲା ଆଦ୍ୟ ବଳି
ହଙ୍ଗେରୀୟ ବିଦ୍ରୋହରେ । ଉନ୍ମତ୍ତ ଜନତା,
ଲଭି ବୀର ସେପିଲକୋ ମୃତ୍ୟୁରୁ ପ୍ରେରଣା,
ପ୍ରାଣରେ ଭ୍ରୂକ୍ଷେପ ନାହିଁ କରି, ବର୍ତ୍ତମାନ
ବେଢ଼ିଗଲେ ସେନାଦଳେ । ଛଡ଼ାଇ ବଂଧୁକ
ତାଙ୍କ ହାତୁ, କଲେ ତାଙ୍କୁ ହତ୍ୟା ସେହି ସ୍ଥାନେ ।

''ଉନ୍ମତ୍ତ ଜନତା ତହୁଁ ଚଳିଲେ ସବେଗେ,
କିଲିଆନୀ ଦୁର୍ଗ ଲକ୍ଷ୍ୟେ,— କିଲିଆନୀ ଦୁର୍ଗ,

ଯହିଁ ଥିଲେ ବୁଦାପେଷ୍ଟ-ନିୟନ୍ତ୍ରଣକାରୀ
ସେନାଦଳ । ଜନଗଣ ପହଁଚି ସେ ସ୍ଥାନେ,
ଆହ୍ୱାନିଲେ ହଙ୍ଗେରୀୟ ସୈନ୍ୟଗଣେ ସବୁ,
ହଙ୍ଗେରୀର ମୁକ୍ତି ପାଇଁ ବିଦ୍ରୋହୀଗଣର
ନେବାକୁ ନେତୃତ୍ୱ, ତେଜି କମ୍ୟୁନିଷ୍ଟ ଦାସ୍ୟ ।

''ସମ୍ମୁଖୀନ ହେବା ଲାଗି ଏହି ସଂକଟର
ରୁଷୀୟ ଶାସକେ ସେହି ସ୍ଥଳେ ପଠାଇଲେ
ବିଶ୍ୱାସଭାଜନ କାପ୍‌ତାନ ମାଲିଟରେ,
ଦେଇ ସାଥେ କ୍ଷୁଦ୍ର ଏକ ଟାଂକ୍‌ର[୩] ବାହିନୀ ।
ମାଲିଟର ଗଲେ ତହିଁ । ଦେଖିଲେ ଜନତା–
ବାଳ, ବୃଦ୍ଧ, ନର, ନାରୀ, କିରାନି, ହାକିମ,
ଲେଖକ, ଓକିଲ, ଶ୍ରମୀ, ବିପଣୀ-ବାଳିକା,
ବିଦ୍ରୋହ-ବିକ୍ଷୁବ୍ଧ ହଙ୍ଗେରୀର ସତ୍ୟ 'ଗଣ' ।
ସମଗ୍ର ଜନତା ଥାଇ ଥାଇ ଚିତ୍‌କାରଇ–
'ମୁକ୍ତି ଚାହୁ ହଙ୍ଗେରୀର', 'ପଳାଅ ରୁଷୀଏ'
'ଅତ୍ୟାଚାର ଶେଷ ହେଉ', 'ହେଉ ପୂର୍ଣ୍ଣ ଜୟ
ମାନବିକ ମର୍ଯ୍ୟାଦାର', 'ଗଣତନ୍ତ୍ର ଜୟ' !
ମାଲିଟର ଅବଲୋକି, ଶୁଣି ଏ ସ୍ଲୋଗାନ;
ପଚାରିଲେ ଆପଣାରେ– 'ମାରିବି କାହାକୁ ?
ଏ ଯେ ମୋର ମାତୃ-ମାଟି ଲକ୍ଷ ଦେହ ଧରି
ଅତ୍ୟାଚାର ବିରୁଦ୍ଧରେ କରଇ ଚିତ୍‌କାର !
ମାଆକୁ ମାରିବି ମୋର ? ମୋ ନିଜ ଦେଶରେ ?
ତାହା ପୁଣି ନ୍ୟାଯ୍ୟ ତାଙ୍କ ଅଧିକାର ମାଗୁଁ ?'

''ଭାବି ଏହା, ତୁରନ୍ତରେ ନିଜ ବାହିନୀରେ
ଦେଲେ ସେ ଆଦେଶ, ଦ୍ରୋହୀ ଜନତାକୁ ଛାଡ଼ି
କିଲିଆନୀ ଦୁର୍ଗ ଲକ୍ଷ୍ୟେ ଆକ୍ରମଣ ପାଇଁ ।
ବିକ୍ଷୋଭିତ ସେ ବିରାଟ ବିଦ୍ରୋହୀ ଜନତା
ବିସ୍ମୟରେ ହେଲା ଶାନ୍ତ ନିର୍ବାକ ବିସ୍ମୟେ
ଦେଖିଲା ଅଶ୍ରୁତପୂର୍ବ ଏ ମହା ଘଟଣା ।

---

୩. ଇଂରାଜି – 'ଟାଁକ୍'

ମାଲିଟର-ବାହିନୀର ଅଗ୍ନି-ବରଷଣେ
କିଲିଆନୀ ଦୁର୍ଗ କଲା ଆତ୍ମ-ସମର୍ପଣ,
ଯେତେ ତହିଁ ଥିଲେ ସବୁ ହଙ୍ଗେରୀୟ ସୈନ୍ୟେ
ବିଦ୍ରୋହୀଙ୍କ ସହ ମିଶି ଉଦାର କଣ୍ଠରେ
ଗାଇଲେ ଜାତୀୟ ଗାନ, କଲେ ମୃତ୍ୟୁ-ଯାତ୍ରା ।

''ଭଗିନୀ ମୋ, ଜାଣିରଖ ମେରିଆ ମୋ ନାମ,
ଏହି ମାଲିଟର ମୋର ପ୍ରଣୟୀ ଜାଣିବ ।
ଆଗାମୀ ବସନ୍ତ କାଳେ ପରିଣୟସୂତ୍ରେ
ମାଲିଟର ଦୃଢ଼ ହସ୍ତେ ମୋର ନାରୀକର
ରଖିଥାନ୍ତି ବିଶ୍ୱ ଆଗେ,—ଦେଇଥିଲି ହୃଦ
ବହୁ ଆଗୁଁ । ସେହି ଆଶା ଚୂର୍ଣ୍ଣୀଭୂତ ଆଜି ।
ଏଇ ଯେ ଲେଖୁଛି ପତ୍ର, ମାଲିଟର-ଦତ୍ତ
ଅଭିଜ୍ଞାନ-ସ୍ୱର୍ଣ୍ଣ-ମୁଦି ବାମ-ଅନାମିକେ,
ସବୁ ତା'ର ବୀର-ସ୍ମୃତି କରି ପୁଂଜୀଭୂତ
ମୋ ମାନସଚକ୍ଷୁ ଆଗେ, କରେ ବ୍ୟାକୁଳିତ ।

''ମାଲିଟର ବିଦ୍ରୋହହିଁ ହଙ୍ଗେରୀ-ବିପ୍ଳବେ
ଆଣିଲା ତୁରନ୍ତ ସିଦ୍ଧି । କମ୍ୟୁନିଷ୍ଟ ଚକ୍ର
ବାଧ ହେଲା ମାନିବାକୁ ଜନତାର ଦାବି ।
ନୂତନ ଶାସନ ଏକ ଗଢ଼ାହେଲା, ଯହିଁ
ମାଲିଟର ହେଲେ ନିଜେ ସମର-ସଚିବ ।
ମାଲିଟର ଆହ୍ୱାନରେ ଆକାଶ-ବାଣୀରେ
ହଙ୍ଗେରୀର ଚତୁର୍ଦ୍ଦିଗେ ବିଦ୍ରୋହାଗ୍ନି ଧୀରେ
ନିର୍ବାପିତ ହେଲା ଆପେ । ଜନତାର ପ୍ରାଣେ
ଆଶାର ସଂଚାର ହେଲା । ରାତ୍ରି ଅବସାନେ
ଉଷାର ଉଦୟ ପରି ଲାଗିଲା ଆମକୁ ।

''କିନ୍ତୁ ସପ୍ତାହକ ପରେ ରୁଷୀୟ ସୈନିକ
ହଙ୍ଗେରୀରୁ କେଉଁ କ୍ରମେ ଘେନିବେ ବିଦାୟ—
ଏହି ଆଲୋଚନା ପାଇଁ ରୁଷ-ଦୂତାବାସେ
ଡାକିନେଇ ସହକର୍ମୀସହ ମାଲିଟରେ
ଧୂର୍ତ୍ତ, ଧର୍ମହୀନ, କ୍ରୂର, କପଟ-ସର୍ବସ୍ୱ
କମ୍ୟୁନିଷ୍ଟ କଲେ ତାଙ୍କୁ ବନ୍ଦୀ ସେହିଠାରେ ।

ପୁଣି ସେହି କାଳେ ରୁଷିଆରୁ ନବାଗତ
ଅଗଣିତ ଟାଂକ୍-ସେନା କଲେ ଆକ୍ରମଣ
ଅସ୍ତ୍ରହୀନ ଅସହାୟ ବୁଦା ଆଉ ପେଷ୍ଟେ ।
ଅସହାୟ ମୁଖ୍ୟମନ୍ତ୍ରୀ ଇମ୍ରେ ନେଗୀ[୪] ଡାକେ
ରେଡ଼ିଓରେ 'ମାଲିଟର, ବୀର ମାଲିଟର,
କାହିଁ ଅଛ, ହଙ୍ଗେରୀରେ କର ହେ ଉଦ୍ଧାର !
ଏ ସଂକଟେ ମାତୃଭୂମି ରକ୍ଷା କର ଆସି ।'
ବାରମ୍ବାର ଡାକଦେଲେ ଜନପ୍ରିୟ ନେତା
ଇମ୍ରେ ନେଗୀ ଅସହାୟ ଶାସକ ଆମର—
ମାଲିଟର କାହିଁ କିଛୁ ? କାହୁଁ ସେ ଶୁଣିବେ ?
କିଏ ଆଉ ନିଷ୍ପେଷିତ ହଙ୍ଗେରୀରେ ଦେବ
ନେତୃତ୍ୱ, କରିବ ତାକୁ ମୁକ୍ତ, ସଚେତନ ?

''ସେହି ହେଲା ହଙ୍ଗେରୀୟ ବିପ୍ଳବର ଶେଷ ।
କମ୍ୟୁନିଷ୍ଟ ଅମାନୁଷ ପ୍ରତିହିଂସା ଭୟେ,
ସହସ୍ର ସହସ୍ର ହୋଇ, ନାନା ପଥ ଦେଇ,
ନାନା କ୍ଲେଶ, ରୋଗ, କ୍ଲାନ୍ତି, କ୍ଷୁଧା, ପିପାସାରେ
ନାହିଁ ଦବି, ଏସବୁରୁ ଅଧିକ ଭୀଷଣ
କମ୍ୟୁନିଷ୍ଟ ହିଂସା ଭୟେ, ପଳାତକ ଆଜି
ଦିଗେ ଦିଗେ ହଙ୍ଗେରୀୟେ । ତାଙ୍କ ମଧ୍ୟେ ଜଣେ
ମୁହିଁ ନିଜେ; ହେ ବାନ୍ଧିବି, ନାନା କଷ୍ଟ ସହି,
ଏକବସ୍ତ୍ରେ ନେଇଛି ମୁଁ ଶେଷରେ ଆଶ୍ରୟ,
ଗଣତନ୍ତ୍ର ଜନ୍ମଭୂମି ଉଦାର ଲଣ୍ଡନେ ।

''ସେପିଲକୋ ନାହିଁ ଆଉ । ମାଲିଟର ମଧ୍ୟ,
ଜୀବନରେ ଫେରିବାର ଆଶା ନାହିଁ; ଯେଣୁ
କମ୍ୟୁନିଷ୍ଟ ଶାସନର ପାଶବ-ତନ୍ତ୍ରରେ
ସ୍ଥାନ ନାହିଁ ମାନବିକ ମାନ ଓ ନ୍ୟାୟର ।
ଇଣ୍ଡିଆରୁ ବାଧହୋଇ ଫେରି ସେପିଲକୋ,
ବୁଦାପେଷ୍ଟ ପ୍ରାଚ୍ୟ-ବିଦ୍ୟାପୀଠେ ଯୋଗଦେଇ
କରୁଥିଲେ ଭାରତୀୟ ବିଦ୍ୟା ଅଧ୍ୟୟନ ।

---

୪. ଦେଶପ୍ରେମୀ ଇମ୍ରେ ନେଗୀଙ୍କୁ ପରେ ରୁଷିଆନ୍‌ମାନେ ବର୍ବର ଭାବରେ ହତ୍ୟା କରିଛନ୍ତି ।

କେଉଁ ଏକ କ୍ଲବେ ହୁଏ ମାଲିଟର ସାଥେ
ଆଦ୍ୟ ଦେଖା, ପରିଚୟ । ଆଉଁ ଦୁହିଁଙ୍କର
ଚିତ୍ତର ଉଦାର ସାମ୍ୟ, ହେଲେହେଁ ଜଣକ
ସୈନିକ, ଆରେକ ପୁଣି ସଂସ୍କୃତିର ଛାତ୍ର,
ଦୁହିଁଙ୍କର ହେଲା କ୍ରମେ ଗଭୀର ବନ୍ଧୁତା ।
ସେହି କ୍ରମେ ହେ ଭଗିନି, ତୁମର ସମସ୍ତ
ଅନୁପମ ଗୁଣାବଳି ବିଦିତ ଆମକୁ,
ଅଦେଖାରେ ମଧ ତମେ ଆମର ଏକାନ୍ତ
ଆପଣାର ପ୍ରିୟଜନ । ମାଲିଟର ନିଜେ,
ସେପିଲକୋ ପ୍ରଭାବରେ ଭାରତ-ସଂସ୍କୃତି,
ଆସ୍ତେ ଆସ୍ତେ କରୁଥିଲେ ଚିନ୍ତା, ଅଧୟନ ।
ତାଙ୍କ ଦୂର କୁଟୁମ୍ବିକ,—ମନେନାହିଁ ନାମ—
ସୁବିଖ୍ୟାତ ଭାରତୀୟ-କଳାବିଦ୍, ଯେହୁ
ଥାଆନ୍ତି ଦିଲ୍ଲୀରେ ଏବେ (ଜାଣ କି ତାହାଙ୍କୁ ?)
ତାଙ୍କ ପଥ ଅନୁସରି ମାଲିଟର ମଧ,
ଭାବୁଥିଲେ ଯିବେ ଦିନେ ପୁରାଣ ଭାରତେ,
ଦେଖିବେ ତା' ହିମାଳୟ-ତୁଷାର-ମୁକୁଟ,
ପବିତ୍ର ଜାହ୍ନବୀ ନଦୀ, ପ୍ରେମିକ-ଲୋତକ—
ପୁଞ୍ଜୀଭୂତ ସ୍ମୃତି ସମ ଶୁଭ୍ର, ଶୁଦ୍ଧ 'ତାଜ',
ମାନବିକ କଳ୍ପନାର ଅପୂର୍ବ ବିକାଶ
କୋଣାର୍କ, ପବିତ୍ର ବାରାଣସୀ ନଦୀ ତଟେ
ନିଷ୍ଠାବାନ ଦ୍ୱିଜାଧରେ ଶୁଣିଥାନ୍ତେ ପୁଣି
ଦେବବାଣୀ ସଂସ୍କୃତର ଗୁରୁ ଉଚ୍ଚାରଣ,
(ଅପୂର୍ବ ଶୁଣିଛି ଯାହା ସମଗ୍ର ବିଶ୍ୱରେ) ।
ସେସବୁ କଳ୍ପନା, ପ୍ରିୟ ଭଗିନି, ଯାଇଛି
ଉଭୟର ପ୍ରିୟଜନ ବିରହରେ ଆଜି,
ପ୍ରଭାତ-କାକର ପରି ସୂର୍ଯ୍ୟକରେ ଉଡ଼ି ।
ଆମେ ଦୁଇ ନାରୀପ୍ରାଣ ବିରାଟ ଧରାରେ
ପରିତ୍ୟକ୍ତ ବଂଚିବାକୁ ଏକାକୀ ଜୀବନ ।
ମରଣର କିଛି କାଳ ପୂର୍ବୁଁ ଦୁଇ ବଂଧୁ,
ପରସ୍ପରେ କରିଥିଲେ ଏଇ ଅନୁରୋଧ,

କିଛି ଯଦି ଘଟେ କା'ର, ଅନ୍ୟ ଯେହ୍ନେ ତା'ର
ପ୍ରିୟାରେ ସଂବାଦ ଖାଲି ଦେବେ ପଠିଆଇ,
ପ୍ରିୟଜନ ବରିଅଛି ମରଣ, ଯେପରି
ପ୍ରିୟା କା'ର, ନାହିଁ ହେବ ଲଜ୍ଜିତ କିଞ୍ଚିତେ ।

''ହେ ଭଗିନି, ଦୁଇ ବଂଧୁ ଦୁଇ ବୀର ସମ
ଆମଠାରୁ ହୋଇଗଲେ ଦୂରେ ଅନ୍ତରିତ,
ତୁମକୁ ପଠାଇବାର ସଂବାଦ ଗୋ ତେଣୁ
ପଡ଼ିଲା ତମର ଏଇ ଦୂର ବିଦେଶିନୀ
ଭଗିନୀର ଦାୟିତ୍ୱରେ । ସର୍ବଗୁଣବତୀ
ତମେ ଗୋ, ଶୁଣିଛି ମୁହିଁ, ଜୀବନରେ କେବେ
ତୁମକୁ ଦି'ଚାରି ଦିନ ଦେଖି ଯଦି ପାରେ
ସେହି ହେବ ମୋର ଏହି ଜନ୍ମ ସାର୍ଥକତା ।

''ଦୀର୍ଘ ଅତି ହେଲାଣି ଏ ଆଦ୍ୟ ପତ୍ର ମୋର,
ବିଦାୟ ମୁଁ ନିଏ ତେବେ । ପଳାତକ ମୁହିଁ
ଦେଶହୀନ, ଗୃହହୀନ, ବନ୍ଧୁଜନହୀନ;
ବିରାଟ ଧରଣୀପୃଷ୍ଠେ ଏକାନ୍ତ ଏକାକୀ
ଆଜି ମୁହିଁ । ଏକମାତ୍ର ସାନ୍ତ୍ୱନା ଭଗିନି,
ମୋ ଦେଶର ଲକ୍ଷ ଲକ୍ଷ ନରନାରୀ ମଧ
ସମଦଶାଗ୍ରସ୍ତ । ସମ ଦୁଃଖ, ଦୁଃଖ ନୁହେଁ;
ଦୁଃସମ୍ବାଦ ପ୍ରେରି, ତବ ଶାନ୍ତି-ସୁଖମୟ
ସଂସାରେ ଆଣିଲି ଯାହା ବିକ୍ଷୋଭ, ଭଗିନି,
ସେଥିପାଇଁ ଘୋର ଦୁଃଖ । ଅନ୍ତରର କ୍ଷମା-
ଭିକ୍ଷା କରି ତମଠାରୁ ନିଏଁ ମୁଁ ବିଦାୟ ।''

## [ ଦଶମ ସର୍ଗ ]

ସପ୍ତାହେକ କାଳ ମିତ୍ରା ପ୍ରିୟ-ମୃତ୍ୟୁ-ଦୁଃଖେ
ଅଭିଭୂତ ହୋଇ ରହେ, ବନ୍ୟାଜଳସ୍ରୋତେ
ଅଭିଭୂତ ହୁଏ ଯେହ୍ନେ ଶ୍ରାବଣ କେଦାରେ
ତରୁଣ ଧାନ୍ୟର ତନୁ । ନିର୍ବାକ, ସଂରୁଦ୍ଧ

ଗଭୀର ସେ ଦୁଃଖ, ନିଜ ଅନ୍ତରରେ ଚାପି
ନିଜର ଚିନ୍ତାର ରାଜ୍ୟେ ନିବେଶିତ ଏକା,
ଚଳାଚଳେ ହେଲା ସଂଧ୍ୟା ଅମେଘ ଗଗନେ
ଗଣ-ଭ୍ରଷ୍ଟ ନୀଡ଼ାନ୍ୱେଷୀ ପକ୍ଷୀ ଏକ ସମ ।
ସ୍ୱାମୀ ମହାନନ୍ଦ ଆଉ ମିସି ବାଟସନ୍,
ପୁଣି ମାଲକମ୍, ନିଜ ନିଜ କକ୍ଷେ ବସି
ଗଭୀର ଅସ୍ୱସ୍ତିକର ସେହି ପରିବେଶେ
ଦେଖୁଥାନ୍ତି ଖାଲି ନୀରବରେ ମିତ୍ରା-ଗତି ।
ସାହସ କାହାରି ନାହିଁ ଥିଲା ପଚାରିବେ
ପଦେ ପ୍ରଶ୍ନ, ଅବା ଦେବେ ସାନ୍ତ୍ୱନା ଟିକିଏ
ବାଲୁକା ଉତପ୍ତ ହେଲେ, ଉପୁଜାଇଥାଏ
ଯେପରି ପରମ ଭୟ ପଥିକ-ଚରଣେ ।

ସପ୍ତାହକ ପରେ ଦିନେ ପ୍ରତ୍ୟୁଷରୁ ସ୍ନାନ
ସାରି, ପ୍ରଲମ୍ବିତ କରି ଉନ୍ମୁକ୍ତ କୁନ୍ତଳ
ପୃଷ୍ଠେ ତା'ର, ପରିଧାୟି ଶୁଭ୍ର ବସ୍ତ୍ର ଖାଲି,
ଶୁଚିତାର ସୁଚିତ୍ରିତ ପ୍ରତିମା ପରାଏ,
ଡାକିନେଲା ମହାନନ୍ଦେ, ପୁଣି ମାଲକମେ
ନିଜ କକ୍ଷେ, ବସାଇଲା ଆସନେ ସେମାନେ;
ତା'ପରେ ସନ୍ନ୍ୟାସୀ ମହାନନ୍ଦଙ୍କ ସମ୍ମୁଖେ
ନତଜାନୁ ହୋଇ କହେ ବାଣୀ ଗଦ୍‌ଗଦ—
''କକା, ତମେ ଆଜି ମୋର ପିତା ଓ ଜନନୀ,—
ଦ୍ୱିତୀୟରେ ତତ୍ତ୍ୱଦ୍ରଷ୍ଟା ଯୋଗୀ, ଋଷିରୂପେ,
ଲୋକ-ଗୁରୁ ତମେ ଆଜି । ତମେ ଓ ମିସି-ମା'
ଦୁହେଁ ବଢ଼ାଇଛ'ମତେ ରାଜପୁତ୍ରୀ ସମ,
ଜୀବନରେ ଦୁଃଖ କିସ ଜାଣିବାକୁ ମତେ
ଦେଇ ନାହିଁ ଥିଲ ଏବ ଯାଏଁ; ଏବେ ଏଇ
ପ୍ରଥମ ଜୀବନେ ହେଲା ଦୁଃଖ ପରିଚୟ ।
ଦେଶେ ଓ ବିଦେଶେ ମତେ ଶ୍ରେଷ୍ଠ ବିଦ୍ୟାପୀଠେ
ପଢ଼ାଇ, କରିଛ ମୋର ବୁଦ୍ଧି ଓ ମାନସେ
ସୁନ୍ଦର, ସଂସ୍କୃତିବନ୍ତ, ଉଦାର, ମହତ ।

ତୁମର ପରଶେ ପୁଣି, କକା, ମୁଁ ପାଇଛି
ଜୀବନର ପୂର୍ଣ୍ଣତତ୍ତ୍ୱ । ପ୍ରାଚ୍ୟ ଓ ପ୍ରତୀଚ୍ୟ
ଦୁଇ ସଂସ୍କୃତିର ସୂକ୍ଷ୍ମ ସୁନ୍ଦର ନିର୍ଯାସେ
ମଧୁ ସାମଂଜସ୍ୟେ କରି ଏକୀଭୂତ ପ୍ରାଣେ,
ଭୋଗିବାକୁ ଥିଲା ମୋର ଅନ୍ତରବାସନା
ଧରାର ଜୀବନଟିକ । କକା, ସେ ବାସନା
ଅନ୍ତରୁ ଦେଲି ମୁଁ ପୋଛି । କଲି ଅନୁଭବ,
କକା, ତମେ ଯେ ଅଦୃଶ୍ୟ ଅଜ୍ଞେୟ ଶକ୍ତିର
ସର୍ବଦା ପ୍ରଚାରକର, ଯେଉଁ ମହାରଜ୍ଜୁ
ବ୍ୟୋମେ କୋଟି କୋଟି ସୌର ପରିବାର ସହ
ଆମ ପ୍ରତ୍ୟେକର କ୍ଷୁଦ୍ର ହେୟ ଜୀବନରେ
କରଇ ଚାଳିତ, ରହି ଅଦୃଶ୍ୟ ପଛରେ,
ଦେଇ କୌତୁକରେ ଆମ ପ୍ରାଣେ ଅହମିକା,
ଦେଖିବାର ମଜା,—କକା, ସେହି ସେ ଶକତି
ଅନୁଭବ କଲି ମୁହିଁ, ଯେହ୍ନେ କକା ମୋର
ଜୀବନର ସ୍ରୋତ ଆପେ ଦେଲେ ବଦଳାଇ,
ନୃତ୍ୟ, ଗୀତ, ଚିତ୍ର, ବାଦ୍ୟ, ବିଦ୍ୟା, ବିଳାସର
ଜୀବନ ମୋ ପାଇଁ ନୁହେଁ, କରେ ଅନୁଭବ,
ଦାଂପତ୍ୟର ଦୈନନ୍ଦିନ କ୍ଷୁଦ୍ର ଶାନ୍ତିମୟ
ନୀଡ଼ ମୋ ଜଗତ୍ ନୁହେଁ । ମୋ ଜୀବନ, କକା,
ବର୍ତ୍ତମାନଠାରୁ ହେବ ଝଡ଼-ବତାସର,
ବିଦ୍ୟୁତ୍-ବ୍ୟାକୁଳ ଘୋର ପ୍ରାବୃଟ ରାତ୍ରିର
ପ୍ରଳୟ ବର୍ଷଣ, ଅବା ସେ ରାତ୍ରି ପ୍ରଭାତେ,
ସମୁଜ୍ଜ୍ୱଳ ସୌରକର ତଳେ ରାଜ୍ୟଧ୍ୱଂସି
ଦୁଇକୂଳ ଉତ୍ପ୍ଲାବିନୀ, ବନ୍ୟା ଭଇରବୀ ।
ଆଜିଠାରୁ କକା, ମୋର ଜୀବନ ଅଶାନ୍ତ
ସଂଗ୍ରାମ-ବିକ୍ଷୁବ୍ଧ, ରୁକ୍ଷ, ଅଗ୍ନିକ୍ରୀଡ଼ାମୟ ।''

କହି ଏହା ବିଶ୍ୱମିତ୍ରା ମୁଖ ନତ କରି
ବିଳପିଲା ଭାବାବେଗେ, ଦୁଇ ନୟନରେ
ଦୁଇ ତା'ର ସ୍ୱର୍ଣ୍ଣ-ପଦ୍ମ-କୋରକ ପରାଏ
କୋମଳ ପାପୁଲି ଦେଇ ଲୁଚାଇ ସରମେ ।

ସଦ୍ୟସ୍ନାତ ଚାରୁ କୃଷ୍ଣ କୁଞ୍ଚିତ ତା' କେଶ
ଗୋଟିଏ ପ୍ରଦୀପ, ଚଉପାଶୁ ଅନ୍ଧକାର
ବେଢ଼ି ବଢ଼ାଇଲା ପରି ଦୀପର ମହିମା,
ବଢ଼ାଇଲେ ତା ମୁଖର ନୂତନ ସୁଷମା,
ମେଘ-ପରିବେଶ ଯେହ୍ନେ ଚନ୍ଦ୍ରମଣ୍ଡଳର ।

ସ୍ୱାମୀ ମହାନନ୍ଦ ମିତ୍ରା ଦୁଇକର, ତାର
ନୟନୁ ଓଟାରିନେଇ, ଟେକି ନେଇ ତଳୁ
ପାଶେ ବସାଇଲେ ଯତ୍ନେ, ପିଠିରେ, ଓଠରେ
ହାତମାରି, ଋଷିପ୍ରାଣ-କଲ୍ୟାଣ-ପିହିତ
ସ୍ନିଗ୍ଧ ସ୍ନେହ-ଦରଦର ବାଣୀରେ କହିଲେ—
''କାହିଁକି ବିଳାପ ମା'ଗୋ ? କିପାଁ ଏତେ ଦୁଃଖ ?
ଆମେ ସବୁ ଅଛୁ ପରା ? ତୋ ପ୍ରାଣର ଦୁଃଖ
ଆମେ ସବୁ ବାଣ୍ଟିନେବା ପାଇଁ ଅଛୁ ପରା,
ଅଛନ୍ତି ପୁଣି ମା' ତୋର ପିତା-ପ୍ରତିଷ୍ଠିତ-
କଲୋନିର ବୃଦ୍ଧ ଯୁବା ସହସ୍ର ସହସ୍ର,
ଅଛି ପୁଣି ସାରା ଜାତି, ଯା'ର ଅନ୍ତସ୍ଥଳେ
ତୋ ପିତା-ମାତାର ନାମ ଏବେ ବି ପୂଜିତ ।
ତୁ ପୁଣି ପ୍ରକୃତିଦତ୍ତ ଅଖିଳ ଗୁଣରେ
ବିମଣ୍ଡିତା । ଆମେ ତୋର ଅଭିଭାବକିଏ,
ଏଇ କେତେ ଜଣ ଆଶା କରି ବସିଛୁ ମା',
ଏ ଦେଶରେ ତୁ'ଇ ପୁଣି ତୋ ପିତା-ମାତାର
ସ୍ଥାନ ତୁ ପୂରଣ କରି ଜୀବନକୁ ତୋର
ଦେବୁ ପୂର୍ଣ୍ଣ କୃତାର୍ଥତା, ପ୍ରତିନିଧି ତୋର
ସଂସାର-ନିୟମେ ଛାଡ଼ି, ପୁଣି ତୋ ସମୟେ
ନେବୁ ପୃଥିବୀରୁ ଦିନେ ବିଦାୟ ସହାସ୍ୟେ ।
କାନ୍ଦନା ଧନଟି ମୋର, ସନ୍ନ୍ୟାସୀ-ଜୀବନେ
ତୁ'ଇ ମୋର ଏକମାତ୍ର ଡୋର ଏ ସଂସାରେ;
କେବଳ ତୋହରି ଲାଗି ହିମାଳୟ ତେଜି
ଆସିଛି ମୁଁ ବାରମ୍ବାର ନିମ୍ନରେ ଓହ୍ଲାଇ ।
ତୋ ଆଖିର ଲୁହ ତୋହଠାରୁ ମୋତେ, ଧନ,
ଅଧିକ ଦାହକ । ତୁନି ହୁଅ ରେ ସଙ୍ଗାଳି,

କଥା କହ ପ୍ରାଣ ଖୋଲି । କିଛି ତ ଘଟିନି ।
କାହିଁକି ଆଶଂକା ତୋର ? କିପାଇଁ ଜୀବନ
ହେବ ତୋର ଆଜିଠାରୁ ରୁକ୍ଷ, ଦୁଃଖମୟ ?
ତୁନି ହୁଅ, କହ କଥା ।''

ଆଖି ପୋଛିଦେଇ,
ତୁନି ହୋଇ ବିଶ୍ୱମିତ୍ରା, ବୃଦ୍ଧ ତରୁକାଣ୍ଡେ
ନମନୀୟ ଲତା ପରି ନଇଁପଡ଼ି ଲୋଳେ
କକାର ଗୈରିକ ବସ୍ତ୍ର ପ୍ରସାରିତ ସ୍କନ୍ଧେ
ତା ମନୋଜ୍ଞ, ଦକ୍ଷ ହସ୍ତ ଲମ୍ୱାଇ ଲଳିତେ
ପୁଣି ତା କକାର ଆର ସ୍କନ୍ଧେ ସ୍ନେହଭରେ
କହେ ଧୀରେ ଗୁଞ୍ଜନେ ସେ—

''ଶୁଣ ପ୍ରିୟ କକା,
ଗଉରବମୟ ମୋର ପିତାମାତାଙ୍କର
ପଦଚିହ୍ନ ଅନୁସରିବାର ପାଇଁ ସିନା
ମୋର ଏ ପ୍ରତିଜ୍ଞା, ମତେ ଅନ୍ୟ ନାହିଁ ବୁଝ ।
ତାଙ୍କରି ଆଦର୍ଶ ପ୍ରାଣେ ରଖିବି ବଞ୍ଚାଇ
ଅକ୍ଷୁଣ୍ଣ, ଚିନ୍ତାରେ କର୍ମେ ଏଇ ଅଭିପ୍ରାୟେ,
ବିଧାତା ଯେପରି ମତେ କରିଲେ ସଂକେତ,
ଅନ୍ୟ ପନ୍ଥା ରୋଧ କରି । ସେପିଲକୋ ସାଥେ
ସେ ପନ୍ଥା ମୋ ମାନଚିତ୍ରୁ ଯାଇଅଛି ଲିଭି ।
ବର୍ତ୍ତମାନ ଅବଶିଷ୍ଟ ସାମାନ୍ୟ ଜୀବନ
କେବଳହିଁ ଦେଶ, ଜାତି, ମାନବସେବାରେ
ନିୟୋଜିତ ହେବ ଯେହ୍ନେ, ଦିଅ ଆଶୀର୍ବାଦ ।
କିଛି ମୋର ଦୁଃଖ ନାହିଁ । ଚିନ୍ତା ନାହିଁ କର
କକା ମୋର ଲାଗି ତମେ । କରୁଣା, କମଳ
ଜନକ-ଜନନୀ ଯା'ର, ତମେ ଯା'ର କକା,
ସେପିଲକୋ ଯା ପ୍ରଣୟୀ, ବନ୍ଧୁ ମାଲ୍କମ୍,
ମିସି-ମା' ଯାହାର ଧାତ୍ରୀ, ଏ ଜଗତେ ତା'ର
କିବା ଦୁଃଖ ଥାଇପାରେ ? କିନ୍ତୁ ଏ ଭାଗ୍ୟର
ଯୋଗ୍ୟ ପରିଣତି ନୁହେଁ ଜୀବ ଗ୍ରାମ ପରି
ଆଉ ଏକ ଜଣ ସାଥେ ଦ୍ୱନ୍ଦ୍ୱ ସମାସରେ

ନିଜକୁ ଅଛେଦ୍ୟ ରୂପେ କରି ଶୃଙ୍ଖଳିତ
କ୍ଷୁଦ୍ର, ସୀମାବଦ୍ଧ, ସ୍ୱାର୍ଥ-ନଡ଼ା-ତୃଣେ ଗଢ଼ା
ଛୋଟ ଏକ ନୀଡ଼େ ଯାପିବାର ଜୀବନଟା
ଦାଂପତ୍ୟର ଛଦ୍ମ ନାମେ । ଜନକ-ଜନନୀ
କାହିଁକି ମୋ ନାମ ଦେଇଥିଲେ ବିଶ୍ୱମିତ୍ରା ?
ଏପର୍ଯ୍ୟନ୍ତ କାହିଁ ସେହି ନାମ-ସାର୍ଥକତା
ମୋର ଏହି ଅପଦାର୍ଥ ଜୀବନରେ, କକା ?
ମତେଦିଅ ମୁକ୍ତକରି, ସମଗ୍ର ବିଶ୍ୱରେ
ମିଶାଏ ମୋ କ୍ଷୁଦ୍ର ସତ୍ତା, ଜଣକ ପାଇଁରେ
ନ ବଂଚି ବଂଚିବି ମୁହିଁ ଧରାର ନିଖିଳ
ମାନବ-କଲ୍ୟାଣ ପାଇଁ, ଯେ ମହାଜୀବନ
ବଞ୍ଚିଥିଲେ ବୁଦ୍ଧ, ଖ୍ରୀଷ୍ଟ, ପୁଣି ଆମ ଆଗେ
ବାପୁଜୀ, ପରମ-ପୁତ୍ର ଧରା-ଜନନୀର ।
ଯେ ଜୀବନ ପୁଣି ତାଙ୍କ କ୍ଷୁଦ୍ର ଶକ୍ତିମତେ,
ମୋ ପିତା, ଜନନୀ ବଂଚିବାକୁ କରିଥିଲେ
ଚେଷ୍ଟା ନିଜ ଜୀବନରେ; ସେହି ଜୀବନର
ଦୁଃଖାର୍ତ୍ତ ଐଶ୍ୱର୍ଯ୍ୟ, ସ୍ୱାଦ, ଚାହୁଁଛି ମୁଁ କକା !''

ଏହା କହି ମହାନନ୍ଦ ପାଶ ଛାଡ଼ିଦେଇ
କେଶଜାଳ ପୃଷ୍ଠଦେଶେ କରିଣ ସଂବୃତ,
ପ୍ରାଚୀତଟେ ମେଘାବୃତ ଉଷା ସମ, ଅବା
ଶ୍ୟାମଦଳାବୃତ ସ୍ଫୁଟ କେତକୀର ପରି,
ବିଶ୍ୱମିତ୍ରା ହୋଇ ଠିଆ, ଘୁଞ୍ଚିଯାଇ, ଟିକେ
ମାଲକମ୍ ପାଶେ ଯାଇ, କୋମଳ ସୋହାଗେ
ତା'ର ଦକ୍ଷ କର ଧରି, କହଇ ସୁନ୍ଦରୀ—
''ପ୍ରିୟ ମାଲକମ୍ ମୋର, ଆଶାକରେ ଭାଇ,
ମୋ କର୍ମରେ ବୁଝିବନି ମନ୍ଦ ରଙ୍ଗ ଦେଇ ।
ତମ ପ୍ରତି କେଉଁ ଦିନ ଛଦ୍ମ ବ୍ୟବହାର
ଦେଖାଇନି ପ୍ରିୟ ବନ୍ଧୁ ! ପ୍ରିୟଜନ ହୋଇ
ତମେ ଏ ଅନ୍ତରେ ରହିଥିବ ଚିରଦିନ ।
ବିବାହିତ ଜୀବନରେ କଳ୍ପିତ ମାଧୁର୍ଯ୍ୟ
ଦୈନନ୍ଦିନ ସାଧନାରେ ସଞ୍ଚି ଭୋଗିବାର,

ଅଙ୍ଗସ୍ତ୍ର, ଦୂଷକର ଚେଷ୍ଟା, ନୁହେଁ ପନ୍ଥା ମୋର;
ନ ଭାବିବ କିଛି ମନେ । କିନ୍ତୁ ତୁମେ ଯଦି
ପ୍ରକୃତରେ ମତେ କେବେ ପାଇଥାଅ ଭଲ,
ନବ ଜୀବନର ଏଇ ନୂତନ ପନ୍ଥାରେ
ହୋଇ କି ନ ପାର ତୁମେ ଆଦ୍ୟ ସହକର୍ମୀ ?

''ହିଂସାର ଅୟୁତ ନାଗ ୟୁରୋପୁ ବାହାରି
ସମଗ୍ର ବିଶ୍ୱରେ ଆଜି ଯାଉଛି କରିବ
ଦଂଶନ; ସେ ବିଷେ ଧରା ନିଖିଳ ମାନବ
ଘାରି ହୋଇ ଛଟପଟେ ଛାଡ଼ିବ ଜୀବନ ।
ସମ୍ମୁଖୀନ ଧରା ଆଜି ଘୋର ସଂକଟର
ବିଶେଷତଃ ତମ ଆମେରିକା ଓ ଇଉରୋପେ ।

''ଏ କାଳେ ଖୋଜିବା ନିଜ ଛୋଟ ତୁଚ୍ଛ ସୁଖ
ବିବାହରେ, ବାୟା ପକ୍ଷୀ ପରି ବସା ପାତି,
ସୁନ୍ଦର ଦିଶିବ ବନ୍ଧୁ, ଅବା କି ବିବେକ
ଆମର ରହିବ ଶାନ୍ତ ? ବନ୍ଧୁ ସେପିଲକୋ,
ହଙ୍ଗେରୀ ମାଟିରେ ପ୍ରାଣବଳି ଦେଇଗଲା
ନରତ୍ୱର ଜୟ ପାଇଁ, ସତ୍ୟ ନ୍ୟାୟ ପାଇଁ,
ମାନବିକ ମର୍ଯ୍ୟାଦାର ବେଦଗାନ ଗାଇ,
ଜୀବନେ ଦେଖାଇଦେଇ ଖାଣ୍ଟି ମନୁଷ୍ୟର
ନାହିଁ କେହ୍ନେ ଦେଶ, କାଳ, ଗୋଷ୍ଠୀ, ଭୌଗୋଳିକ
କ୍ଷୁଦ୍ର ସୀମା ପ୍ରତି ମୋହ । ଚାଲ ମାଲକମ୍ !
ଆମେ ଯିବା ମାନବର ସେ ଉଦାର ପଥେ ।

''ବିଜ୍ଞାନ କଲାଣି ଯାହା ବିରାଟ ଧରାରେ
ଗୋଟିଏ କୁଟୁମ୍ବ ପରି,—ସେ କେବଳ ବାହ୍ୟ ।
ମନୁଷ୍ୟର ନବଯୁଗ ଆରମ୍ଭିବ ଯେବେ
ହିଂସା, କୂଟନୀତି, ଦଳ, ଗୋଷ୍ଠୀ, ଧର୍ମ, ଭାଷା
ଏ ସବୁ ଉପରେ ଉଠି ସମଗ୍ର ମାନବ-
ପ୍ରାଣେ ପ୍ରତିଷ୍ଠିତ ହେବ, ବିଶ୍ୱ-କୁଟୁମ୍ବିତା,
ଏକ ଦେଶ ଏ ପୃଥିବୀ; ଏକ ବିଶ୍ୱପିତା,
ସମଗ୍ର ମାନବଜାତି ଭାଇ-ଭଗିନୀଏ ।
ଚାଲ ଯିବା ମାଲକମ୍ ହିଂସ୍ର ଇଉରୋପରେ,

ବୁଦାପେଷ୍ଟେ, ପ୍ରାହା ଆଉ ମସ୍କୋଭ, ଲଣ୍ଡନେ,
ବୁଦ୍ଧ-ଗାନ୍ଧୀ ମହାବାଣୀ, ଅହିଂସାର ବାଣୀ,
—ଭାରତୀୟ ସଂସ୍କୃତିର ମହା ଆବିଷ୍କାର,
ମାନବିକ ସତ୍ୟତାରେ, —ସେହି ବାଣୀ, ବନ୍ଧୁ,
କରିବା ପ୍ରଚାର, ଜୀବନର ସବୁ ଦେଇ
ଆବଶ୍ୟକ ହେଲେ ଦେଇ ଏ ଆମ ଜୀବନ ।''

ଏକାଳେ ସେ ପ୍ରକୋଷ୍ଠରେ ମିସି ବାଟସନ୍
ପ୍ରବେଶିଲେ ଧୀରେ ଧୀରେ;—ଅତିବୃଦ୍ଧା ଏବେ,
ଗତି ଅସମ୍ଭବ ଯଷ୍ଟି-ସହାୟତା ବିନା,
ନାସିକାଗ୍ରେ ପ୍ରତିଚକ୍ଷୁ; ସହସ୍ର ଲୋଳରେ
ବୟସ ତା' ମୁଦ୍ରା ଆଙ୍କି ବଦନରେ ତାଙ୍କ
ଦେଲାଣି ଗୌରବମୟ ଲେପ ବାର୍ଦ୍ଧକ୍ୟର;
ସ୍ୱଚ୍ଛ, ଶୁଭ୍ରକେଶପୁଞ୍ଜ, ଉଡ଼େ ବାୟୁଭରେ ।
ଆସ୍ତେ ଆସ୍ତେ ଘରେ ପଶୁଁ ଯଷ୍ଟି ମାରି ମାରି
ବିଶ୍ୱମିତ୍ରା ସଙ୍ଗେ ସଙ୍ଗେ ମାଲକମେ ତେଜି,
ଧାଇଁଯାଇ ଆଜନମ ସଙ୍ଗିନୀରେ ତା'ର
ନିବିଡ଼ ଆଶ୍ଳେଷେ ଘେରି କଣ୍ଠଦେଶ ତାର
ବେଢ଼ାଇ ତା ସୁଲଳିତ ସ୍ୱର୍ଣ୍ଣ ବାହୁଯୁଗେ
ମୁଖ ରଖି ବକ୍ଷେ ତାର ଡାକି ଡାକି ଖାଲି
'କାକୀ', 'କାକୀ', ବିଳପିଲା କୁହୁଳି କୁହୁଳି ।
ବୃଦ୍ଧା ସେ ଉଦାରହୃଦା ମାର୍କିନୀ ମହିଳା,
ତା'ର ପିତୃ-ହନ୍ତା-କନ୍ୟା ଭାରତୀୟା ସେହି
ତରୁଣୀରେ,—ଯାହାକୁ ତା' ସମଗ୍ର ପ୍ରାଣର
ସ୍ନେହଧାରା ଦେଇଅଛି ନିଗାଡ଼ି ତା ବକ୍ଷ—
ବୋଧିଲା ଅସ୍ଫୁଟ ସ୍ନେହ-ନିବିଡ଼ ଗୁଞ୍ଜନେ
ପଠିରେ କେଶରେ ତାର ବୁଲାଇ ଆଙ୍ଗୁଳି ।
ସେହି ମହନୀୟ ଦୃଶ୍ୟ ଦେଖୁଥିଲେ ପୁଣି,
ପାଶେ ଏକ ଭାରତୀୟ ଯୋଗୀ, ଆର ପାଖେ
ଧନିକ ଇଂରେଜ,—ସର୍ବେ ଗୁନ୍ଥା ଏକସୂତ୍ରେ—
ସେହି ସ୍ୱର୍ଣ୍ଣ ସୂତ୍ର, ଯା'ର ନାମ ମନୁଷ୍ୟତା ।

———

## ପରିଶିଷ୍ଟ-୧

**୧ । ଉପେକ୍ଷିତା (ଖଣ୍ଡକାବ୍ୟ)**

(କ) ସହକାର ୮/୧୨, ଭାଦ୍ର ୧୩୩୫ (ଅଗଷ୍ଟ, ୧୯୨୮)

(ଖ) ସହକାର ୯/୧, ଆଶ୍ୱିନ ୧୩୩୬ (ସେପ୍ଟେମ୍ବର ୧୯୨୮)

(ଗ) ସହକାର ୯/୨, କାର୍ତ୍ତିକ ୧୩୩୬ (ଅକ୍ଟୋବର ୧୯୨୮)

(ଘ) ସେଦିନର କବିତା (୧୯୬୦)ର ପୃ.୪୯-୭୦ରେ ଉପରୋକ୍ତ ତିନି ଅଂଶ ପୁସ୍ତକ ଆକାରରେ ପ୍ରକାଶିତ ।

**୨ । ନିକ୍ୱଣ (ଖଣ୍ଡକାବ୍ୟ)**

**'ସେଦିନର କବିତା'**ରେ (୧୯୬୦) ଏହା ପ୍ରଥମେ ପୁସ୍ତକ ଭାବରେ ପ୍ରକାଶ ଲାଭ କଲା । କିନ୍ତୁ କାବ୍ୟଟିର ବିଭିନ୍ନ ଅଂଶର ରଚନାକାଳ ନିମ୍ନ କ୍ରମରେ ରହିଛି— ନିକ୍ୱଣ (୧) ୨୦-୩-୧୯୨୭, ନିକ୍ୱଣ (୨ ଓ ୩) ୨୯-୩-୧୯୨୭, ନିକ୍ୱଣ (୪) ୩୦-୩-୧୯୨୭, ନିକ୍ୱଣ (୫,୬,୭) ୨୧-୩-୧୯୨୭, ନିକ୍ୱଣ (୮) ୨୩-୩-୧୯୨୭, ନିକ୍ୱଣ (୯) ୨୪-୩-୧୯୨୭, ନିକ୍ୱଣ (୧୦ ଓ ୧୧) ୨୫-୩-୧୯୨୭, ନିକ୍ୱଣ (୧୨) ୨୬-୩-୧୯୨୭, ନିକ୍ୱଣ (୧୩ ଓ ୧୪) ୨୭-୩-୧୯୨୭, ନିକ୍ୱଣ (୧୫) ୨୮-୩-୧୯୨୭, ନିକ୍ୱଣ (୧୬) ୨୮-୩-୧୯୨୭ ।

**୩ । ଶୁଭଦୃଷ୍ଟି (ଖଣ୍ଡକାବ୍ୟ)**

(କ) ପ୍ରଥମ ପ୍ରକାଶ— ସହକାର ୧୧ ଭାଗ ୮ ଓ ୯ ସଂଖ୍ୟା, ମାର୍ଗଶିର-ପୌଷ ୧୩୩୮ (ନଭେମ୍ବର-ଡିସେମ୍ବର, ୧୯୩୦)

(ଖ) ହେମପୁଷ୍ପ (୧୯୩୫)ରେ 'ଶୁଭଦୃଷ୍ଟି', 'ତୀବ୍ରରାଗ' ଓ 'ପରିପାକ' ନାମରେ ତିନୋଟି ସ୍ୱତନ୍ତ୍ର କବିତା ଅଛି ।

(ଗ) ହେମପୁଷ୍ପରେ (୧୯୪୭) ବିଷୟବସ୍ତୁ ଅପରିବର୍ତ୍ତିତ ରହିଛି ଓ କାବ୍ୟଟି ତିନୋଟି ସର୍ଗରେ ବିଭକ୍ତ ହୋଇ ପ୍ରକାଶିତ ।

**୪ । ଛେମା (କାବ୍ୟ)**

(କ) ପ୍ରଥମ ପ୍ରକାଶ : ୧-୧-୧୯୪୭, କଟକ

(ଖ) ଦ୍ୱିତୀୟ ପ୍ରକାଶ : ୧-୧୧-୧୯୫୧
ପ୍ରକାଶକ : ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, ମୂଲ୍ୟ-ଏକଟଙ୍କା

(ଗ) ହେମା-କାବ୍ୟର ଉତ୍ସର୍ଗପତ୍ରରେ ଲେଖାଥିଲା–

ଯୌବନର ବନ୍ଧୁ, ପଲ୍ଲୀସେବକ ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା କରକମଳେଷୁ–
ଶ୍ରୀ ମାୟାଧର ମାନସିଂହ

(ଘ) ହେମା-କାବ୍ୟ ପ୍ରଥମ ପ୍ରକାଶନର ଭୂମିକାରେ କବି ଲେଖିଛନ୍ତି–

"ହେମା ପ୍ରାୟ ୧୦ ବର୍ଷ ତଳେ (୧୯୩୭) ଲେଖାହୋଇ ଅବହେଳିତ ଭାବରେ ପାଣ୍ଡୁଲିପିରେ ପଡ଼ିରହିଥିଲା । ଏହାର ପ୍ରଥମ ସର୍ଗର କିଛି ଅଂଶ 'ବୁଢା ଦଳେଇ' ନାମରେ 'ନବଭାରତ ୪/୧, ମିଥୁନ ୧୩୪୪ (ଜୁନ୍-୧୯୩୭) ପ୍ରକାଶ ପାଇଥିଲା ।"

ଏଇ ପ୍ରକାଶିତ କବିତାର ପାଦଟୀକାରେ ଲେଖାଅଛି- "ଲେଖକଙ୍କର ଅପ୍ରକାଶିତ 'ହେମା' କାବ୍ୟର ଅଂଶ ।"

(ଡ) ଏଇ କବିତାଟି ପୂନର୍ବାର 'ଆରତି' ୧/୬ ଓ ୧/୭, କାର୍ତ୍ତିକ ଓ ମାର୍ଗଶିର ୧୩୪୮) ଅକ୍ଟୋବର-ନଭେମ୍ବର, ୧୯୪୦) ଦୁଇଟି ସଂଖ୍ୟାରେ ପ୍ରକାଶିତ । ଏହାର ପ୍ରଥମ ସଂଖ୍ୟାରେ କବିତାର ଆରମ୍ଭରେ 'ନାୟିକା ପ୍ରତି' କବିତାଟି ଅଛି ଓ ପ୍ରଥମ ନିର୍ଦ୍ଦେଶ ଦିଆଯାଇଛି-ବର୍ଣ୍ଣିତ ବିଷୟ-ଦଳାଇ ଓ ତାଙ୍କର ଦୁଇ କନ୍ୟା । ଗଞ୍ଜାମ ଧନିକଙ୍କର ସେମାନଙ୍କ ପ୍ରତି ଆଗ୍ରହ । ପଦ୍ମାର ବିବାହ ଓ ମୃତ୍ୟୁ । କିଶୋରୀ ହେମାର ବୟସ୍କ ଧନିକଙ୍କ ସହ ବିବାହ ।" ପ୍ରକାଶିତ 'ହେମା' କାବ୍ୟ (୧୯୪୭)ରେ ଏଇ 'ନାୟିକା ପ୍ରତି' କବିତାଟି ନାହିଁ ।

(ଚ) (ଏହି କବିତାଟି ଗ୍ରନ୍ଥାବଳୀ ୧୯୬୪ରେ ନାହିଁ) ଆରତି ପ୍ରଥମ ବର୍ଷ, ଷଷ୍ଠ ସଂଖ୍ୟା, ମହାଳୟା-୧୯୪୮ରେ 'ନାୟିକା ପ୍ରତି' କବିତା–

ତୁମେ କି ଜାଣିବ ହେମା କବି, କବିତାରେ
ଚରିତ ତୁମରି ଲେଖି, ବିକଇ ସଂସାରେ ?
ପ୍ରଭାତୁ ନିଶୀଥ ଯାକେ ଶରମେ ଶରୀର
କ୍ଳାନ୍ତ କରି, ଆଖିକୋଣେ ମାରି ଆଖି ନୀର,
ନିରକ୍ଷରା, ଦୂର ଗ୍ରାମେ ଅଜ୍ଞାତ ଭୁବନେ
ଆପଣା ସଂସାର ପାଳି ନିଃସଙ୍ଗ ଜୀବନେ,
ଜଗତର ଅଜ୍ଞାତରେ ଯାଇଅଛ ଚାଲି
କାହାକୁ ବାଧିନି ତୁମ ଥାନ ହେବା ଖାଲି !
ଯେ କରପଲ୍ଲବ ଲଭି ପେଲବ ପୀଡ଼ନ
ପ୍ରିୟେ ଦେଇଥାନ୍ତା କେତେ ସ୍ୱର୍ଣ୍ଣ-ନିଧୁବନ,
ରୁକ୍ଷ, ରୂଢ଼ କରି ତାରେ ଜୀବ ପ୍ରୟୋଜନେ
ଜୀବନ ଯାପିଲ ନିଜ ଦରିଦ୍ର ଭୁବନେ ।
ସ୍ୱପ୍ନେ କି ଭାବିଛ କେବେ କାବ୍ୟ କବିତାରେ
ଗୁନ୍ଥା ହେବ ବ୍ୟଥାମୟ କଥା ତବ ବାରେ ?
ମୁଁ କିନ୍ତୁ ବାଛିଲି ତତେ ଛାଡ଼ି ରାଜରାଣୀ

ବ୍ୟଥାର ବାନ୍ଧବ ଯେଣୁ ଅଟେ ମୋର ବାଣୀ ।
ବ୍ୟଥାର ଗଞ୍ଜନ ସହି ଚରିତ୍ର-ଚନ୍ଦନ
ବାସିଉଠି ଲୋକେ କରେ ଭୁବନ-ରଞ୍ଜନ ।
ରୁଦ୍ଧ କରି ହୃଦ ମଧ୍ୟେ ଦୁଃଖ ଦାବଦାହ
ହାତ ପଛେ ପୋଛି ନେତ୍ରୁ ବ୍ୟଥାର ପ୍ରବାହ,
ନିରକ୍ଷରା ହେ ବାଳିକା, ଚରିତ୍ର ତୁମ୍ଭର
ଫୁଟିଲା ଯେପରି; ସତେ ସେପରି ସୁନ୍ଦର
ପ୍ରାଣ ପୁଷ୍ପ ଫୁଟେ କି ଗୋ, ଧନିକ ଭୁବନେ ?
ବିଜୁଳି ବିକଶେ ସିନା ଦୁର୍ଦ୍ଦିନ ଗଗନେ !
ତେଣୁ ସଖି, ବ୍ୟଥାତୁର କୁଟିରୁ ଓଟାରି
ଆଣୁଅଛି କବି ତତେ ଗାଇବା ବିଚାରି ।
ତୋ ଗନ୍ଧ ନ ଜାଣୁ ତୁହି, ଜାଣିବେ ତ ଜନେ
ଚନ୍ଦ୍ରକର ଲାଗେ ସିନା ପୃଥିବୀ ରଞ୍ଜନେ !
ଏହାପରେ ଜେମା କାବ୍ୟର ପ୍ରଥମ ସର୍ଗ ଆରମ୍ଭ ହୋଇଛି ।

(ଚ) 'ଆରତି' ପତ୍ରିକାରେ ମାନସିଂହ ଏହି କବିତା ସହିତ ଘୋଷଣା କରିଛନ୍ତି ଯେ—'ଜେମା' କାବ୍ୟର କିଛି ଅଂଶ ଏଥିପୂର୍ବରୁ ନବଭାରତ ପତ୍ରିକାରେ ବାହାରିଥିଲା । 'ଆରତି'ର ଏହି ସଂଖ୍ୟାଠାରୁ ସମୁଦାୟ କାବ୍ୟଟି କ୍ରମଶଃ ଆମୂଳଚୂଳ ପ୍ରକାଶିତ ହେବ । ସଂ.ଆ । (ମାତ୍ର ଦୁଇଟି ସଂଖ୍ୟାରେ ବାହାରି ପୁଣି ବନ୍ଦହୋଇଯାଇଥିଲା ।-ସଂ.ମା.ଗ୍ର.)

(ଛ) ପ୍ରଥମ ସଂସ୍କରଣ ଭୂମିକା

ପ୍ରାଚୀନ ଓଡ଼ିଆ ରୀତିରେ କାଳ୍ପନିକ ନାୟକ ନାୟିକାଙ୍କୁ ନେଇ କାବ୍ୟ ନ ଲେଖି, ଆମ ସମାଜରେ ଘଟୁଥିବା ଚାକ୍ଷୁସ ଘଟଣାକୁ ଅବଲମ୍ବନ କରି କାବ୍ୟ କିପରି ଲେଖାଯାଇପାରେ, 'ଜେମା' କାବ୍ୟଟି ତାହାର ଏକ ପରୀକ୍ଷା ମାତ୍ର । ପ୍ରାଚୀନ ଓ ଆଧୁନିକ ଓଡ଼ିଆ କାବ୍ୟମାନଙ୍କରେ ନାୟକ ନାୟିକା ରାଜପୁରୁଷ ଓ ଅଭିଜାତ ବଂଶର ଓ ସେମାନେ ଅସାଧାରଣକର୍ମନିପୁଣ । କିନ୍ତୁ 'ଜେମା'ର ଚରିତ୍ରଗୁଡ଼ିକ ପରିଚିତ ଓଡ଼ିଆ ପଲ୍ଲୀର ଜୀବ ଓ ସେମାନେ ଆମରିମାନଙ୍କ ପରି ସାମାନ୍ୟ କର୍ମୀ । ଗୋଟିଏ ନିରକ୍ଷରା ପଲ୍ଲୀବାସିନୀ ବାଳିକାର ମର୍ମ-କାହାଣୀ ହିଁ କାବ୍ୟର ପ୍ରଧାନ ଉପକରଣ ।

ଆଜିର ଓଡ଼ିଆ ଭାଷାର କବିତା ଓ କାବ୍ୟ ଏପରି ଭାବରେ ଲେଖାଯାଉଛି ଯେ ଆଜି ଭଞ୍ଜ ବା ଅଭିମନ୍ୟୁ ଯଦି ବଞ୍ଚିଆସନ୍ତେ, ତେବେ ସେମାନେ ଏ କାବ୍ୟ କବିତା ବୁଝିବା ଦୂରେ ଥାଉ, ପଢ଼ି ମଧ୍ୟ ପାରନ୍ତେ ନାହିଁ । ପ୍ରାୟ ଦଶବର୍ଷ ତଳେ ଏହି ଲେଖକ 'ପରଧର୍ମ ନାମକ ପ୍ରବନ୍ଧରେ ଓଡ଼ିଆ ଭାଷାର ଏହି ଦେଶାନ୍ତରକୁ ନାପସନ୍ଦ କରି ଏକ ପ୍ରବନ୍ଧ ଲେଖିଥିଲା । ତା'ର ଅନେକ ଆଲୋଚନା ଭିତରେ ଜଣେ ସମାଲୋଚକ ଏଇ କଥା କହିଥିଲେ ଯେ,

ଖାଣ୍ଟି ଓଡ଼ିଆ ରୀତିରେ ଯଦି ଆଧୁନିକ ଘଟଣାବଳି କାବ୍ୟ ଆକାରରେ ପ୍ରକାଶ ପାଇପାରେ ତାହା ପ୍ରଥମେ ଦୃଷ୍ଟାନ୍ତ ସ୍ୱରୂପ ଥୋଇବା ଉଚିତ ।

ଏ 'ଜେମା' କାବ୍ୟଟି ଏହି ଆହ୍ୱାନର ଫଳ । ଏହା ପ୍ରାୟ ଦଶବର୍ଷ ତଳେ ଲେଖାହୋଇ ଅବହେଳିତ ଭାବରେ ପାଣ୍ଡୁଲିପିରେ ପଡ଼ିରହିଥିଲା । ପ୍ରକାଶକଙ୍କ ଆଗ୍ରହ ଯୋଗୁହିଁ ଆଜି ତାହା ଲୋକଲୋଚନ ତଳେ ଠିଆହେବାକୁ ସାହସୀ ହୋଇଛି ।

କଟକ, ଲେଖକ

୧.୧.୧୯୪୭

(ଢ) ଜେମା (କାବ୍ୟ) ଦ୍ୱିତୀୟ ସଂସ୍କରଣର ଭୂମିକା-

'ଜେମା'ର ଦ୍ୱିତୀୟ ସଂସ୍କରଣ ଏତେ ଶୀଘ୍ର ହେବାରେ ମୁଁ ଯୁଗପତ୍ ବିସ୍ମିତ ଓ ଆଶାନ୍ୱିତ । ପାଠ୍ୟପୁସ୍ତକ ନ ହୋଇ ମଧ ତା' ହେଲେ ଏ ଦେଶରେ ଏପରି ଅପାଠ୍ୟ କାବ୍ୟ କବିତା ବିକ୍ରି ହେଉଚି !

ଇତି ମଧରେ ଜେମା କରୁଣ-ଘଟଣାଚକ୍ର ମଧରେ ଦିବାୟନେଇଛି । ସେହି ହତଭାଗିନୀ ବାଳିକା କେବେହେଲେ ଜାଣିନାହିଁ ଯେ ତାର ଗାଁର ଜଣେ, ତା'ର କ୍ଷୁଦ୍ର କରୁଣ ଜୀବନକୁ କାବ୍ୟ ଆକାରରେ ଦେଶରେ ପ୍ରଚାରକରିଛି । କରୁଣାମୟ ଈଶ୍ୱର ତା'ର ଆତ୍ମାକୁ ଅନ୍ତତଃ ସେପଟେ ହେଲେ ଶାନ୍ତି ପ୍ରଦାନ କରନ୍ତୁ । ଇତି ।

ସମ୍ବଲପୁର, ୧.୧୧.୧୯୫୧ ଲେଖକ

୫- ସାଧବଝିଅ (କାବ୍ୟ)

କାବ୍ୟରୂପରେ ପ୍ରକାଶ ପୂର୍ବରୁ, କବିତା ଆକାରରେ (୧୯୨୯, ୧୯୩୧, ୧୯୩୧ ଓ ୧୯୪୩ରେ) ବିଭିନ୍ନ ଅଂଶ ପ୍ରକାଶିତ ।

(କ) ଉତ୍କଳ ସାହିତ୍ୟ– ୩୩ ଭାଗ ୨ୟ ସଂଖ୍ୟା, ଜ୍ୟେଷ୍ଠ ୧୩୩୬, ପୃ-୭୩, ମାନସିଂହ ଗ୍ରନ୍ଥାବଳୀ (୧୯୬୪) ଦ୍ୱିତୀୟ ଭାଗ, ପୃ-୧୨୯ ପ୍ରଥମ ଅଂଶ ଅପରିବର୍ତ୍ତିତ ରହିଛି ।

(ଖ) ମାଲୁଣୀ (କବିତା) ସହକାର ୧୨ଶ ଭାଗ ୭ମ ସଂଖ୍ୟା କାର୍ତ୍ତିକ ୧୩୩୮ (ଅକ୍ଟୋବର, ୧୯୩୧) ପୃ-୬୪୨-୬୪୮ ।

(ଗ) ସାଧବ ପୁଅ (କବିତା) ସହକାର ୧୨ଶ ଭାଗ, ୮ମ ସଂଖ୍ୟା, ମାର୍ଗଶୀର ୧୩୩୮, ପୃ ୭୬୦-୬୨ । ଏହାର ଟିପ୍ପଣୀରେ ଲେଖାଅଛି– ''ସପ୍ତମ ସଂଖ୍ୟାରେ 'ମାଲୁଣୀ' କବିତାର ମାଲୁଣୀ ଯେଉଁ ସାଧବପୁଅକୁ ରାଜଦାଣ୍ଡରେ ଭେଟିବାର ଲେଖାଅଛି, ପାଠକମାନଙ୍କୁ ଅନୁରୋଧ, ଏହି କବିତାର ସାଧବପୁଅକୁ ସେହି ଲୋକ ବୋଲି ମନେକରିବେ । ବହୁତ ଦିନ ତଳେ ଉତ୍କଳସାହିତ୍ୟରେ ପ୍ରକାଶିତ, ଏଇ ଲେଖକର 'ସାଧବଝିଅ' ନାମକ କବିତାର ବିଳପନ୍ତୀ ତରୁଣୀ ନାୟିକା ଏଇ ସାଧବପୁଅର କାମ୍ୟବସ୍ତୁ ।

(ଘ) ମାଳାଗ୍ରହଣ (କବିତା) ଅକ୍ଟୋବର, ୧୯୪୩ ।

**(୬)କମଳାୟନ (ମହାକାବ୍ୟ)-୧୯୪୭**

ପ୍ରଥମ ସଂସ୍କରଣର ଭୂମିକା (୧୯୬୪, ଗ୍ରନ୍ଥାବଳୀରେ ରହିପାରିନାହିଁ ।)

ମୁଁ ଯେଉଁ ଯୁଗରେ ଜନ୍ମଗ୍ରହଣ କରିଛି, ସେ ଯୁଗର ଓ ଯେଉଁ ଜୀବନ ପ୍ରବାହ ସଙ୍ଗେ ମୋର ଚାକ୍ଷୁଷ ପରିଚୟ ଘଟିଛି, ତା'ର ପ୍ରତୀକ ସ୍ୱରୂପ ଏକ କାବ୍ୟ ଲେଖିବାର କଳ୍ପନା ବହୁବର୍ଷ ଧରି ମୁଁ କରିଆସିଛି । କେବେ ରାମଚନ୍ଦ୍ର ବାପାଙ୍କ ସତ୍ୟ ରକ୍ଷା ପାଇଁ ବଣକୁ ଯାଇଥିଲେ ଓ ସୀତା ନିଜର ସତୀତ୍ୱର ପରୀକ୍ଷା ନିଆଁରେ ପଶି ଦେଇଥିଲେ– ଏ ଘଟଣା ହୁଏତ ସେକାଳରେ ମଧ୍ୟ ଆଦୌ ଘଟିନଥାଇପାରେ; ହୁଏତ ସମସ୍ତଟା କେବଳ କବିକଳ୍ପନା । କିନ୍ତୁ ବର୍ତ୍ତମାନ କାଳରେ, ଏହା ଆଦର୍ଶ ବା କଳ୍ପନା ବା ସତ୍ୟ ଘଟଣା ଯାହାହେଉ ଏ ତା'ର କୌଣସି ଅର୍ଥ ଅଛି ବୋଲି ମନେହୁଏନାହିଁ । ଏକାଳରେ ସତୀତ୍ୱର ପରୀକ୍ଷା ପାଇଁ କେଉଁ ମୂର୍ଖ-ସ୍ୱାମୀ ସ୍ତ୍ରୀକୁ ନିଆଁରେ ପଶିବାକୁ କହିବ ? କେଉଁ ଭାଇ ବା ଲକ୍ଷ୍ମଣ ପରି ବଡ଼ଭାଇର ଭୃତ୍ୟ ହୋଇ ରହିବାକୁ ପସନ୍ଦକରିବ ?

ତେବେ କ'ଣ ଆମେ ଯେଉଁ ସମାଜରେ ଓ ଯେଉଁ କାଳରେ ବଞ୍ଚିଛୁ, ସେଥିରେ ନାରୀର ପ୍ରେମ ବା ସତୀତ୍ୱର, ଭାଇ-ଭାଇର ମୈତ୍ରୀର, ପିତା-ପୁତ୍ରର କର୍ତ୍ତବ୍ୟର ସ୍ଥାନ ନାହିଁ ? ଯାହା ବା ଅଛି, ତାହା କ'ଣ କାବ୍ୟ କବିତାରେ ପ୍ରକାଶିତ ହେବାର ଯୋଗ୍ୟ ବିବେଚିତ ହେବ ନାହିଁ ? ନିଆଁରେ ପଶି ପୋଡ଼ିଲେଇ କେବଳ ନାରୀ ସତୀବୋଲି ପରିଚିତ ହେବ– ତା'ର ଅନ୍ୟ ମାପକାଠି ନାହିଁ ? କେବଳ ଅସାଧାରଣ, ଚମକପ୍ରଦ କର୍ମ ସଂପାଦନ କଲେଇ କି ଲୋକ ବୀର ବୋଲି ଧରାଯିବ ? ଆମର ଆଡ଼ମ୍ବରହୀନ ଦୈନନ୍ଦିନ ଜୀବନର କ୍ଷୁଦ୍ର କ୍ଷୁଦ୍ର କର୍ମରାଜୀ ଭିତରେ କି ମାନବିକ ମହତ୍ତ୍ୱର ପରିସ୍ଫୁଟନ ପାଇଁ ଅବକାଶ ନାହିଁ ?

ଲେଖକ ମନେକରେ ଯେ, ଆମର ଦୈନନ୍ଦିନ ସାଧାରଣ ଜୀବନ ହିଁ କାବ୍ୟର ପ୍ରକୃଷ୍ଟ ଓ ପ୍ରକୃତ ଉପାଦାନ । ଏହି ଜୀବନର ନିରାଟ ବାସ୍ତବତାକୁ ଆମେ କଳ୍ପନାର ବୋଳ ଦେଇ ଯେତିକି ଅଳଂକୃତ କରିବାକୁ ଯିବା, ତାହା ସେତିକି ପରିମାଣରେ ସମାଜର କ୍ଷତିକାରକ । ରାମ-ଲକ୍ଷ୍ମଣଙ୍କୁ ଆମେ ପୂଜାକରୁଁ; କିନ୍ତୁ ଭ୍ରାତୃବିବାଦରେ ଭାରତବର୍ଷର ପ୍ରତି ଘର କ୍ଷତବିକ୍ଷତ । କାରଣ, ରାମ-ଲକ୍ଷ୍ମଣର ଆଦର୍ଶ ଅସ୍ୱାଭାବିକ, ବା ଅସ୍ୱାଭାବିକ ନହେଲେ ବି ଦୁଷ୍କରଣୀୟ ।

ତେଣୁ ମୁଁ ଏହି 'କମଳାୟନ' କାବ୍ୟକୁ ନୂତନ ଉପାଦାନରେ ରଚନାକରି ପାଠକମାନଙ୍କ ସମ୍ମୁଖରେ ପରିବେଷଣ କରୁଛି । ଏହାର ନାୟକ ଆମ ପରିଚିତ ସମାଜର ସାଧାରଣ ନରନାରୀ, ସେମାନେ ଭଗବାନଙ୍କ ଅବତାର ନୁହଁନ୍ତି–ବା କାବ୍ୟ-ପୁରାଣର ନାୟକ ନାୟିକାମାନେ କଥାକଥାକେ ଯେପରି ଦେବଦେବୀଙ୍କ ଅନୁଗ୍ରହ ଓ ସାହଚର୍ଯ୍ୟ ପାଆନ୍ତି, ସେମାନେ ତାହା ପାଉନାହାନ୍ତି । ସେମାନେ ଆମରି ପରି ଦୁଃଖକଷ୍ଟ-

ଭୋଗୀ ସାମାଜିକ ମନୁଷ୍ୟ । କଠୋର ଜୀବନସଂଗ୍ରାମ, ବାଧା ଭିତର ଦେଇ, କିଛି ଫୁଟି ଉଠିଛି ତାଙ୍କ ଭିତରେ ପ୍ରୀତି, ମୈତ୍ରୀ, ସଖ୍ୟ—ଯେମିତି ହୋଇଥାଏ ଏ ଜଗତରେ ଓ ହେବା ଉଚିତ । ସମସ୍ତ ଘାତ ପ୍ରତିଘାତ ଭିତରେ ଓ ବର୍ତ୍ତମାନ ଜଗତର ନାନା ସମସ୍ୟା ଭିତରେ ସେମାନେ କିନ୍ତୁ ଯାହା ସତ୍ୟ ବୋଲି ସ୍ଥିରକରିଛନ୍ତି ତାହ କରିଚାଲିଛନ୍ତି । ତାଙ୍କର ସମସ୍ୟା ଆଜିକାଲିର ପ୍ରତ୍ୟେକ ତରୁଣ ତରୁଣୀର ସମସ୍ୟା । ତାଙ୍କର ସମାଧାନ ହୁଏତ ଆମର ସମାଧାନ ବି ହୋଇପାରେ ।

ମାୟାଧର ମାନସିଂହ

## ଦ୍ୱିତୀୟ ସଂସ୍କରଣ

ଏହି ସଂସ୍କରଣରେ ପୂର୍ବର କମଳାୟନକୁ ବହୁସ୍ଥାନରେ ଖଣ୍ଡିତ ଓ ମଣ୍ଡିତ କରାଯାଇଛି । ଇତି । ଲେଖକ ।

(କମଳାୟନ, ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ, ୧୯୬୨, ପ୍ରକାଶକ ଆଲୋକ ସାହିତ୍ୟ ପ୍ରତିଷ୍ଠାନ, କଟକ । ଏହି ସଂସ୍କରଣ ହିଁ ସର୍ବଶେଷ ସଂସ୍କରଣ । ଏଥିରେ ଡ଼. ମାନସିଂହ ଉତ୍ତରଖଣ୍ଡକୁ ସଂଯୋଜନ କରିଛନ୍ତି । ସେ ସଂପର୍କରେ ମାନସିଂହଙ୍କ ବକ୍ତବ୍ୟ ଏଠାରେ ପ୍ରଦାନକରାଗଲା । — ସଂପାଦକ)

## (କମଳାୟନ : ଉତ୍ତରଖଣ୍ଡ)

କେତେ ବର୍ଷ ତଳେ କହିପାରୁନାହିଁ, କିନ୍ତୁ କମଳାୟନର ଏ ପରବର୍ତ୍ତୀ ଖଣ୍ଡ ଲେଖିବାର ବାସନା ଯେତେବେଳେ ମୋର ଅନ୍ତଃସ୍ଥଳରେ ଅଜ୍ଞାତ ଭାବରେ ଅଙ୍କୁରିତ ହୋଇଆସୁଥିଲା, ଠିକ୍ ସେଇ ସମୟରେ, କୌଣସିଠାରେ ଦେଖା ଓ କଥା ହେବା ଭିତରେ, ଶ୍ରଦ୍ଧାଭାଜନ ସୁପରିଚିତ ଲେଖକ ଓ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ କହିଲେ— ସାର୍, କମଳାୟନ ତ ଅପୂର୍ଣ୍ଣ ରହିଗଲା ?

ମୁଁ ବିସ୍ମିତ ହେଲି ଓ ପଚାରିଲି—ଅପୂର୍ଣ୍ଣ ? ସେପରି ଭାବିବାର କାରଣ ?

ସେ କହିଲେ— ମୁଁ କହୁନି— ଆପଣଙ୍କର କାବ୍ୟ ଅପୂର୍ଣ୍ଣ, କିନ୍ତୁ କଥା ଅପୂର୍ଣ୍ଣ । ବିଶ୍ୱମିତ୍ରାକୁ କେନ୍ଦ୍ର କରି ସେ କଥା ଶେଷ ହେବାର କଥା !

ମୁଁ ମନେ ମନେ ଅତିଶୟ ବିସ୍ମିତ ହେଲି, କାରଣ ନୀଳମଣି ଯାହା କହିଗଲେ ତାହା ମୋ ଅନ୍ତର୍ଲୋକର ଅସ୍ଫୁଟ ବାଣୀର ଅବିକଳ ପ୍ରତିଧ୍ୱନି !

ସେତେବେଳେ ନୀଳମଣିଙ୍କୁ କିଛି କହିଲିନାହିଁ । କିନ୍ତୁ ମନେମନେ ଭାବିଲି ଯେ, ଜଣେ ତରୁଣ ବୁଦ୍ଧିଜୀବୀ ଯଦି ଠିକ୍ ମୋପରି ଭାବୁଛି, ତେବେ ସେ ଭାବନାର ଯଥାର୍ଥତା ଅଛି ।

କମଳାୟନର ଉତ୍ତରଖଣ୍ଡ ପୂର୍ବଖଣ୍ଡର ନାୟକ-ନାୟିକା କମଳ-କରୁଣାଙ୍କର ଦାୟାଦ ବିଶ୍ୱମିତ୍ରାକୁ କେନ୍ଦ୍ରକରି ଗଢା । କମଳ-କରୁଣା-କେନ୍ଦ୍ରିକ ପ୍ରଥମ ଖଣ୍ଡ ସମସାମୟିକ ପ୍ରାକ୍ ସ୍ୱାଧୀନ ଭାରତର ଚିତ୍ର, ଦ୍ୱିତୀୟଖଣ୍ଡ ସମସାମୟିକ ପୃଥିବୀର । ଗୋଟିଏ ଗୋଟିଏ କାବ୍ୟର

କ୍ଷୁଦ୍ର ପରିସର ଓ କଥାବସ୍ତୁର ବନ୍ଧନ ଭିତରେ ଯେତିକି ଥୋଇବା ସମ୍ଭବ, ତାହାହିଁ କରାଯାଇଛି ।

ଦ୍ୱିତୀୟ ଖଣ୍ଡ ଲେଖିଲାବେଳେ ହଙ୍ଗେରୀ ବିପ୍ଳବ ଘଟିଥିଲା । ସେ ବିପ୍ଳବ ବେଳେ, ସୋଭିଏଟ୍ ରୁଷିଆ ହଙ୍ଗେରୀର ଜାତୀୟତା ଓ ମାନବିକତାକୁ ଯେପରି ହତ୍ୟାକରିଥିଲା, ତାର କ୍ରୁଦ୍ଧ ପ୍ରତିକ୍ରିୟା ପୃଥିବୀର ସର୍ବତ୍ର ଯେପରି ଦେଖାଦେଇଥିଲା, ଏଇ ଲେଖକର ପ୍ରାଣରେ ମଧ୍ୟ ସେହିପରି ଦେଖାଦେଇଥିଲା । ବିଶେଷରେ ଏଇ ଲେଖକର ଜଣେ ପ୍ରତିଭାବାନ୍ ହଙ୍ଗେରୀୟ ବଂଧୁ ଅଛନ୍ତି । ତାଙ୍କଠାରୁ ବେଳେ ବେଳେ ବୁଦାପେସ୍ତ ବିପ୍ଳବର ବିଭୀଷିକାମୟ କାହାଣୀ ଶୁଣି ମୁଁ ନୀରବରେ ଅଶ୍ରୁତ୍ୟାଗକରିଛି ଏବଂ ସେହି ପ୍ରାଣ-ଦୂର୍ଣକ-ଘଟଣାକୁ ସମସାମୟିକ କାଳର ଏକ ପ୍ରଧାନ ମାଇଲ-ଖୁଣ୍ଟ ରୂପେ କାବ୍ୟ କଥାରେ ମିଶାଇନେବା ପାଇଁ ମତେ ଆଉ ବିଶେଷ ଭାବିବାକୁ ପଡ଼ିନି ।

ଏତିକି କହି ଏ କାବ୍ୟକୁ ପାଠକ ପାଠିକାଙ୍କ ହାତରେ ଦେଉଛି । —ପ୍ରଣେତା

---

## ପରିଶିଷ୍ଟ-୨

**୧ । କମଳାୟନ (କାବ୍ୟ)** ପୁସ୍ତକ ସମୀକ୍ଷା-ଡ଼ଗର-୧୬.୧୧.୧୯୪୯

ଲେଖକ— ମାୟାଧର ମାନସିଂହ, ପୃ. ୧୯୫, ମୂଲ୍ୟ-ଦୁଇଟଙ୍କା

ଏକାଳର ଗୋଟିଏ ସାଧାରଣ ଜୀବନକାହାଣୀକୁ ଆଶ୍ରୟକରି କମଳାୟନ କାବ୍ୟ ରଚିତ । କାବ୍ୟମାନଙ୍କରେ ଯେପରି ସବୁ ଅଦ୍‌ଭୁତ, ଆକସ୍ମିକ, ଉତ୍ତେଜନାପୂର୍ଣ୍ଣ ଘଟଣାବଳୀର ସମାବେଶ ଥାଏ, ସେହି ଚିରାଚରିତ ପ୍ରଥାରୁ ବାହାରିଯାଇ ଅତି ସ୍ୱାଭାବିକ ଏ ଯୁଗର ଜୀବନକାହାଣୀ ଉପରେ କବି କାବ୍ୟ ରଚନା କରିଛନ୍ତି ଜାଣିଶୁଣି । ତାଙ୍କର ପରୀକ୍ଷା ସଫଳ ହୋଇଛି ବୋଲି ନିଃସନ୍ଦେହରେ କୁହାଯାଇପାରେ । କେବଳ ଅତି ସ୍ୱାଭାବିକ ଓ ବାସ୍ତବ କରିବାକୁ ଯାଇ ଯଥେଷ୍ଟ ରସ ସୃଷ୍ଟି ହୋଇପାରିନାହିଁ ବୋଲି ମନେହୁଏ । ବୋଧହୁଏ ଏହାକୁ ଗଦ୍ୟରେ ଲେଖିଥିଲେ ଚରିତ୍ରଗୁଡ଼ିକ ଅଧିକ ଫୁଟିପାରିଥାନ୍ତା । ଛନ୍ଦ, ଯତି, ମିତ୍ରାକ୍ଷର ଶୃଙ୍ଖଳା କବିଙ୍କର ସହଜ ଭାବ ଓ ଭାଷା ବିକାଶକୁ ବହୁ ସ୍ଥଳରେ ପ୍ରତିହତ କରିଛି । ମାଳତୀ ନାନୀର ପତ୍ରଟି ସ୍ୱାଭାବିକ କାରୁଣ୍ୟରେ ଏତେ ମଧୁର ଯେ, କେବଳ ସେତକ କବିଙ୍କର ସିଦ୍ଧ କବିତ୍ୱର ପରିଚୟ ଦେଇଛି । କବି ଦେଖାଇଛନ୍ତି ଦେଶପ୍ରେମ ଓ ବିଶ୍ୱପ୍ରେମର ଆକର୍ଷଣଠାରୁ ଜନ୍ମମାଟିର ମୋହ କେତେ ଅଧିକ । ପ୍ରତ୍ୟେକ ଶିକ୍ଷିତ ଯୁବକ ଯୁବତୀଙ୍କୁ ଆମର ଅନୁରୋଧ ମନଦେଇ ଥରେ କମଳାୟନ ପଢନ୍ତୁ ।

**୨- ଜେମା (କାବ୍ୟ)** ପୁସ୍ତକ ସମୀକ୍ଷା, ଡଗର, ୧୬.୧୧.୧୯୪୯

ଲେଖକ-ଶ୍ରୀ ମାୟାଧର ମାନସିଂହ, ପୃ-୯୪, ମୂଲ୍ୟ-ବାରଅଣା

ଆଧୁନିକ ସମାଜର ଗୋଟିଏ କାହାଣୀକୁ ଆଶ୍ରୟକରି ପୁରୁଣା ରୀତିରେ ରଚିତ ଖଣ୍ଡିଏ କାବ୍ୟ । କବି ମାୟାଧର ଲିରିକ୍ ଲେଖିବାରେ ଯେଉଁ କବିତ୍ୱ ଦେଖାଇଛନ୍ତି, ଜେମାରେ ତାହା ଦେଖାଇପାରିନାହାନ୍ତି ବୋଲି ମନେହୁଏ । ଛାନ୍ଦର ଶିକୁଳି ତାଙ୍କ ଭାବବିଳାସର ସ୍ୱଚ୍ଛନ୍ଦ ଗତିକୁ ପ୍ରତିହତ କଲାପରି ଲାଗେ । କାହାଣୀରେ ବିଶେଷତ୍ୱ ନାହିଁ, ତଥାପି କବିଙ୍କ ପ୍ରତିଭା ବଳରେ ବହିଟି ସୁଖପାଠ୍ୟ ହୋଇଛି ।

୩- କବି ମାନସିଂହ ଓ ମେଡ଼ିଓଭାଲିଜମ୍ ।

ନବଭାରତ (ନୂତନ) ୨/୧, ସେପ୍ଟେମ୍ବର, ୧୯୫୦, ପୃ-୧୪୩ ଲେଖକ-ରାଜକିଶୋର ରାୟ ।

୪- କଲେଜଝିଅ— ଶିବବ୍ରତ ଦାଶ (ମାନସିଂହଙ୍କ ସାଧବଝିଅର ବ୍ୟଙ୍ଗାନୁକରଣ)

ଡଗର ୧୧/୪୬, ୪୭, ତା. ୨. ୮. ୧୯୪୮

୫- ମୋର ପ୍ରିୟ ଲେଖକ (୪) —କବି ମାନସିଂହ ।

ଲେଖକ-ମହାପାତ୍ର ନୀଳମଣି ସାହୁ, ଡଗର ୨୪/୪, ଅକ୍ଟୋବର-୧୯୫୬ ।

୬. କବି ମାନସିଂହଙ୍କ କାବ୍ୟପ୍ରତିଭା (ଆଲୋଚନା) —ଶ୍ରୀ ଚିନ୍ତାମଣି ବେହେରା
(କ) ଡଗର ୨୧/୪,୫ ଅକ୍ଟୋବର, ନଭେମ୍ବର-୧୯୫୭, ପୃ. ୧୩-୧୬,
(ଖ) କାବ୍ୟ ଓ କଳାକାର (ପ୍ରଥମ ସଂସ୍କରଣ)
(ଗ) କାବ୍ୟ ଓ କଳାକାର (ଦ୍ୱିତୀୟ ସଂସ୍କରଣ) ପୃ.୧୧୭-୧୪୭
୭- ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ -ଶ୍ରୀ ଚିନ୍ତାମଣି ବେହେରା
ଓଡ଼ିଆ ସାହିତ୍ୟର ଇତିହାସ (ମାନସିଂହ, ୧୯୬୭), ପରିଶିଷ୍ଟ-୧
୮- କବି ମାନସିଂହଙ୍କ ପଦ୍ଦରବର୍ଷ ରଚନାର କାଳ ନିରୂପଣ-ଡ଼ ନଟବର ସାମନ୍ତରାୟ
(କ) ଡଗର ୨୧ ବର୍ଷ, ୭ ସଂଖ୍ୟା, ୧୯୫୮, ପୃ. ୧୬-୨୩,
(ଖ) ମାନସିଂହ ସ୍ମରଣିକା, ଅକ୍ଟୋବର - ୧୯୭୩, ପୃ. ୪୨-୫୬,
ଏକାମ୍ର ଥିଏଟର୍ସ, ଭୁବନେଶ୍ୱର ।
(ଗ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ.-୧୩, ସଂ. ରାଧାଶ୍ୟାମ ବେହୁରା ।
୯- ରବୀନ୍ଦ୍ରନାଥ ଓ କବି ମାନସିଂହଙ୍କ ମର୍ତ୍ତ୍ୟପ୍ରୀତି ଶ୍ରୀ ଦାଶରଥି ଦାସ
(କ) ଡଗର ୨୫/୧ ଜୁଲାଇ, ୧୯୬୧, ପୃ. ୧୯-୨୪
(ଖ) କାବ୍ୟସମ୍ବାଦ (ଦ୍ୱିତୀୟ ସଂସ୍କରଣ—୧୯୮୩) ପୃ. ୩୧୮-୩୪୫
୧୦- ରୂପ ଓ ସୌନ୍ଦର୍ଯ୍ୟର କବି ମାନସିଂହ-ଅଧ୍ୟାପକ ଦାଶରଥି ଦାସ
ସାହିତ୍ୟ ସନ୍ଧାନ (ପ୍ରଥମ ପ୍ରକାଶ-୧୮.୧୧.୧୯୭୫) ପୃ. ୮୯-୧୨୬
୧୧- ରବୀନ୍ଦ୍ରନାଥଙ୍କ ଅତୀନ୍ଦ୍ରିୟବାଦ ଓ ଓଡ଼ିଆ ସାହିତ୍ୟରେ ତା'ର ସଂକ୍ରମଣ—
ଡ ନିତ୍ୟାନନ୍ଦ ଶତପଥୀ, ଡଗର ୨୫/୮-୯, ଫେବୃୟାରୀ, ମାର୍ଚ୍ଚ-୧୯୬୨
୧୨- 'ମାଳା ଗ୍ରହଣ' କବିତାର ସମୀକ୍ଷା— ଶ୍ରୀ ଚନ୍ଦ୍ରଶେଖର ମିଶ୍ର ବି.ଏ.ଡି.ଇଡି.
ସହକାର ୨୩ ଭାଗ, ୧୦ମ ସଂଖ୍ୟାର ସଂକ୍ଷିପ୍ତ ଆଲୋଚନା ସ୍ତମ୍ଭରେ ।
ମାଳା ଗ୍ରହଣ, କବି ଶ୍ରୀ ମାୟାଧର ମାନସିଂହ ।

କବିତାଟି ସାଧାରଣ କଥିତ ଭାଷାରେ ରୂପଦିଆଯାଇ ଏ ଶ୍ରେଣୀର ପ୍ରାଚୀନ କଥା କବିତା ପରି ଶୁଣାଯିବାର ଚେଷ୍ଟାକରାଯାଇଛି । ମାତ୍ର ସେ ଚେଷ୍ଟା ସଂପୂର୍ଣ୍ଣ ସଫଳ ହୋଇ ପାରିନାହିଁ । ଏଥିରେ ଥିବା 'ବ୍ରତତୀ, ସ୍ମିତ, ମଘବା, ମନୋଜ, ମାର୍ଗଣ, ନିସ୍ପୃହ ପ୍ରଭୃତି ସଂସ୍କୃତମୂଳକ କଠିନ ଶବ୍ଦମାନଙ୍କୁ ସରଳ ବା ପରିହାର କରାଯାଇପାରିଥା'ନ୍ତା; ଏହାର ଭାଷା ଓ କଥାବସ୍ତୁ ଆମକୁ ପ୍ରାଚୀନ 'ଭ୍ରମରବର ପାଲା'ଟି ସ୍ମରଣକରାଇଦିଏ । ଆଧୁନିକ ରୁଚିର କାବ୍ୟରେ ପ୍ରେମିକା ସହିତ ପ୍ରେମିକ ମିଳାଇବାର ସେହି ପୁରୁଣା ମାଲୁଣୀବୁଢୀକୁ 'କୁଟ୍ଟୀ' ପରି ଅବତାରଣା କରିବା କେତେଦୂର ସମୀଚୀନ ହେବ ବୁଝିହେଉନାହିଁ ।

୧୩- 'କମଳାୟନ'ର କବି ମାନସିଂହ—
ଅଧ୍ୟାପକ ଦୁର୍ଗାଚରଣ କୁଅଁର, ମାନସିଂହ ସ୍ମରଣିକା, ଅକ୍ଟୋବର ୧୯୭୩, ପୃ. ୭୩-୭୯, ଏକାମ୍ର ଥିଏଟର, ଭୁବନେଶ୍ୱର ।

୧୪-କମଳାୟନ : ଏକ ସ୍ୱତନ୍ତ୍ର ସ୍ୱର—ଅଚ୍ୟୁତାନନ୍ଦ କର, ମାନସିଂହ ସ୍ମରଣିକା, ୧୯୭୩।
୧୫- ସାଧବଝିଅ—ଏକ ରସିକର ଦୃଷ୍ଟିପାତ-ଶ୍ରୀମତୀ ଆଶା ମିଶ୍ର
(କ) ଝଂକାର, ୨୫/୯, ଡ଼ିସେମ୍ବର-୧୯୭୩, ପୃ.୮୬୬-୮୭୨
(ଖ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ. ୧୭୯-୯୦
୧୬- 'ଢେମା' କାବ୍ୟ ଏକ ଅଧ୍ୟୟନ—ଅଧ୍ୟାପକ ନିଶାମଣି ମିଶ୍ର
(କ) ଝଂକାର ୨୫/୯, ଡ଼ିସେମ୍ବର-୧୯୭୩
(ଖ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ-୧୭୦-୧୭୮
୧୭- ମାଟିର କବି ମାନସିଂହ— ଶ୍ରୀ ରାଧାଶ୍ୟାମ ବେହୁରା
ଉତ୍କଳ ସାହିତ୍ୟ (ନୂତନ ପ୍ରସ୍ଥ) ୧୯୭୪, ପୃ-୨୧-୨୩
୧୮- ଉତ୍କଳ ସାହିତ୍ୟରେ ଢେମା ଓ ନନ୍ଦିକା -ଶ୍ରୀ ବିକ୍ରମ କେଶରୀ ବର୍ମା
ଉତ୍କଳ ସାହିତ୍ୟ (ନୂତନ ପ୍ରସ୍ଥ) ୧୯୭୪, ପୃ.-୨୪-୨୬
୧୯- ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ନାରୀ- ଡ. ଖଗେଶ୍ୱର ମହାପାତ୍ର
(କ) ଝଂକାର, ୨୮/୧, ବିଷୁବ, ୧୯୭୫, ପୃ ୪୮-୫୧
(ଖ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ. ୧୫୦-୧୫୫
(ଗ) ସମାଲୋଚନାର ଦିଗଦିଗନ୍ତ, ୧୯୯୭,
(ଘ) ମାନସିଂହ ମାନସମୁକୁର, ୧୯୯୭
୨୦- ମାନସିଂହଙ୍କ କାବ୍ୟକବିତାରେ ପ୍ରେମ—ପ୍ରଜ୍ଞାପାରମିତା ମହାନ୍ତି,
ସପ୍ତର୍ଷି, ୫/୪
୨୧- ମାନସିଂହଙ୍କ କାବ୍ୟ କବିତାର ଆଦ୍ୟ ଉନ୍ମେଷ—ଅଧ୍ୟାପକ ପଠାଣି ପଟ୍ଟନାୟକ,
ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮)
୨୨- ନିସର୍ଗର ଉଦ୍‌ଗାତା ମାନସିଂହ— ଅଧ୍ୟାପକ ଦାଶରଥି ଦାସ
(କ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮)
(ଖ) ବିବିଧ ପ୍ରସ୍ତାବ, ୧୯୯୩।
୨୩-ରୋମାଣ୍ଟିକ କବି ମାନସିଂହ -ଡ. ପ୍ରତିଭା ଶତପଥୀ
ମାନସିଂହ ପରିକ୍ରମା (୧୯୭୯)
୨୪-ମାନସିଂହଙ୍କ କାବ୍ୟ-ସାହିତ୍ୟ:ଏକ ରସବାଦୀ ଅଧ୍ୟୟନ-ଅଧ୍ୟାପକ କଇଳାଶ ପଟ୍ଟନାୟକ,
ମାନସିଂହ ପରିକ୍ରମା(୧୯୭୯)
୨୫- ସବୁଜ ସମସାମୟିକ ଏକକ କବି ଡ. ମାନସିଂହ'— ଡ. ନିତ୍ୟାନନ୍ଦ ଶତପଥୀ
ମାନସିଂହ ପରିକ୍ରମା (୧୯୭୯)
୨୬- ସବୁଜରୁ ସାଂପ୍ରତିକ— ଡ. ନିତ୍ୟାନନ୍ଦ ଶତପଥୀ, ପ୍ରକାଶକ—ଗ୍ରନ୍ଥମନ୍ଦିର, କଟକ

୨୭- କଳ୍ପନାର ଅଭିଷେକ— ଡ. ପ୍ରତିଭା ଶତପଥୀ (ରୋମାଣ୍ଟିକ କବି ମାନସିଂହ)
୨୮- 'ମାନସିଂହଙ୍କ କାବ୍ୟ କବିତାରେ ଉପମା'— ଡ. କିଶୋର ଚନ୍ଦ୍ର ମିଶ୍ର
(କ) 'ଉତ୍କଳ ଗୌରବ', ୧୭ଶ ଅର୍ଘ୍ୟ(୧୯୮୪) ପୃ. ୧୧-୧୯
ପ୍ରଗତି ଉତ୍କଳ ସଂଘ, ରାଉରକେଲା, ମୁଖପତ୍ର
(ଖ) ବାସନ୍ତିକା— ସପ୍ତମ ଅର୍ଘ୍ୟ(୧୯୮୪) ପୃ-୨୬-୩୨
ମିଉଜିକ୍ ସର୍କଲ, ରାଉରକେଲା, ମୁଖପତ୍ର
(ଗ) 'ଡଗର'— ୪୭/୨, ଅଗଷ୍ଟ - ୧୯୮୩, ପୃ.-୨୧-୩୨
(ଘ) ଉତ୍କଳ ଗୌରବ— ୧୮ଶ ଅର୍ଘ୍ୟ (୧୯୮୫) ପୃ.-୨୧-୩୨
ପ୍ରଗତି ଉତ୍କଳ ସଂଘ, ରାଉରକେଲା, ମୁଖପତ୍ର
(ଙ) ବାସନ୍ତିକା— ଅଷ୍ଟମ ଅର୍ଘ୍ୟ (୧୯୮୫)
ମିଉଜିକ୍ ସର୍କଲ, ରାଉରକେଲା, ମୁଖପତ୍ର
(ଚ) ଉତ୍କଳ ଗୌରବ— ୧୯ଶ ଅର୍ଘ୍ୟ(୧୯୮୬)ପୃ-୧୬-୩୪
ପ୍ରଗତି ଉତ୍କଳ ସଂଘ, ରାଉରକେଲା, ମୁଖପତ୍ର
(ଡ. କିଶୋରଚନ୍ଦ୍ର ମିଶ୍ରଙ୍କର ଏହା ଏକ ଧାରାବାହିକ ଆଲୋଚନା— ଉପରୋକ୍ତ କ୍ରମରେ ଏହା ପ୍ରକାଶିତ ହୋଇଛି ।)
୨୯- ମାନସିଂହଙ୍କ କାବ୍ୟ-ପ୍ରତିଭା—ଡ. ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)
ଆବର୍ତ୍ତ, ପୂଜା ସଂଖ୍ୟା- ୧୯୮୬, ପୃ. ୪୫-୫୦
୩୦- ଡକ୍ଟର ମାୟାଧର ମାନସିଂହଙ୍କ କାବ୍ୟକୀର୍ତ୍ତି-ଡ. ମନୋରମା ବିଶ୍ୱାଳ ମହାପାତ୍ର
ଓଡ଼ିଶା ବୁକ୍ ଷ୍ଟୋର, କଟକ (୧୯୯୨)
୩୧- ସାରସ୍ୱତ ଶିଳ୍ପୀ ମାନସିଂହ- ଡ. ଗଙ୍ଗାଧର ବଳ
ମାନସିଂହ ମାନସ ମୁକୁର (୧୯୯୮), ଓଡ଼ିଶା ବୁକ୍ ଷ୍ଟୋର, କଟକ
୩୨- ମାନସିଂହଙ୍କ କାବ୍ୟ କବିତାରେ ରୋମାଣ୍ଟିକ ଚେତନା-ଡ. ବନମାଳୀ ବେହେରା,
ମାନସିଂହ ମାନସ ମୁକୁର (୧୯୯୨)
୩୩- ମାନବବାଦର ନିକଷରେ କବି ମାନସିଂହଙ୍କ କାବ୍ୟ-ଚେତନା—ଡ. ଇନ୍ଦୁ ମିଶ୍ର
ମାନସିଂହ ମାନସ ମୁକୁର (୧୯୯୮)
୩୪- ମାନସିଂହଙ୍କ ସୃଷ୍ଟି ମାନସରେ ସମାଜଜୀବନ—ଡ. ରଞ୍ଜିତା ନାୟକ
ମାନସିଂହ ମାନସ ମୁକୁର (୧୯୯୮)
୩୫- ଜାତୀୟତାର ମନୋଭୂମିରେ ରୂପାନ୍ୱେଷୀ ମାନସିଂହ— ଡ. ସୁଲୋଚନା ଦାସ,
ମାନସିଂହ ମାନକ ମୁକୁର (୧୯୯୮)

---